ବାଞ୍ଛାନିଧି ଦାସ



# ଜୀବନବାଦୀ ବିଶ୍ୱଲେଖକ ସମୁଦାୟ

ଜୀବନବାଦୀ ଲେଖକ ଓ ବିଶ୍ୱ ସମୁଦାୟ

ବାଞ୍ଛାନିଧି ଦାସ

ପ୍ରକାଶକ :

ଅଳକାନନ୍ଦା ପବ୍ଲିକେଶନ୍ସ,

୩, ଅଙ୍ଗାରଗଡ଼ିଆ, ବାଲେଶ୍ୱର

ପ୍ରଚ୍ଛଦ :

୰ ରବିନାରାୟଣ ନାୟକ (୧୯୩୦-୨୦୦୮)

ପ୍ରଥମ ପ୍ରକାଶ :

ଜୁଲାଇ ୨୦୦୮

ଅକ୍ଷର ବିନ୍ୟାସ ଓ ମୁଦ୍ରଣ

ଆଦିତ୍ୟ ଗ୍ରାଫିକ୍ସ,

ଷ୍ଟେସନ ରୋଡ଼, ବାଲେଶ୍ୱର - ୧



ମୂଲ୍ୟ :

ପଚାଶ ଟଙ୍କା

**Jeebanbadi Lekhaka O' Biswa Samudaya.**

Banchhanidhi Das

Published by :

Alakananda Publications

3, Angargadia, Balasore

Cover Design

Late Rabinarayan Nayak (1930-2008)

First Publication :

July - 2008

Letter Setting & Printed by :

Aditya Graphics

Station Road, Balasore



Price :

Rupees Fifty only

# ସୂଚୀ


| | | |
|---|---|---|
| କବି ଅନନ୍ତ ପଟ୍ଟନାୟକ : ଜୀବନ ଓ କୃତି | ■ | ୧ |
| ଗାଳ୍ପିକ ବସନ୍ତ ଶତପଥୀଙ୍କ ଗଳ୍ପ ମାନସ | ■ | ୧୩ |
| ଜତୁଗୃହରେ ଅଙ୍କୁରିତ ଏକ ସ୍ୱପ୍ନ | ■ | ୨୩ |
| ଚେକଭଙ୍କ ଗଳ୍ପ ଏକ ଦୃଷ୍ଟିପାତ୍ | ■ | ୩୩ |
| ରେନେଁସା ଓ କବିବର ରାଧାନାଥ | ■ | ୪୪ |
| ବୀମସ୍‌ଙ୍କ ନୋଟ୍‌ଖାତା : ଓଡ଼ିଶା ସମ୍ପର୍କରେ | ■ | ୫୭ |
| ସିପାହୀ ବିଦ୍ରୋହ ସମ୍ପର୍କରେ ମାର୍କସଙ୍କ ମୂଲ୍ୟାୟନ | ■ | ୬୭ |
| ତସ୍‌ଲିମାଙ୍କ ନିଜସ୍ୱ ସଂଳାପ | ■ | ୭୯ |
| ଭଗବତୀ ଚରଣଙ୍କ ଗଳ୍ପ : ଏକ ଆକଳନ | ■ | ୮୪ |
| ଭଗବତୀ ପାଣିଗ୍ରାହୀଙ୍କ ସାହିତ୍ୟ ଭାବନା | ■ | ୯୧ |
| ଧରଣୀଧରଙ୍କ ପ୍ରଜାମେଳି : ପୂର୍ବାପର ସଙ୍ଗତି ସହ | ■ | ୯୯ |
| ନବ୍ୟ ସମ୍ରାଜ୍ୟବାଦର ଈଗଲ : ଲେଖକ ଆଗରେ ଚ୍ୟାଲେଞ୍ଜ | ■ | ୧୦୭ |
| ଅଭିବ୍ୟକ୍ତିର ସ୍ୱାଧୀନତା | ■ | ୧୧୩ |
| କହ୍ନେଇ ଲାଲଙ୍କ ଗଳ୍ପ | ■ | ୧୧୯ |
| ଅଗଷ୍ଟ କ୍ରାନ୍ତିର ଅପବ୍ୟାଖ୍ୟା | ■ | ୧୨୭ |
| ନିତ୍‌ଶେଙ୍କ ଚିନ୍ତନର ଧାରା ଓ ଧରଣୀ | ■ | ୧୩୩ |
| 'କନକଲତା' ଉପନ୍ୟାସର ପ୍ରେକ୍ଷାପଟ | ■ | ୧୪୪ |

# କବି ଅନନ୍ତ ପଟ୍ଟନାୟକ : ଜୀବନ ଓ କୃତି

କବି ଅନନ୍ତ ପଟ୍ଟନାୟକ ଥିଲେ ନବଯୁଗ ସାହିତ୍ୟ ଆନ୍ଦୋଳନ (୧୯୩୫-୪୫)ର ସାରଥୀ ଓ ବିଶ୍ୱଶାନ୍ତି ଆନ୍ଦୋଳନର ଓଡ଼ିଶା ଅଧାୟର ଜଣେ ପଥିକୃତ୍। ନବଯୁଗର ଯୁଗାନ୍ତକାରୀ ବାର୍ତ୍ତା ଓଡ଼ିଶାର ଘରେ ଘରେ ପ୍ରଚାର କରିବା ପାଇଁ କବି ଅନନ୍ତଙ୍କ ଯେଉଁମାନେ ସହଚର ସାଜିଥିଲେ, ସେମାନେ ହେଲେ କବି ସଚ୍ଚିଦାନନ୍ଦ ରାଉତରା, ମନମୋହନ ମିଶ୍ର, ପ୍ରାଣବନ୍ଧୁ କର, ଗୁରୁଚରଣ ପଟ୍ଟନାୟକ, ଜଟାୟୁ ଓ ରାମ ପ୍ରସାଦ ମହାନ୍ତି। ଏମାନଙ୍କ ମୁଖପତ୍ର 'ଆଧୁନିକ' ସେତେବେଳର ଓଡ଼ିଆ ସାହିତ୍ୟରେ ପ୍ରଗତିଶୀଳ ଧାରା ସୃଷ୍ଟି କରିଥିଲା। ସତ୍ୟବାଦୀ ଯୁଗରେ ଗୋପବନ୍ଧୁ ଆଦିଙ୍କ କଲମରୁ ଯେଉଁଭଳି ଦେଶ ପ୍ରେମ ଓ ମାନବିକତାବାଦର ଝରଣା ଝରିଥିଲା, ତାହାର ଦାୟାଦତ୍ୱ କରିଥିଲେ ଅନନ୍ତ ପଟ୍ଟନାୟକଙ୍କ ନବଯୁଗ ସାହିତ୍ୟିକ ଦଳ। କବି ଗୋପବନ୍ଧୁ ତାଙ୍କ କବିତାରେ ଓ ଜୀବନଚର୍ଯ୍ୟାରେ ଯେଉଁ ମାନବବାଦର କର୍ଷଣ କରି ଯାଇଥିଲେ, ତାହା "ଥିଲାବାଲା ସମାଜର ମାନବବାଦ"। ଭାଗ୍ୟ ଓ ଭଗବାନଙ୍କ ଆଗରେ ପୂର୍ଣ୍ଣ ମାତ୍ରାରେ ଆତ୍ମ ନିବେଦନ କରି ମଣିଷ ସମାଜର ମାନବବାଦ ହେଉଛି ମାନବ ସମାଜ ଆଗରେ ନତଜାନୁ ହୋଇ ତାହାର ସେବକ ହେବା ନିମନ୍ତେ ମାଗୁଣି କରିବାର ପରମ୍ପରା। ମଣିଷ ଉପରୁ ମୁଷ୍ଟିମେୟ ଚତୁର ତଥା ଶୋଷଣକାରୀ ମଣିଷର ଶୋଷଣ ହଟାଇବାର ଏକ ପ୍ରତିବଦ୍ଧତା- ଏ ମାନବବାଦର ଲକ୍ଷଣ। ଆନ୍ତର୍ଜାତିକ ସର୍ବହରା ଶ୍ରେଣୀର ଆନୁଗତ୍ୟ ସ୍ୱୀକାର ନ କଲେ ଓ ଶୋଷଣ କଷଣ ହଟାଇବା ନିମନ୍ତେ ଶ୍ରେଣୀ ସଂଗ୍ରାମକୁ ପଥରୂପେ ନ ବାଛିଲେ, ଜଣେ ଏ ମାନବବାଦର ପାଖ ମାଡ଼ିପାରିବ ନାହିଁ। କବି ଅନନ୍ତ ପଟ୍ଟନାୟକଙ୍କ ଉଭୟ କବିତା ଓ ଜୀବନକୁ ବିଶ୍ଳେଷଣ କଲେ ଏହି ଆଦର୍ଶର ପ୍ରତିଫଳନ ଆମେ ଦେଖୁଁ।

୧୯୧୭ ମସିହା ନଭେମ୍ବର ସାତ ତାରିଖରେ ମହାନ୍ ଲେନିନ୍‌ଙ୍କ ନେତୃତ୍ୱରେ ରୁଷିଆ ମାଟିରେ ସର୍ବ ପ୍ରଥମେ ଗଠିତ ହୋଇଥିଲା ସର୍ବହରା ଶ୍ରମିକ ଓ କୃଷକର ସରକାର ସୁପ୍ରସିଦ୍ଧ ଅକ୍ଟୋବର ବିପ୍ଳବ ମାଧ୍ୟମରେ। ପୂର୍ବ ୟୁରୋପର ଏଇ ରାଜନୈତିକ ଘଟଣା ସମଗ୍ର ବିଶ୍ୱର ଜନ ମାନସକୁ ଦୋହଲାଇ ଦେଇଥିଲା। ଓଡ଼ିଶାରେ ପ୍ରଥମେ ଗୋପବନ୍ଧୁ ଏ ବିପ୍ଳବର ସଂଦେଶ ପାଇଥିଲେ। ପ୍ରଥମ ଅବସ୍ଥାରେ ସେ ହୁଏତ ଏହି ବିପ୍ଳବର ତାତ୍ପର୍ଯ୍ୟ ଠିକ୍ ରୂପେ ବୁଝି ପାରି ନଥିଲେ; କାରଣ ୧୮୪୮ରୁ ପ୍ରକାଶିତ ଓ ନିଜ ଆହ୍ୱାନ ବଳରେ ଆମେରିକା ଓ ୟୁରୋପର ଶ୍ରମିକ ଶ୍ରେଣୀକୁ ଉଦ୍‌ବେଳିତ କରି ପାରିଥିବା ପ୍ରସିଦ୍ଧ "କମ୍ୟୁନିଷ୍ଟ ମେନିଫେଷ୍ଟୋ" ତାଙ୍କ ଦୃଷ୍ଟିରେ ପଡ଼ି ନଥିଲା। ୧୯୨୦ ମସିହା ଜାନୁଆରୀ ଏକତିରିଶର ସାପ୍ତାହିକ 'ସମାଜ' ସମ୍ପାଦକୀୟରେ ସେ ତେଣୁ

ଲେନିନ୍‌ଙ୍କ ବଲ୍‌ସେଭିକ୍ ଦଳକୁ "ବଳସେବୀ" ବୋଲି ଅଭିହିତ କରି ସେମାନଙ୍କ ରୁଷିଆ ଦଖଲକୁ ତାରିଫ୍ କରିଥିଲେ-ମାତ୍ର ସଂଦିଗ୍ଧ ଚିତ୍ତରେ। ଶ୍ରମିକ ଓ କୃଷକମାନେ ସୁସଂଗଠିତ ହୋଇ ବଳପୂର୍ବକ ଋଷିଆରେ ଅତ୍ୟାଚାରୀ ଜାର୍ ସରକାରକୁ କ୍ଷମତାଚ୍ୟୁତ କରିଥିଲେ। ତେଣୁ ଗୋପବନ୍ଧୁ ହୁଏତ ସେମାନଙ୍କୁ "ବଳସେବୀ" ବା ବଳର ସେବାକାରୀ ବୋଲି ଭାବିଥିବେ। ଗୋପବନ୍ଧୁ "ବିଶ୍ୱ ରାଜନୀତିରେ ବଳସେବୀଙ୍କ ଅଭ୍ୟୁଦୟ" ଶୀର୍ଷକ ଅଗ୍ରଲେଖରେ ଲେଖିଥିଲେ - ୟୁରୋପର କେତେକ ରାଜ୍ୟରେ ବଳସେବୀ ବୋଲି ଏକ ଦଳ ବାହାରିଛନ୍ତି। ସେମାନେ କହନ୍ତି, ରାଜା ଜମିଦାର ଆଦି ବଡ଼ ଲୋକ, ଧନୀ ଦରିଦ୍ର ମଧ୍ୟରେ କିଛି ତଫାତ୍ ରହିବ ନାହିଁ। ଦେଶର ଧନରେ ସମସ୍ତଙ୍କର ସମାନ ଅଧିକାର। ଯେ ଯେତେ ପରିଶ୍ରମ କରି ଦେଶର ଧନ ସମ୍ପଦ ବଢ଼ାଇବ, ସେ ସେତେ ପରିମାଣରେ ତାହାର ଚଳିବା ପାଇଁ ଦେଶର ଧନ ପାଇବ। ରାଜକୁଳ ଲୋପ କରିବା ଏମାନଙ୍କ ପ୍ରଧାନ ସଂକଳ୍ପ। ଏହିମାନେ ଋଷିଆ ରାଜବଂଶ ଧ୍ୱଂସ କଲେ, କେତେ ବଡ଼ ବଡ଼ ଲୋକଙ୍କୁ ମାରି ସେମାନଙ୍କ ପକ୍‌କା ଦଲାନ୍ ମାନ ଛାରଖାର କରି ପକାଇଛନ୍ତି। ଏମାନେ କହନ୍ତି - "ରାଜ୍ୟ ତ ପ୍ରଜାଙ୍କର; ଗରିବ ପ୍ରଜା ମୁଣ୍ଡର ଝାଳ ତୁଣ୍ଡରେ ମାରି ଏତେ କଷ୍ଟ ସହି ଧନ ଉପାର୍ଜନ କରିବେ। ରାଜା ଜମିଦାର ବୋଲି ପଞ୍ଚାଏ ସେମାନଙ୍କ ରକ୍ତ ଖାଇ ଟିଙ୍କ ପରି ବଢ଼ିବେ କାହିଁକି ? ଏମାନଙ୍କ ଗତି ବେଭାର ବିଷୟରେ ଯାହା ସବୁ ଶୁଣାଯାଉଛି ତାହାତ ଆମ୍ଭମାନଙ୍କୁ ଅସମ୍ଭବ ଏବଂ ଆଶ୍ଚର୍ଯ୍ୟ ଲାଗୁଛି"। ୧୯୨୦ ମସିହାରେ ରୁଷିଆ ଭ୍ରମଣ କରିସାରି ବିଶ୍ୱକବି ରବୀନ୍ଦ୍ର ନାଥ ଲେଖନ୍ତି ତାଙ୍କର ପ୍ରସିଦ୍ଧ ଭ୍ରମଣ କାହାଣୀ-'ରୁଷିଆର ଚିଠି'। ସେଥିରୁ ଋଷିଆର ସମାଜବାଦୀ ସଂସ୍କୃତି ଓ ଜୀବନ ଯାତ୍ରା ବିଷୟରେ ଅବଗତ ହୋଇ ଗୋପବନ୍ଧୁ "ବଳସେବୀ" ମାନଙ୍କ ପ୍ରତି ନିଜ ଦୃଷ୍ଟିଭଙ୍ଗୀର ପରିବର୍ତ୍ତନ କରନ୍ତି। ୧୯୨୪ ମସିହାରେ ଲେନିନ୍‌ଙ୍କ ମହାପ୍ରୟାଣରେ ସେ ଲେଖନ୍ତି ଅଗ୍ରଲେଖ-ଯେଉଁଥିରେ ସେ ଶ୍ରେଣୀ ବିଭକ୍ତ ସମାଜ ବିଷୟରେ ଚର୍ଚ୍ଚା କରନ୍ତି। ଶ୍ରମିକ ଓ କୃଷକଙ୍କ ଶ୍ରମ ଓ ସଂଗ୍ରାମକୁ ନୈତିକ ସମର୍ଥନ ଜଣାଇ ସେ ଲେଖନ୍ତି- "ମୁଣ୍ଡଝାଳ ତୁଣ୍ଡରେ ମାରି ଦଳେ ସବୁବେଳେ ଖଟୁଛନ୍ତି, ଜୀବନକୁ ବିପଦଗ୍ରସ୍ତ କରୁଛନ୍ତି, କାରଖାନାରେ କାମ କରୁ କରୁ କିଏ କାଟ ଖାଇ ଯାଉଛି। ତଥାପି ଏହି ମାନଙ୍କ ପରିଶ୍ରମରେ ଜଗତର ସମସ୍ତ ସମ୍ପଦର ଉତ୍ପତ୍ତି। ମାତ୍ର ଏ ସମ୍ପଦ ଭୋଗୁଛି କିଏ ? ଭୋଗିବା ଲୋକଙ୍କ ଦେହରେ ଧୂଳି ପଡୁନାହିଁ, ତାଙ୍କ ପାଦ ତଳେ ଲାଗୁନାହିଁ। ଷଡ଼ ରସ ବ୍ୟଞ୍ଜନ ତାଙ୍କୁ ରୁଚୁ ନାହିଁ। ସେ ଲକ୍ଷପତି, ସେ କୋଟିପତି, ସେ ରାଜା, ସେ ଜମିଦାର। ମାତ୍ର ଯେ ଉତ୍ପନ୍ନ କରୁଛି, ସେ ମୂଲିଆ, ସେ ପ୍ରଜା। ଭିନ୍ନ ଭିନ୍ନ ଶ୍ରେଣୀର ଲୋକଙ୍କ ମଧ୍ୟରେ ଅବସ୍ଥାର ଏହି ବିଷମ ବିଭେଦ ଘୁଞ୍ଚାଇ ସମସ୍ତଙ୍କୁ ସମାନ ସୁଖ ଶାନ୍ତିର ଅଧିକାର ଦେବା କମ୍ୟୁନିଷ୍ଟ ବା କୋଠବାଦୀମାନଙ୍କର ଯେବେ ନୀତି ହୁଏ, ତାହା ଗରିବଙ୍କୁ ନିଶ୍ଚୟ ଭଲ ଲାଗିବ। ପ୍ରଜା ଓ ମଜୁରୀଦାର ଏ କଥା ଶୁଣି ମୁଣ୍ଡିଆ ମାରିବେ। ଗୋପବନ୍ଧୁଙ୍କ କବିତାରେ ଏ ନୀତିର ଅନୁସରଣ ମଧ୍ୟ ହେଲା -

"ଡରାଇ ଶାସିବା ନୀତି ଚାଲିଯିବ / ପ୍ରଜାଙ୍କ ମତରେ ଶାସନ ଚାଲିବ"।

କବି ଅନନ୍ତ ପଟ୍ଟନାୟକଙ୍କ କବିତା ସେଇ ସାଧାରଣ ଜନଗଣର ସଂଗ୍ରାମର ବାସ୍ତବରେ ସେବା କଲା ଓ ଓଡ଼ିଶାର ଶ୍ରମିକ, କୃଷକ ଆନ୍ଦୋଳନର ଚାରଣ ଗୀତି ସାଜିଲା।

କବି ଅନନ୍ତ ପଟ୍ଟନାୟକ ୧୯୧୨ ମସିହାର ଜୁନ୍ ମାସ ୧୨ ତାରିଖ ରଜ ସଂକ୍ରାନ୍ତି ଦିନ ପୁରୀ ଜିଲ୍ଲାର ଚଣାହଟ୍ଟା ଗ୍ରାମରେ ପିତା ଜୟକୃଷ୍ଣଙ୍କ ଔରସରୁ ତଥା ମାତା ମହାଦେଈଙ୍କ ଗର୍ଭରୁ ଜନ୍ମ ଗ୍ରହଣ କରିଥିଲେ । ବାଲ୍ୟକାଳରେ ପିତାମାତାଙ୍କ ଅକାଳ ମୃତ୍ୟୁ ଯୋଗୁଁ ତାଙ୍କ ପିଉସା ସତ୍ୟବାଦୀ ଦାସ ଓ ପିଉସୀ ବସନ୍ତକୁମାରୀଙ୍କ ଗୃହରେ ଅନନ୍ତ ଲାଳିତ ପାଳିତ ହେଲେ । ଅନନ୍ତଙ୍କ ସାନ ଭାଇ ଗୁରୁଚରଣ ବାପ ମା' ଛେଉଣ୍ଡ ହେବା ବେଳକୁ ଏକ ଦୁଗ୍ଧପୋଷ୍ୟ ଶିଶୁ ଥିଲେ । ତଥାପି ପିଉସୀ ବସନ୍ତକୁମାରୀ ଅତି ଯତ୍ନ ସହକାରେ ପିଲା ଦିଓଟିଙ୍କୁ ଲାଳନ ପାଳନ କଲେ । ଅନନ୍ତଙ୍କ ବାଲ୍ୟ କାଳରେ ଅକ୍ଟୋବର ବିପ୍ଳବ (୧୯୧୭), ଜାଲିଆନାୱାଲାବାଗର ନରସଂହାର (୧୯୧୯) ଘଟିଅଛି । ୧୯୧୫ ମସିହାରେ ମହାତ୍ମା ଗାନ୍ଧି ଦକ୍ଷିଣ ଆଫ୍ରିକାରୁ ଫେରି ଭାରତୀୟ ସ୍ୱାଧୀନତା ସଂଗ୍ରାମକୁ ନୂଆ ମୋଡ଼ ଦେବା ପାଇଁ ଉଦ୍ୟମ କରିଛନ୍ତି । ଅନନ୍ତ ପଟ୍ଟନାୟକଙ୍କ କକା କୃଷ୍ଣମୋହନ ଉତ୍କଳ ସମ୍ମିଳନୀ ଦ୍ୱାରା ସେତେବେଳକୁ ଓଡ଼ିଶାର ଅନ୍ୟତମ ଜାତୀୟ କବି ରୂପେ ଗୃହୀତ ଓ ସୁପ୍ରଚାରିତ ହେଲେଣି । ତାଙ୍କ ପ୍ରସିଦ୍ଧ ଜାଗରଣଧର୍ମୀ ଜାତୀୟତାବାଦୀ ସଙ୍ଗୀତ ୧୯୦୬ ମସିହାର ଉତ୍କଳ ସମ୍ମିଳନୀର ଅଧିବେଶନରେ ଗୀତ ହୋଇ ସାରିଲାଣି । ସେଇ ପ୍ରସିଦ୍ଧ ଗୀତଟି ହେଲା :

ଆଜି ସାଗରରେ ଭୂଧରେ ପ୍ରାନ୍ତରେ ଅମ୍ବରେ / ଶୁଭୁ ଉତ୍କଳର  ଜୟଗୀତ

----------------------------------------------------

' ଶିଶୁ ଦେଉ ତାର ଉଷାରୁଣ ବିଭା
ଦେଉ ଯୁବାଜନ ମଧ୍ୟାହ୍ନ ପ୍ରତିଭା
ଜ୍ଞାନ ରଶ୍ମି ଶେଷ ଦେଉ ପକ୍ୱ କେଶ
ଭାଙ୍ଗୁ ସାଧନାର ମହାଭ୍ରାନ୍ତି,
ଶରତ ସଜାଉ ଚାରୁ ପକ୍ୱ ଶାଳୀ
ବସନ୍ତ ବଜାଉ ଦୋଳ ଘଣ୍ଟାବଳୀ
ଶୁଭାଶିଷ ଘେନି ରବି ଶଶୀ ବେନି
ଉଠନ୍ତୁ, ବୁଡ଼ନ୍ତୁ, ନିତି ନିତି,

କକାଙ୍କ  କାବ୍ୟିକ ପ୍ରଭାବ ଅନନ୍ତଙ୍କ କିଶୋର ମନ ଉପରେ ପଡ଼ିଥିଲା । ପୁରୀ ଜିଲ୍ଲା ସ୍କୁଲରେ ଛାତ୍ର ଥିବାବେଳେ ଅନନ୍ତଙ୍କୁ ବିଶେଷ ପ୍ରଭାବିତ କରିଥିଲେ ଉତ୍କଳମଣି ଗୋପବନ୍ଧୁ । ରାମଚଣ୍ଡୀ ସାହିରେ ଗୋପବନ୍ଧୁ ଓ ଆଚାର୍ଯ୍ୟ ହରିହର ଅବସ୍ଥାନ କରି ସତ୍ୟବାଦୀ ସାହିତ୍ୟିକ ଗୋଷ୍ଠୀ ଓ ଜନ୍ମ ମାଟିର ସେବାଦି କର୍ମ ସେଇଠାରୁ ପରିଚାଳନା କରୁଥିଲେ । ସେଇ ସାଇରେ ମଧ୍ୟ ପିଉସାଙ୍କ ବସାରେ ରହି ଅନନ୍ତ ପାଠ ପଢୁଥିଲେ । ଗୋପବନ୍ଧୁ ରାମଚଣ୍ଡୀ ସାହିର ବସାରୁ ସାପ୍ତାହିକ 'ସମାଜ' ପ୍ରକାଶନ କରି ସାରା ଓଡ଼ିଶା ଡାକ ଦ୍ୱାରା ବଣ୍ଟନ କରୁଥିଲେ । ସ୍ୱାମୀ ପ୍ରଣବାନନ୍ଦ "ପୁରୀ ବାଳକ ସେବା ସମିତି" ଗଠନ କରି ଅନନ୍ତଙ୍କ ପରି କିଶୋର ବାଳକମାନଙ୍କୁ ବିଭିନ୍ନ ସେବା କାର୍ଯ୍ୟରେ ଲାଗିବା ପାଇଁ ଉତ୍ସାହିତ କରୁଥାନ୍ତି । ବନ୍ୟା ଓ ଦୁର୍ଭିକ୍ଷ ସମୟରେ ପୁରୀ ଦାଣ୍ଡରେ ଅର୍ଥ ଓ ଖାଦ୍ୟ ପଦାର୍ଥ ଭିକ୍ଷା କରିବା ପାଇଁ ଗୋପବନ୍ଧୁ ସଂକୀର୍ତ୍ତନ ଦଳ ପରିଚାଳନା କରି ପଦଯାତ୍ରା କରନ୍ତି । ଶିଶୁ

ଅନନ୍ତ ସେ ପଦଯାତ୍ରୀ ଦଳରେ ଯୋଗ ଦେଇ ବଢ଼ି କଉଡ଼ି ଆଦାୟରେ ଲାଗି ପଡ଼ନ୍ତି। ତାଙ୍କର ସହପାଠୀ ଗୋକୁଳ ମୋହନ ରାୟ ଚୂଡ଼ାମଣି ଅଗ୍ରଜ ବନ୍ଧୁ କାଳିନ୍ଦୀଚରଣ ଓ ଭଗବତୀଚରଣ ଏ ସବୁ କାର୍ଯ୍ୟରେ ମଧ୍ୟ ଯୋଗ ଦିଅନ୍ତି।

ପିଉସାଙ୍କ ଚାକିରୀ କଟକକୁ ସ୍ଥାନାନ୍ତରିତ ହୁଏ ଓ ଅନନ୍ତ କଟକର ରେଭେନ୍‌ସା କଲେଜିଏଟ୍ ସ୍କୁଲର ନବମ ଶ୍ରେଣୀରେ ଯୋଗ ଦିଅନ୍ତି। କଟକରୁ "ଉତ୍କଳ ସାହିତ୍ୟ", "ଦୀପିକା" ଓ "ସହକାର" ପ୍ରକାଶିତ ହେଉଥାଏ। କଟକରେ ଅନନ୍ତଙ୍କ ବନ୍ଧୁ ସାଜନ୍ତି ଅଶୋକ ରାଓ (ମଧୁସୂଦନ ରାଓଙ୍କ ନାତି) ଓ ତାଙ୍କ ମାଧ୍ୟମରେ ସେ ସାହିତ୍ୟିକ ମହଲରେ କିଶୋର କବି ରୂପେ ପରିଚିତ ହୁଅନ୍ତି। ମ୍ୟାଟ୍ରିକ୍ ଟେଷ୍ଟ ପରୀକ୍ଷା (୧୯୨୯) ବେଳକୁ ବୀର ସୂର୍ଯ୍ୟ ସେନ୍‌ଙ୍କ ଚିଟାଗଙ୍ଗ୍ ଅସ୍ତ୍ରାଗାର ଲୁଣ୍ଠନ ଓ ଭଗତ ସିଂଙ୍କ ରକ୍ତାକ୍ତ ସଂଗ୍ରାମର କାହାଣୀ କଟକରେ ପ୍ରଚାରିତ ହେଲାଣି ଓ ଅନନ୍ତ ତା' ଦ୍ୱାରା ପ୍ରଭାବିତ ହୁଅନ୍ତି। ରେଭେନ୍‌ସା କଲେଜିଏଟ୍ ସହାଧ୍ୟାୟୀଙ୍କ ଲେଖା ନେଇ ଅନନ୍ତ ପ୍ରକାଶ କରନ୍ତି ସ୍କୁଲର ମୁଖପତ୍ର "ଛାତ୍ର ବନ୍ଧୁ"- ଏକ ହାତ ଲେଖା ଶିଶୁ କିଶୋର ପତ୍ରିକା। ଟେଷ୍ଟ ପରୀକ୍ଷାରେ ଇଂରାଜୀ ପ୍ରଥମ ପତ୍ରରେ ପ୍ରବନ୍ଧ ଲେଖିବାକୁ ପଡ଼େ- Students duties and responsibilities- ଅନନ୍ତ ଲେଖନ୍ତି In this war of independence, which is going on, we the students should participate." ଏହା ପ୍ରଧାନ ଶିକ୍ଷକଙ୍କ ଦୃଷ୍ଟି ଆକର୍ଷଣ କରେ। ସ୍କୁଲରୁ ବହିଷ୍କୃତ ହେବାର ଅବସ୍ଥା ଆସେ। କିନ୍ତୁ ଟ୍ରେନିଂ ସ୍କୁଲ (ବର୍ତ୍ତମାନର ରାଧାନାଥ ଟ୍ରେନିଂ କଲେଜ) ର ଅଧ୍ୟକ୍ଷ ଆଣ୍ଡର୍ସନ୍‌ଙ୍କ ହସ୍ତକ୍ଷେପ ଯୋଗୁଁ ଅନନ୍ତ ରକ୍ଷା ପାଆନ୍ତି।

୧୯୩୦ ମସିହାରେ ଅନନ୍ତଙ୍କ ବିରୁଦ୍ଧରେ ଗୋଇନ୍ଦା ବିଭାଗର ରିପୋର୍ଟ ଯୋଗୁଁ ରେଭେନ୍‌ସାର ପ୍ରିନ୍‌ସିପାଲ୍ ଲାମ୍ବାର୍ଟ୍ ତାଙ୍କୁ କଲେଜରେ ଭର୍ତ୍ତି ହେବାକୁ ଦିଅନ୍ତି ନାହିଁ। ଦାଣ୍ଡୀର ସତ୍ୟାଗ୍ରହକୁ ଲକ୍ଷ୍ୟ କରି ଅନନ୍ତ "ଉତ୍କଳ ଦୀପିକା"ରେ ଛାତ୍ରର କର୍ତ୍ତବ୍ୟ ଓ ଦେଶ ପ୍ରେମ ଉପରେ ଏକ ପ୍ରବନ୍ଧ ପ୍ରକାଶ କରାଇ ଥାଆନ୍ତି। ପୁରୀ ସମୁଦ୍ର ତଟରେ ରାମ ଦାସ ବାବାଜୀଙ୍କ ନେତୃତ୍ୱରେ ଲବଣ ସତ୍ୟାଗ୍ରହ ଅନୁଷ୍ଠିତ ହେବାର ଥାଏ। ସେଥିରେ ଇଂରେଜ ସରକାର ନିଷେଧାଦେଶ ଜାରି କରିବାରୁ ଆଚାର୍ଯ୍ୟ ହରିହର, ମାଳତୀ ଚୌଧୁରୀଙ୍କ ନେତୃତ୍ୱରେ ସତ୍ୟାଗ୍ରହୀମାନେ ବାଲେଶ୍ୱର ଜିଲ୍ଲାର ଇଞ୍ଚୁଡ଼ି ଯାତ୍ରା କରନ୍ତି ଓ ସେଠାରେ ଲୁଣ ମାରନ୍ତି। ରାମଦାସଙ୍କ ନେତୃତ୍ୱରେ ଅସ୍ତରଙ୍ଗଠାରେ ମଧ୍ୟ ଲବଣ ସତ୍ୟାଗ୍ରହ ହୁଏ। କବି ଅନନ୍ତ ଏଥିରେ ଯୋଗ ଦେଇଥିବା ସତ୍ୟାଗ୍ରହୀଙ୍କ ନିମନ୍ତେ ଗୀତ ଲେଖନ୍ତି -

ଲୁଣ ନୁହେଁ ସେ ତ ରକତ ଛିଟା
ବକ୍ସି ରାଜଗୁରୁ ମାଉଁସ ଚିକିଟା
ଆମେ ଦରିଆରୁ ମାରିବୁ ଲୁଣ
ଗୋରା ବେପାରୀଙ୍କ ଭାଙ୍ଗିବ ଟାଣ

ଏ ଗୀତ ଲବଣ ସତ୍ୟାଗ୍ରହୀ ପଦଯାତ୍ରୀଙ୍କ ସମବେତ କଣ୍ଠରେ ବେଶ୍ ଧ୍ୱନିତ ହୋଇ ଉଠେ।

୧୯୩୧ ମସିହାରେ ଗାନ୍ଧୀ-ଇରଉଇନ୍ ଚୁକ୍ତି ପରେ ବିପ୍ଳବୀ ଛାତ୍ର ଅନନ୍ତ, ବୈଦ୍ୟନାଥ ରଥ, ବିଶ୍ୱନାଥ ପଶାୟତ, ଅଶୋକ ରାଓ, ପରମାନନ୍ଦ ମହାନ୍ତି ପ୍ରଭୃତିଙ୍କୁ ରେଭେନ୍‌ସା କଲେଜରେ ଆଡ଼ମିସନ୍ ମିଳେ। ରେଭେନ୍‌ସାରେ ଏଇ ଛାତ୍ରମାନଙ୍କ ଆଲୋଚନା ଓ ପାଠଚକ୍ର ଜମିଉଠେ। ଅନନ୍ତଙ୍କ କାମ କଲେଜ ଜୀବନରେ ଦୁଇ ଭାଗ ହୋଇଯାଏ। ସେ ପ୍ରଫେସର ଆର୍ତ୍ତବଲ୍ଲଭ ମହାନ୍ତିଙ୍କୁ "ବ୍ରିଦ୍ଗ୍ଧ ଚିନ୍ତାମଣି," ବୈଦେହୀଶ ବିଳାସ" ପରି ପୁରୁଣା ବହି ଗୁଡ଼ିକର ତାଳ ପତ୍ର ଖେଦାରୁ ପାଠୋଦ୍ଧାର କରିବାରେ ସାହାଯ୍ୟ କରନ୍ତି, ଯାହା ଫଳରେ ସେ "ମୁକୁର" ର ସମ୍ପାଦକ ବ୍ରଜ ସୁନ୍ଦର ଦାସ ଓ 'ପ୍ରାଚୀ ସମିତି'ର ସଭାପତି ବିଶ୍ୱନାଥ କରଙ୍କ ପ୍ରିୟପାତ୍ର ହୋଇ ଉଠନ୍ତି। ଦ୍ୱିତୀୟତଃ, ସେ ରାଜନୀତିକ ଚର୍ଚ୍ଚା କ୍ଷେତ୍ରରେ ସକ୍ରିୟ ଅଂଶ ଗ୍ରହଣ କରି ଭଗବତୀ ପାଣିଗ୍ରାହୀଙ୍କ ସାନିଧ ଲାଭ କରନ୍ତି। ଗାନ୍ଧିବାଦୀ ସଂଗ୍ରାମର ବିକଳ୍ପ ମାର୍ଗ ହେଲା ଆପୋଷହୀନ ସଂଗ୍ରାମ ଯେଉଁଥିରେ ଅଧିନାୟକତ୍ୱ କରନ୍ତି ସଂଗଠିତ କୃଷକ ବାହିନୀ। ସେଥିପାଇଁ ଜନଗଣଙ୍କୁ ଶିକ୍ଷିତ କରିବାକୁ ହୁଏ। ସେଇ ଉଦ୍ଦେଶ୍ୟରେ ବାମପନ୍ଥୀ ଛାତ୍ରଦଳ ପ୍ରକାଶ କରନ୍ତି ବୁଲେଟିନ୍ 'ଆଗେ ଚଲ'। କଂଗ୍ରେସ ପାର୍ଟି ମଧରେ ସେତେବେଳକୁ ନବକୃଷ୍ଣ ଚୌଧୁରୀ ଓ ମାଳତୀ ଚୌଧୁରୀ ନେତୃତ୍ୱରେ କଂଗ୍ରେସ ସୋସାଲିଷ୍ଟ ଫୋରମ୍ ଗଠିତ ହୋଇ ସାରିଥାଏ। ଏହି ଗୋଷ୍ଠୀରେ ଅନନ୍ତ ଭଗବତୀ, ଗଙ୍ଗାଧର ରଥ, ଗୋକୁଳ ମୋହନ, ବନମାଳୀ ପଟ୍ଟନାୟକ, ଅଶୋକ ରାଓ, ନୀଳମଣି ରାଉତରାୟ ଆଦି ଯୋଗ ଦିଅନ୍ତି। ତତ୍କାଳୀନ କଂଗ୍ରେସ ଏମ୍.ପି. ଭୁବନାନନ୍ଦ ଦାସଙ୍କ ସୌଜନ୍ୟରୁ ଛାତ୍ରମାନଙ୍କୁ ମିଳେ 'କମ୍ୟୁନିଷ୍ଟ ଇସ୍ତାହାର' ଷ୍ଟାଲିନ୍ ରଚନାବଳୀ। ତାହା ମଧ ପଠିତ ହୁଏ। ୧୯୩୨ର ଦ୍ୱିତୀୟ ଗୋଲ ଟେବୁଲ୍ ବୈଠକର ଅସଫଳତା ପରେ ଗାନ୍ଧି ବନ୍ଦୀ ହୁଅନ୍ତି। ଏହି ବିପ୍ଳବୀ ଛାତ୍ରମାନଙ୍କୁ ମଧ ଇଂରେଜ ସରକାର ବନ୍ଦୀ କରନ୍ତି। ଛ'ମାସ କାରାବାସ ପରେ ଅନନ୍ତ ଫେରନ୍ତି କଟକ। ଶୁଭେଚ୍ଛୁ ଅଧାପକ ଆର୍ତ୍ତବଲ୍ଲଭ ମହାନ୍ତି, ଅଧାପକ ପ୍ରାଣକୃଷ୍ଣ ପରିଜାଙ୍କ ହସ୍ତକ୍ଷେପ ଫଳରେ ସେ କଲେଜରେ ପୁନଃ-ଆଡ଼ମିସନ୍ ପାଆନ୍ତି। ସେତେବେଳେ କାଶୀ ବିଦ୍ୟାପୀଠର ଅଧକ୍ଷ ତଥା ବିଶିଷ୍ଟ ସମାଜବାଦୀ ଚିନ୍ତକ ଆଚାର୍ଯ୍ୟ ନରେନ୍ଦ୍ର ଦେବ ପୁରୀରେ ଭଗବତୀଙ୍କ ଗୃହରେ ଅନୁଷ୍ଠିତ ବୈଠକରେ ପୃଥିବୀର ସମକାଳୀନ ଇତିହାସ ବିଷୟରେ ଦୀର୍ଘ ୬ଦିନ ଧରି ବକ୍ତୃତା ଦିଅନ୍ତି। ମାନବ ସମାଜର ଇତିହାସକୁ ସେ ଡାଏଲିକ୍ଟିକ୍ସ ମାର୍ଗରେ ବାଖ୍ୟା କରନ୍ତି। ଅନନ୍ତଙ୍କ କବିତାରେ ଯା' ପରେ ଫୁଟିଉଠେ ସମାଜ ଶ୍ରେଣୀଗତ ବିଶ୍ଳେଷଣ କରିବା ଓ ପାଠକଙ୍କୁ ଶ୍ରେଣୀ ସଂଗ୍ରାମ ରଚନା କରିବାକୁ ପ୍ରଚ୍ଛେଦନା ଦେବାର ପ୍ରବଣତା।

୧୯୩୨ ମସିହା ବେଳକୁ ନବକୃଷ୍ଣ ଚୌଧୁରୀ ଓ ମାଳତୀ ଚୌଧୁରୀଙ୍କ ନେତୃତ୍ୱରେ ଯୁବ କଂଗ୍ରେସ କର୍ମୀ ମହଲରେ କଂଗ୍ରେସ ସୋସାଲିଷ୍ଟ ଫୋରମ୍ ଜୋର୍‌ଦାର୍ କାର୍ଯ୍ୟ ଆରମ୍ଭ କରେ। ୧୯୩୪ରେ ଏହି ସଂଗଠନ "ସାମ୍ୟବାଦୀ କର୍ମୀ ସଂଘ"ର ରୂପ ନିଏ। ପ୍ରାଣନାଥ ପଟ୍ଟନାୟକ ଏହାର ସଭାପତି ଓ ଭଗବତୀ ପାଣିଗ୍ରାହୀ ସମ୍ପାଦକ ରୂପେ କାର୍ଯ୍ୟଭାର ତୁଲାଇଲେ। ଏ ସଂଗଠନର ମୁଖପତ୍ର ରୂପେ 'ସାରଥି' ପ୍ରକାଶ ପାଏ। କବି ଅନନ୍ତ ଏଥିରେ

ମୁଖ୍ୟତଃ କବିତା ଲେଖନ୍ତି । ୧୯୩୩ ମସିହା ନଭେମ୍ବର 'ନବଭାରତ' ସଂଖ୍ୟାରେ ଭଗବାନଙ୍କ ଅସ୍ତିତ୍ୱ ବିଷୟରେ ସନ୍ଦୀହାନ କବି ଅନନ୍ତ ଲେଖନ୍ତି -

'କୋଟି ଶିର ଚୂରଇ ଗୋଟିଏ ପାଦ / ନରର ରକ୍ତ ଭଜଇ ସେ ଆହ୍ଲାଦ
ତେସନେ ଯେ ନାରୀ ନିପୀଡ଼ିତା ଗୃହ କୋଣେ / ବିବେକ ମାନବ ଅନ୍ଧବିଶ୍ୱାସ ମନେ
କ୍ରୂରତାର ଏଥି ଦୀପ୍ତ ପାବକ ଜଳେ / ନାହିଁ ତୁମେ ଭଗବାନ
କ୍ରନ୍ଦନ ରୋଳେ ପୂରିତ ବିଶ୍ୱ ପିଷ୍ଟ ହେ ନର ପ୍ରାଣ ।' (ନାହିଁ ତୁମେ ଭଗବାନ୍)

କବି ୧୯୩୪ ବେଳକୁ ପୁରାତନ ଚିନ୍ତନ ଓ ସଂକୀର୍ଣ୍ଣ ବିଚାରଧାରାକୁ ସମାଜର ବାର୍ଦ୍ଧକ୍ୟ ରୀତିନୀତି ବୋଲି ଅଭିହିତ କଲେ । ପ୍ରବୀଣ ଓ ବୃଦ୍ଧମାନେ ଯେଉଁମାନେ ନିଜର ଉତ୍ତୀର୍ଣ୍ଣ ବୟସକୁ ଦେଖାଇ ସାମାଜିକ ବିଚାରବୋଧର ସଂକୀର୍ଣ୍ଣତା, ରକ୍ଷଣଶୀଳତାର କର୍ଷଣ କରନ୍ତି, ସେମାନଙ୍କୁ ବାଟ ଛାଡ଼ି ଦେବାପାଇଁ ଯୁବ କବି "ବୃଦ୍ଧହେ ତୁମ ଦିବସ ଯାଇଛି ଚାଲି" କବିତାରେ ଆହ୍ୱାନ କରନ୍ତି-

'କାହିଁ ଭଗବାନ୍ କାହିଁ ବା ସର୍ଗ କହ / କାହା ପାଇଁ ବସି ଗଢ଼ାଅ କାଷ୍ଠ ମାଳି ?
ଛାଡ଼ିଦିଅ ପଥ, ନବୀନ ଆଲୋକ ଜାଳି
ତରୁଣ ବାହିନୀ ଛୁଟୁରେ ଦର୍ପ ଭରେ ।'

୧୯୩୫ ମସିହାରେ ରେଭେନ୍‌ସାରୁ ବି.ଏ. ପାଶ୍ କରି ଅନନ୍ତ ଆଇନ୍ କଲେଜରେ ଭର୍ତ୍ତି ହେଲେ । ତାଙ୍କ ନେତୃତ୍ୱରେ ସେଠାରେ ଗଠିତ ହୁଏ ଛାତ୍ର ସଂଘ । ଛାତ୍ର ସଂଘର ସକ୍ରିୟ କର୍ମୀଥିଲେ- ବିଶ୍ୱନାଥ ପଶାୟତ୍, ବାଳମୁକୁନ୍ଦ ଦାସ ପ୍ରଭୃତି । ଛାତ୍ର ସଂଘ ଯୁଦ୍ଧ ଘୋଷଣା କଲା- ଗୁରୁ, ଗାର୍ଡ଼ିଆନ୍ ଓ ଗଭର୍ଣ୍ଣମେଣ୍ଟ ବିରୁଦ୍ଧରେ । ଯେଉଁ ଗାର୍ଡ଼ିଆନ୍ ମାନେ ତାଙ୍କ ପୁତ୍ର କନ୍ୟାଙ୍କୁ କେବଳ ପୁସ୍ତକ କୀଟ ହେବାକୁ ପରାମର୍ଶ ଦିଅନ୍ତି, ଯେଉଁ ଗୁରୁମାନେ ବିଦ୍ୟାଳୟ ଓ ସରକାରର ଆନୁଗତ୍ୟ ସ୍ୱୀକାର କରିବାକୁ ଛାତ୍ରଙ୍କୁ କହନ୍ତି ଓ ଯେଉଁ ସରକାର ଭାରତକୁ ପରାଧୀନ କରି ରଖିବାକୁ ବଦ୍ଧପରିକର, ତାଙ୍କ ବିରୁଦ୍ଧରେ ଆପୋଷହୀନ ସଂଗ୍ରାମ ରଚନା କରିବାକୁ ନବଗଠିତ ଛାତ୍ରସଂଘ ଶପଥ ନିଏ । ୧୯୩୬ ମସିହାରେ କଟକ ସଂଗ୍ରାମ ରଚନା କରିବାକୁ ନବଗଠିତ ଛାତ୍ରସଂଘ ଶପଥ ନିଏ । ୧୯୩୬ ମସିହାରେ କଟକ ଟାଉନ୍ ହଲରେ ଅନୁଷ୍ଠିତ ହୁଏ 'ନିଖିଳ ଓଡ଼ିଶା ଛାତ୍ର ସମ୍ମିଳନୀ' ଛାତ୍ର ସମ୍ମିଳନୀର ଅଧିବେଶନକୁ ପରିଚାଳନା ପାଇଁ ବୈଦ୍ୟନାଥ ରଥ, ବିଶ୍ୱନାଥ ପଶାୟତ୍ ଓ ସଚି ରାଉତରାୟଙ୍କୁ ନେଇ ଗଠିତ ହୁଏ ଏକ ସଭାପତି ମଣ୍ଡଳୀ । ଅନନ୍ତ ପଟ୍ଟନାୟକ ଗାନ କରନ୍ତି ଜାଗରଣର କବିତା-

'ଯେ ଦୀପ ଜଳିଲା ଆଜି ଜଳାଅ ତା'ରେ ।'

୧୯୩୫ର ପ୍ରାରମ୍ଭରେ ସ୍ପେନର ଗଣତନ୍ତ୍ରୀ ଓ କମ୍ୟୁନିଷ୍ଟମାନେ ସେଠାକାର ସ୍ୱେଚ୍ଛାଚାରୀ ଏକଛତ୍ରବାଦୀ ଶାସକ ଫ୍ରାଁକୋ ସରକାର ବିରୁଦ୍ଧରେ ଆରମ୍ଭ କରନ୍ତି ଗୃହଯୁଦ୍ଧ । ଜର୍ମାନ୍ ହିଟ୍‌ଲରଙ୍କ

ନାଜୀବାଦୀ ଚରିତ୍ର ମଧ୍ୟ ସ୍ପଷ୍ଟ ହୋଇ ଉଠେ। ୧୯୩୫ ମସିହା ଜୁନ୍ ମାସ ୨୧ ତାରିଖରେ ପ୍ୟାରୀ ସହରରେ ମାକ୍ସିମ୍ ଗର୍କୀ, ରୋମାରୋଲାଁ, ଓ ହେମିଙ୍ଗୱେଙ୍କ ଆବାହକତ୍ୱରେ ଅନୁଷ୍ଠିତ ହୁଏ ଫାସୀବାଦୀ ବିରୋଧୀ ବିଶ୍ୱସ୍ତରୀୟ ଲେଖକ ଓ କଳାକାର ସମ୍ମିଳନୀ। ଏଥିରେ ଯୋଗ ଦିଅନ୍ତି ଇ.ଏମ୍.ଫଷ୍ଟର୍, ଆନ୍ଦ୍ରେ ମୁଲର, ଜନଷ୍ଟ୍ରାଚି, ଆନ୍ଦ୍ରେ ଜିଦ୍, ବାରବାସଜ୍ ପ୍ରଭୃତି ବିଶ୍ୱ ବିଶ୍ରୁତ ଲେଖକ। ସେ ଡାକରା ବାଜେ ସୁଦୂର ଓଡ଼ିଶାରେ ଯୁବ ସଂଗଠକ ଓ ଲେଖକ ଭଗବତୀ ପାଣିଗ୍ରାହୀଙ୍କ କାନରେ। ୧୯୩୫ ମସିହାରେ ନଭେମ୍ବର ୨୯ ତାରିଖରୁ ଡିସେମ୍ବର ୪ ତାରିଖ ଯାଏଁ କଟକର ଶ୍ରୀରାମଚନ୍ଦ୍ର ଭବନରେ ଅନୁଷ୍ଠିତ ହୁଏ ନବ ଗଠିତ 'ନବଯୁଗ ସାହିତ୍ୟ ସଂସଦ'ର ପ୍ରଥମ ଅଧିବେଶନ। କବି କାଳିନ୍ଦୀ ପାଣିଗ୍ରାହୀ ଏଥିରେ ସଭାପତିତ୍ୱ କରନ୍ତି। ଏହାର ଉଦ୍‌ଘାଟନୀ ସଙ୍ଗୀତ ଗାନ କରନ୍ତି ମାଳତୀ ଚୌଧୁରୀ, ଅଶୋକ ରାଓ ଓ ଖୋକନ ଜୋଆରଦାର-ଯାହାକୁ ରଚନା କରିଥିଲେ ଯୁବ କବି ଅନନ୍ତ ପଟ୍ଟନାୟକ।

'ନବୀନ ଯୁଗର ତରୁଣ ଜାଗରେ ଜାଗ ବନ୍ଧନ ହରା
ବକ୍ଷ ଶୋଣିତେ ଲକ୍ଷ ଜୀବନେ ଖେଳାଅ ଆଲୋକ ଧାରା।
ଛିନ୍ନ କରରେ ବନ୍ଧନରାଜି କ୍ରନ୍ଦନ ହେଉ ଶେଷ
ଲୁପ୍ତ ହେଉରେ ଜାତି ଉପଜାତି, ଖଣ୍ଡିତ ଶତ ଦେଶ
ମହାମାନବର ଶଙ୍ଖ ଶବଦେ ସମୁରେ ଦୁଃଖ ଜ୍ୱାଳା/ ଜାଗ ବନ୍ଧନ ହରା।'

ନବଯୁଗ ସାହିତ୍ୟ ସଂସଦର ମୁଖପତ୍ର 'ଆଧୁନିକ' ପ୍ରଥମ ସମ୍ପାଦକୀୟରେ ଭଗବତୀ ଲେଖିଲେ "ସାହିତ୍ୟ ପତ୍ରିକାମାନଙ୍କର ସାଧାରଣ ନୀତି ହେଉଛି, ସାପ ମରିବ ନାହିଁ କି ବାଡ଼ି ଭାଙ୍ଗିବ ନାହିଁ। ସାପ ସହିତ ସେମାନଙ୍କର କୌଣସି ସମ୍ପର୍କ ନାହିଁ, ନିଜର ବାଡ଼ିଟି ବଜାୟ ରଖିବା ହିଁ ସେମାନଙ୍କର ଲକ୍ଷ୍ୟ। 'ଆଧୁନିକ' କିନ୍ତୁ ତା' ନୁହେଁ। ବାଡ଼ି ଭାଙ୍ଗି ଯାଉ ପଛେ, ସାପ ମରୁ- ଏହାହିଁ ତାର ନୀତି।" 'ଆଧୁନିକ'ର ପ୍ରଥମ ସଂଖ୍ୟାରେ ପ୍ରକାଶିତ ହୁଏ କବି ଅନନ୍ତଙ୍କ ସ୍ମରଣୀୟ କବିତା- "ପ୍ରଳୟର ଆବାହନ"। ଏ କବିତା ଆହ୍ୱାନ ଦିଏ -

'ସର୍ବହରାର ଦଳ! ଚଲ ଚଲ ଖରତର
ଚୂରଚୂର ଜଞ୍ଜିର କାରାରେ
କଣ୍ଠେ ଖେଳୁ ହେ ତବ, ବିଦ୍ୟୁତ ଦ୍ୟୁତି ନବ
ବକ୍ଷେ ବିକଶୁ ପ୍ରୀତି ଧାରାରେ
ପୁଞ୍ଜିତ ପଥେ ପଥେ ଭ୍ରାନ୍ତି, ବେଦନା ରାଶି ବନ୍ଧ ଦୁଆର କୋଟି ପୁରରେ
ମୁକ୍ତ କରରେ ପ୍ରାଣ / ଦୃପ୍ତ ଆହବେ ଝାସି / ସଙ୍ଗୀତ ତୋଳ ନବ ସୁରରେ।'

'ଆଧୁନିକ'ର ପଞ୍ଚମ ସଂଖ୍ୟାରେ ପ୍ରକାଶିତ 'ସାହିତ୍ୟରେ ଶ୍ରେଣୀପରତା' ପ୍ରବନ୍ଧରେ ଅନନ୍ତ ଲେଖିଥିଲେ- "ଯିଏ ବୁଝୁ ବା ନବୁଝୁ- ଅର୍ଥନୈତିକ କାରଣ ଯୋଗୁଁ ମନୁଷ୍ୟ ସମାଜ ମୁଖ୍ୟତଃ ଦୁଇଟି ଶ୍ରେଣୀରେ ବିଭକ୍ତ- ଶୋଷକ ଓ ଶୋଷିତ- ଅପହାରକ ଓ ଅପହୃତ। ଏ ଦୁଇଟି ଶ୍ରେଣୀ

ଭିତରେ ଆଉ ଗୋଟିଏ ନିଜ ଅସ୍ତିତ୍ୱ ବିହୀନ ଦୁର୍ବଳ ମଝିଆଁ ଶ୍ରେଣୀ ବେଳେ ବେଳେ ଶିର ଟେକି କେତେବେଳେ ପ୍ରଥମକୁ, କେତେବେଳେ ଦ୍ୱିତୀୟକୁ ବା ଆଉଜି ଯାଏ। ଏଇ ପ୍ରସଙ୍ଗରେ ଭାବିଲେ, ସାହିତ୍ୟରେ ଶ୍ରେଣୀ ବିଭାଗ ରହିବାରେ କୌଣସି ଅଯୌକ୍ତିକତା ନାହିଁ। ସାହିତ୍ୟ ସମାଜର ଅର୍ଥନୈତିକ ଜୀବନର ସବୁବେଳେ ଆଭିମୁଖ୍ୟ ଧରିଥାଏ। ପୃଥିବୀ ପୃଷ୍ଠରେ ଏଣୁ ଆଜି ସାହିତ୍ୟରେ ବି ମୁଖ୍ୟତଃ ଦୁଇ ଜାତୀୟ ଲେଖକର ଆବିର୍ଭାବ ଘଟିଛି। ଗୋଟିଏ ଶ୍ରେଣୀ ନିର୍ଭିକ ଭାବରେ ଅନୁପ୍ରାଣିତ ହୋଇ କୋଟି କୋଟି ନିର୍ଯ୍ୟାତିତଙ୍କୁ ମୁକ୍ତି ସଂଗ୍ରାମକୁ ଆହ୍ୱାନ କରୁଛି।" 'ଆଧୁନିକ'ର ମାତ୍ର ଛଅଟି ସଂଖ୍ୟା ପ୍ରକାଶିତ ହେଲା ଓ 'ନବଯୁଗ' ଚାଲିଥିଲା ୧୯୪୪ ମସିହା ଯାଏଁ। ତା'ପରେ ଅନନ୍ତଙ୍କ ସହ ହାତ ମିଳାଇ ଏ ଆନ୍ଦୋଳନକୁ ଆଗେଇ ନେଲେ ମନ ମୋହନ ମିଶ୍ର, ମନୋଜ ଦାସ, ଜଟାୟୁ ପ୍ରଭୃତି।

୧୯୩୫ ଆଇନ୍ ବଳରେ ଓଡ଼ିଶାରେ ଯେଉଁ ସୀମିତ ନିର୍ବାଚନ ହେଲା ସେଥିରେ କଂଗ୍ରେସ ପ୍ରାର୍ଥୀ ଭାବେ ସମାଜବାଦୀ ନବକୃଷ୍ଣ ଚୌଧୁରୀ, ପ୍ରାଣନାଥ ପଟ୍ଟନାୟକ ଓ ମୋହନ ଦାସ ଆସେମ୍ବ୍ଲିକୁ ନିର୍ବାଚିତ ହୋଇ ଆସିଲେ। ସାରା ଓଡ଼ିଶାରେ ସମାଜବାଦୀ ଆନ୍ଦୋଳନର ଅଭିବୃଦ୍ଧି ପାଇଁ ଅନୁକୂଳ ଆବହାଓ୍ୱା ସୃଷ୍ଟି ହେଲା। ରାଜ୍ୟରେ କୃଷକ ଆନ୍ଦୋଳନ ଓ ରାଜା ରାଜୁଡ଼ାଙ୍କ ଅତ୍ୟାଚରର ପ୍ରତିବାଦରେ ଗଡ଼ଜାତ ପ୍ରଜା ଆନ୍ଦୋଳନ ତେଜି ଉଠିଲା। ଖୋର୍ଦ୍ଧାରେ ନିଖିଳ ଉତ୍କଳ କୃଷକ ସଭା ଗଠିତ ହେଲା। 'କୃଷକ' ନାମକ ପତ୍ରିକାଟିଏ ପ୍ରକାଶ କରାଗଲା। ଏହାର ସମ୍ପାଦକ ରହିଲେ ଭଗବତୀ ଚରଣ ପାଣିଗ୍ରାହୀ। ୧୯୩୬ ମସିହା ମାର୍ଚ୍ଚ ଶେଷ ଆଡ଼କୁ କଟକଠାରେ ଅନୁଷ୍ଠିତ ହେଲା ଏକ ବିରାଟ କୃଷକ ସମ୍ମିଳନୀ। ଅକ୍ଟୋବର ମାସକୁ ପୁରୀର ଶରଧା ବାଲିରେ ରାଜ୍ୟ କୃଷକ ସମାବେଶ ଅନୁଷ୍ଠିତ ହେଲା। ଏଥିରେ କବି ଅନନ୍ତଙ୍କ ରଚିତ ଉଦ୍‌ବୋଧନୀ ସଙ୍ଗୀତ ଗାନ କଲେ ମାଳତୀ ଚୌଧୁରୀ ...

'ଜୀବନ ଧରି ହେ ଢ଼ାଳିଲୁ ରକ୍ତ ତୋଳିଲୁ ସଉଧ ମାଳା
ଆମରି ଲାଗିରେ ଶାସନ ଶକ୍ତ ଆମେଇ ସର୍ବହରା।
ଝାଞ୍ଜି ପବନ ସହିରେ ସଘନ ଗହୀରେ ରୋଇଲୁ ଧାନ
ବରଷା କାଦୁଅ ଚକଟି କେତେରେ ଖୀନ୍ନ କରିଲୁ ପ୍ରାଣ
ପଉଷ ପ୍ରଭାତେ କାଟିଲୁ ଶସ୍ୟ ହସିଲେ ନିଖିଳ ବାସୀ
ଶକ୍ତିଶାଳୀର କରାଳ କବଳ ନେଲାରେ ସକଳ ଗ୍ରାସି।
ପ୍ରାପ୍ୟ ଆମର ନେବୁରେ ମୁକର ଆମେ ଶ୍ରମିକର ଜାତି
ଫୁଟାଇବୁ ଆଜି ରକ୍ତ ପ୍ରଭାତ ଚିରି ଅନ୍ଧାର ରାତି।'

ଚାଷୀମାନଙ୍କୁ ଜାଗ୍ରତ କରିବାକୁ, ନିଜ ଅଧିକାର ସମ୍ପର୍କରେ ସଚେତନ କରିବାକୁ କବିଙ୍କର ଏ ଗଣସଙ୍ଗୀତ ଗାଁରେ ଗାଁରେ, ଗାନ ହେଲା ବଡ଼ ବଡ଼ ସଭାରେ ଓ ବୈଠକରେ। ଫଳରେ ଏ ଗୀତ କୃଷକ ଆନ୍ଦୋଳନର ମୁଖ୍ୟ ସଙ୍ଗୀତରେ ପରିଣତ ହୋଇଗଲା।

କ୍ରମେ କ୍ରମେ କୃଷକ ଆନ୍ଦୋଳନ ଗାଁକୁ ଗାଁ ମାଡ଼ି ମାଡ଼ି ଗଡ଼ଜାତ ଅଞ୍ଚଳରେ ବ୍ୟାପ୍ତ ହେଲା। ଗଡ଼ଜାତ ଅଞ୍ଚଳରୁ ରାଜ ଦରବାର ଦ୍ୱାରା ବିତାଡ଼ିତ ଓ ନିର୍ଯ୍ୟାତିତ ଅନେକ କୃଷକ ପଳାଇ ଆସି ମୋଗଲବନ୍ଦୀ ଅଞ୍ଚଳରେ ରହିଲେ। ସେମାନେ କୃଷକ ସଂଗଠନର ବାର୍ତ୍ତା ସହ ଓ ହାତରେ 'କୃଷକ' ପତ୍ରିକା ଧରି ନିଜ ଗାଁକୁ ଫେରିଲେ। ୧୯୩୮ ମସିହାରେ ଗଡ଼ଜାତର ପ୍ରଜା ଆନ୍ଦୋଳନକୁ ଉତ୍ସାହ ଯୋଗାଇବାକୁ କଟକ ଆସିଥିଲେ ସର୍ବଭାରତୀୟ କୃଷକ ସଭାର ମୁଖ୍ୟ ପଟ୍ଟାଭି ସୀତାରାମାୟା। ତାଙ୍କ ଅବଗତି ନିମନ୍ତେ ଅନନ୍ତ, ଭଗବତୀ ଓ ସାରଙ୍ଗଧର ଦାସ ଢେଙ୍କାନାଳ, ନୀଳଗିରି, କନିକା, ରଣପୁର ରାଜାଙ୍କ ଅତ୍ୟାଚାରର କରୁଣ କାହାଣୀ ବର୍ଣ୍ଣନା କଲେ।

ଢେଙ୍କାନାଳର ରାଜ ଅତ୍ୟାଚାର ସେତେବେଳେ ଏତେ ନିର୍ମମ ଥିଲା ଯେ, ଅନ୍ଧାଧୁନିଆ, ହୁଙ୍କାପିଟା ଅତ୍ୟାଚାରୀ ଶାସନର ଅନ୍ୟନାମ ଢେଙ୍କାନାଳୀ ଶାସନ ବୋଲି ଲୋକେ କହୁଥିଲେ। ଅନନ୍ତଙ୍କ ନେତୃତ୍ୱରେ ଢେଙ୍କାନାଳର ରାଜ ଅତ୍ୟାଚାରକୁ ସାଧାରଣ ଲୋକଙ୍କୁ ଜଣାଇବା ନିମନ୍ତେ ପ୍ରକାଶ କରାଗଲା 'ରଣଭେରୀ'। ୧୯୩୮ରେ ସେ ରାଜ୍ୟର ଗାଏଁ ଗାଏଁ ରାଜ ଅତ୍ୟାଚାର ବିରୁଦ୍ଧରେ ଜନ ସଭାମାନ ଅନୁଷ୍ଠିତ ହେଲା। ସେପ୍‌ଟେମ୍ବର ପହିଲାରେ ରାଜ୍ୟର ସୀମାରେ ମୋଗଲବନ୍ଦୀ ଅଞ୍ଚଳ ଅନ୍ତର୍ଗତ ଜେନାପୁରରେ ବିରାଟ କୃଷକ ସମ୍ମିଳନୀ ଅନୁଷ୍ଠିତ ହେଲା। ସେପ୍‌ଟେମ୍ବର ୧୧ ତାରିଖରେ ରାଜା ତାଙ୍କ ପ୍ରଜାଙ୍କ ଦୁଃଖ ବୁଝିବାର ଆଳ କରି ଜନ ପ୍ରତିନିଧି ହରମୋହନ ପଟ୍ଟନାୟକ, ମହେଶ୍ୱର ସୁବାହୁ ସିଂ, ପୂର୍ଣ୍ଣଚନ୍ଦ୍ର ମହାପାତ୍ରଙ୍କୁ ଡକାଇ ଗିରଫ୍ କଲେ। ଫଳରେ ରାଜ୍ୟ ବ୍ୟାପି ଜନ ଅସନ୍ତୋଷ ପ୍ରବଳରୁ ପ୍ରବଳତର ହେଲା। ଆନ୍ଦୋଳନର ନେତୃତ୍ୱରେ ଥିଲେ ବୀର ବୈଷ୍ଣବ ପଟ୍ଟନାୟକ। ବୀର ବୈଷ୍ଣବଙ୍କ ପ୍ରଜା ବାହିନୀକୁ ମୁକାବିଲା କରିବା ପାଇଁ ଭୁବନ ଗ୍ରାମକୁ କଟକରୁ ଗୋରା ପଲଟଣ ପଠାଗଲା। "ବ୍ରାହ୍ମଣୀ ନଦୀରେ ନାଆ ସାହାଯ୍ୟରେ ପାରି କରି ଦେବୁ ନାହିଁ-ସେଥିପାଇଁ ପ୍ରଜାମଣ୍ଡଳର ହୁକୁମ୍ ନାହିଁ" ବୋଲି ବାରବର୍ଷର ନାଉରୀ ପିଲା ବାଜି ରାଉତ କହିଥିଲେ। ଫଳରେ ତାକୁ ପୋଲିସ୍ ଫଉଜ ଗୁଳି କରି ହତ୍ୟା କଲେ। ନୀଳକଣ୍ଠପୁର ଓ ଭୁବନ ଗ୍ରାମର ଲଢୁଆ କୃଷକମାନେ ବାଜି ରାଉତ ଓ ପୁଲିସ ଗୁଳିରେ ଶହୀଦ୍ ହୋଇଥିବା ଆଉ ପାଞ୍ଚଟି ଶବ (ଯେଥା: ଲକ୍ଷ୍ମଣ, ହୁରୁଷି, ଗୁରି, ନଟ, ରଘୁ)କୁ ଭେଳା ଯୋଗେ ଜେନାପୁର ଓ ସେଠାରୁ ବିଶ୍ୱନାଥ ପଶାୟତ, ରବି ଘୋଷ ଓ ମୋତିଲାଲ ତ୍ରିପାଠୀ ଶବଗୁଡ଼ିକ ଏକ ମାଲବାହୀ ଗାଡ଼ିର ଡ଼ବାରେ ଘେନି କଟକ ଆସିଲେ। ଏକ ବିରାଟ ପଟୁଆରରେ ସେମାନେ ଯାଇ ଖାନ୍ ନଗର ଶ୍ମଶାନରେ ଶବଗୁଡ଼ିକୁ ଦାହ କଲେ। ଅନନ୍ତ, ଲକ୍ଷ୍ମଣର ଶବବାହକ ଥିଲେ। କବି ସଚ୍ଚି ରାଉତରା' ହୁରୁଷିର ଶଗଡ଼ର ବାହକ ଥିଲେ। ସେ ସେଇ ଚିତା ପାଖରେ ବସି ଏକ ପେନ୍‌ସିଲ୍‌ରେ 'ବାଜି ରାଉତ' କବିତାର ପ୍ରଥମ କେଇ ପଦ ଲେଖିଥିଲେ।

ଏହାପରେ ଢେଙ୍କାନାଳର ରାଜ ଅତ୍ୟାଚାର ସୀମା ଲଂଘନ କଲା। ଏଥିରେ ଅତିଷ୍ଠ ହୋଇ ଶହଶହ ଶରଣାର୍ଥୀ କଟକ ପୁରୀ ଜିଲ୍ଲାକୁ ପଳାୟନ କଲେ। ସେମାନଙ୍କୁ ଆଶ୍ରୟ ଦେଇ ଥଇଥାନ କରିବା ପାଇଁ ସେ ରାଜ୍ୟ ସୀମାନ୍ତରେ ତିନୋଟି କ୍ୟାମ୍ପ ପରିଚାଳିତ ହେଲା । ଜେନାପୁରକୁ ଲାଗି

କଲାଣ୍ଡୋ କ୍ୟାମ୍ପର ଦାୟିତ୍ୱରେ ଥିଲେ ଅନନ୍ତ ପଟ୍ଟନାୟକ ଓ ବୈଦ୍ୟନାଥ ରଥ। କ୍ୟାମ୍ପର ଖାଦ୍ୟ ବସ୍ତ୍ର ଆୟୋଜନ ଏ ଦୁଇ ବନ୍ଧୁ ସଫଳତାର ସହ କରିଥିଲେ। କୃଷକ ମାନଙ୍କର ଗାଇବା ପାଇଁ ସେ ସମୟରେ କବି ଅନନ୍ତ କେତୋଟି ସଙ୍ଗୀତ ରଚନା କରିଥିଲେ। ସଚ୍ଚିବାବୁଙ୍କ ସହ ମିଶି ସେ ପ୍ରକାଶ କଲେ ପ୍ରସିଦ୍ଧ ଗଣ ସଙ୍ଗୀତ ପୁସ୍ତିକା - 'ରକ୍ତ ଶିଖା'। ସଚ୍ଚିବାବୁଙ୍କ ପ୍ରସିଦ୍ଧ ଗୀତ - "ମାର୍ ତୁ ଯେତେ ଗୁଳି" ଥିଲା ଢେଙ୍କାନାଳର ରାଜତନ୍ତ୍ରକୁ ଏକ ଚ୍ୟାଲେଞ୍ଜ୍। ରାଜତନ୍ତ୍ରର ଅନ୍ଧାରୀ ଶାସନକୁ ଦିନେ ଜନଗଣ ଯେ ପାଦରେ ଦଳି ଦେବେ - ଏ ଆଶା ଏ ଗୀତରେ ଉକୁଟି ଉଠିଥିଲା। 'ରକ୍ତ ଶିଖା'ରେ କବି ଅନନ୍ତ ବି ଲେଖିଥିଲେ -

'ଆମେ ମୂଲିଆର ଜାତି ଜାଗିବୁ / ମରୁଛୁ ତ ନିତି ଭୋକ ଉପାସରେ
ଥରେ ହେଲେ ଶିର ଟେକିବୁ / ଆମ ହାଡ଼ ମାଂସେ ଯେ ଗଢ଼ିଲେ କୋଠା
ଆମ ଲହୁ ଶୋଷି ଯେ' ବା ହେଲେ ମୋଟା।
ସେଇ ଜମିଦାର ସାହୁକାର କୁଳ / ଆଣ୍ଟପଣ ସବୁ ସାରିବୁ।
ଏଇ ସଙ୍କଳନରେ କବିଙ୍କର ଅନ୍ୟ ଏକ ଲୋକପ୍ରିୟ ଗୀତ ହେଲା -
ମୁଲକ ଯାକର ମାଲିକ ଚଷୀ ମଜୁରିଆ କୁଲି ହେ ଉପବାସୀ ....
ଟେକି ଧର ତୋର ପତାକା ଆସି / ତୋହରି ରକତେ ଲାଲ / ଚଲରେ ଚଲରେ ଚଲ'

କଲାଣ୍ଡୋ ଶିବିରରୁ ଢେଙ୍କାନାଳ ରାଜ୍ୟ ସୀମା ଟପି ଅନନ୍ତ ଓ ବୈଦ୍ୟନାଥ ନିତିପ୍ରତି ସେ ରାଜ୍ୟକୁ ରାଜ ବିରୋଧୀ ପ୍ରଚାର ପତ୍ର ବାଣ୍ଟିବାକୁ ଯାଆନ୍ତି। ଏକଦା ବ୍ରାହ୍ମଣୀ ନଦୀ ପାରି ହେବାବେଳେ ଅନନ୍ତ ରାଜାଙ୍କ ପୁଲିସ୍ ହାତରେ ବନ୍ଦୀ ହେଲେ। ତାଙ୍କୁ ମଢ଼ି (ବର୍ତ୍ତମାନର କାମାକ୍ଷାନଗର) ଜେଲରେ ରଖାଗଲା। ଜେଲ୍‌ରେ ରାଜାଙ୍କ ପୁଲିସର ନିର୍ମମ ଅତ୍ୟାଚାର ଫଳରେ ଅନନ୍ତ ପଟ୍ଟନାୟକଙ୍କ ଆଖି ଗୁରୁତର ଭାବେ ଆଘାତ ପାଇଲା। ୧୯୮୩ ମସ୍କୋ ଭ୍ରମଣ କାଳରେ ସେଠାରେ ଚକ୍ଷୁ ପରୀକ୍ଷା କରି ସେ ସେଇ ପୁରୁଣା ଅତ୍ୟାଚାର ଚକ୍ଷୁ ନଷ୍ଟ ପାଇଁ ଦାୟୀ ବୋଲି ଜାଣିବାକୁ ପାଇଲେ। ଦୀର୍ଘ ଏକ ବର୍ଷ ପରେ ସେ ମଢ଼ି ଜେଲରୁ ଖଲାସ୍ ହେଲେ।

୧୯୪୦ ମସିହାରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ପ୍ରବଳ ଆକାର ଧାରଣ କରିଥାଏ। ସୋଭିଏତ୍ ଗଣପ୍ରଜାତନ୍ତ୍ରକୁ ହିଟଲର୍ ଆକ୍ରମଣ କରିଥାଏ। ଓଡ଼ିଶାରେ କିନ୍ତୁ ଇଂରେଜ ସରକାର କେତେକ କମ୍ୟୁନିଷ୍ଟ ନେତାଙ୍କ ରାଷ୍ଟ୍ର ବିରୋଧୀ ଷଡ଼ଯନ୍ତ୍ରର ଗନ୍ଧ ପାଏ। ଗଡ଼ଜାତ ଗୁଡ଼ିକରେ ନିଜର ଅନୁଗତ ରାଜା ମହାରାଜାଙ୍କର ଆଖିରୁ ନିଦ ଉଡ଼ାଇ ଦେଇଥାଏ କମ୍ୟୁନିଷ୍ଟ। ନିଜର ଗୀତ ଓ ଲେଖା ସାହାଯ୍ୟରେ କବି ଅନନ୍ତ ବ୍ରିଟିଶ୍‌ମାନଙ୍କର ସାମ୍ରାଜ୍ୟବାଦୀ ଯୁଦ୍ଧ ଓ ଜର୍ମାନର ଫାସିଷ୍ଟ ଆକ୍ରମଣ ବିଷୟରେ ଜନଗଣଙ୍କୁ ସଚେତନ କରାଉଥାନ୍ତି। ବିପ୍ଳବୀ ପ୍ରଚାରପତ୍ର ଓ ପୁସ୍ତିକା ବଣ୍ଟନ କରି ଭଗବତୀ ପାର୍ଟିକୁ ଦିଗେ ଦିଗେ ପ୍ରସାରିତ କରୁଥାନ୍ତି। ଭଗବତୀ, ଅନନ୍ତ, ବନମାଳୀ ଦାସ, ବୈଦ୍ୟନାଥ ରଥ, ଗୁରୁଚରଣ ପଟ୍ଟନାୟକ, ବିଜୟ ଚନ୍ଦ୍ର ଦାସ ଓ ଶରତ ପଟ୍ଟନାୟକଙ୍କ ବିରୁଦ୍ଧରେ ରାଷ୍ଟ୍ର ବିରୋଧୀ

କାର୍ଯ୍ୟକଳାପ ଅଭିଯୋଗ ଆଣି ବନ୍ଦୀ କରାଯାଏ। କମ୍ୟୁନିଷ୍ଟ ବିପ୍ଳବୀଙ୍କ ତରଫରୁ ରାଜ କିଶୋର ଦାସ ମୋକଦ୍ଦମା ଲଢ଼ନ୍ତି। ମୋକଦ୍ଦମାର ରାୟରେ ପ୍ରତ୍ୟେକଙ୍କୁ ଦୁଇ ବର୍ଷ କାରାଦଣ୍ଡରେ ସଜା ମିଳେ।

୧୯୪୨ ମସିହାରେ କବି ଅନନ୍ତଙ୍କ ପରମ ବନ୍ଧୁ ଓ ଉତ୍କଳ କମ୍ୟୁନିଷ୍ଟ ପାର୍ଟିର ପ୍ରତିଷ୍ଠାତା ସମ୍ପାଦକ ଭଗବତୀଚରଣ ପାଣିଗ୍ରାହୀଙ୍କ ଅକାଳ ସ୍ୱର୍ଗବାସ ହୁଏ। ସେ ସମ୍ପାଦନା କରୁଥିବା 'ମୁକ୍ତି ଯୁଦ୍ଧ' ତରଫରୁ ଓଡ଼ିଶା ପିପୁଲସ୍ ରିଲିଫ୍ କମିଟି ଗଠିତ ହୋଇ ଗଞ୍ଜାମ, ବାଲେଶ୍ୱର ଅଞ୍ଚଳର ଦୁର୍ଭିକ୍ଷ ମୁକାବିଲା ପାଇଁ ଭଗବତୀ ପଦକ୍ଷେପ ନେଇଥିଲେ। ଗଞ୍ଜାମ ଜିଲ୍ଲାରେ ରିଲିଫ୍ କାର୍ଯ୍ୟ କଲାବେଳେ ଖାଦ୍ୟ ପେୟର ଅନିୟମିତତା ଯୋଗୁଁ ଭଗବତୀଙ୍କୁ ଡିସେଣ୍ଟ୍ରି ଧରିଲା। କଟକକୁ ଫେରିଆସି ଅନେକ ପ୍ରକାର ଚିକିତ୍ସା ସତ୍ତ୍ୱେ ସେ ଆଖି ବୁଜିଲେ। କବି ସଚ୍ଚି ରାଉତରା' ଭଗବତୀଙ୍କ ମହାପ୍ରୟାଣରେ ଲେଖିଥିଲେ -

'ଯିବ ଯେବେ, ଯାଅ ତେବେ, ଘେନି ଯାଅ ମୋ ରକ୍ତ ପ୍ରଣାମ<br>
ଉଷାର ଭୂମିକା ଯାଅ ଦେଖି।<br>
ନୂତନ ପ୍ରଭାତ ଆସି ତବ ପାଦେ ଆଗ ଯିବ ଲେଖି / ଆପଣା ସ୍ୱାକ୍ଷର<br>
ବିଦାୟ, ବିଦାୟ ସାଥୀ ଅଗ୍ରଦୂତ ନବ ପ୍ରଭାତର।' (ହେ ବନ୍ଧୁ ବିଦାୟ)

କବି ଅନନ୍ତ ନିଜ ପ୍ରିୟ ସାଥୀ ଓ ସାରଥୀଙ୍କ ମହା ପ୍ରୟାଣରେ ମୁହ୍ୟମାନ ହୋଇ ଲେଖିଲେ-

'ଶପଥ କରୁଛୁ ସାଥୀ'! ତୁମରି ରକ୍ତେ ରଞ୍ଜିତ ଧ୍ୱଜାଟିରେ<br>
ଆନମି ନିମିଷେ। / ସମାଧି ଶଯ୍ୟାପରେ<br>
ଶପଥ କରୁଛୁ ସାଥୀ<br>
ଉଠାଇ ଉଚ୍ଚେ<br>
ଦେବୁରେ ବକ୍ଷ ପାତି<br>
ଜାଗ୍ରତ କରି ମୁକ୍ତ କରିବୁ ଧୀରେ<br>
ବିଶ୍ୱରେ ଯେତେ ଦଳିତ ମଣିଷ ଜାତି।'

ପରବର୍ତ୍ତୀ କାଳରେ ଆମୃତ୍ୟୁ କବି ଅନନ୍ତ ଏଇ ଶପଥର ରାଜମାର୍ଗରେ ଅଦମ୍ୟ ଯାତ୍ରା କରିଛନ୍ତି। ୧୯୪୫ ମସିହାରେ ଅନନ୍ତ ପଟ୍ଟନାୟକ ସଂସାର କରନ୍ତି ଲେଖିକା ଓ ସୁଗାୟିକା ନୀରଦ ପ୍ରଭାଙ୍କୁ ବିବାହ କରି। ବେଶ୍ କିଛି ଦିନ ଚଣ୍ଡୀହଟ୍ଟାରେ ଏକ ସ୍କୁଲ ପ୍ରତିଷ୍ଠା କରି ତହିଁରେ ଏ ଦମ୍ପତ୍ତି ଶିକ୍ଷକତା କରନ୍ତି। ବିଶ୍ୱଯୁଦ୍ଧ ପରେ ସ୍ୱାଧୀନତା ସଂଗ୍ରାମ ସହିତ ଶାନ୍ତି ଆନ୍ଦୋଳନ କବି ଅନନ୍ତଙ୍କ କର୍ମସୂଚୀରେ ଯୋଡ଼ି ହୋଇଯାଏ। ହିରୋସୀମା, ନାଗାସାକୀରେ ଆମେରିକାର ପରମାଣୁ ବୋମା ପକାଇବା ପରେ ବିଶ୍ୱ ମାନବ ଦେଖେ ନବ୍ୟ ସାମ୍ରାଜ୍ୟବାଦୀ ଦାନବର ରକ୍ତମୁଖ; ଦେଖେ ମାନବିକତା ଉପରେ ଶ୍ୱେତ ସନ୍ତ୍ରାସ- ଦେଖେ ଶବ ଵୃହ ଉପରେ ଅର୍ଦ୍ଧ ଦଗ୍ଧ ହଜାର ହଜାର ହିବାକୁଶୀମାନଙ୍କ ଉହଳ ବିକଳ। କବି ଅନନ୍ତ ବିଶ୍ୱ ଶାନ୍ତିର ଘରଣୀ ସାଜନ୍ତି। ସେ ଗାଆନ୍ତି -

'ଶାନ୍ତି ଭରସା ଆଶା ଶାନ୍ତି ମରମ ଭାଷା
ଶାନ୍ତି ଜୀବନ ପଥ ସାହାରେ
ଶାନ୍ତି ସରିତେ ପ୍ରୀତି ବାହାରେ ।'
(ଶାନ୍ତି ଶିଖା)

ବିଶ୍ୱର ନଭତଳେ ସୋଭିଏତ୍ ଦେଶର ଅଭ୍ୟୁଦୟ ପୁଞ୍ଜିବାଦୀ ଦୁନିଆକୁ ଶଙ୍କିତ କରି ଦେଇଥାଏ । ଶିଶୁ ସମାଜବାଦୀ ବ୍ୟବସ୍ଥାକୁ ଆଣବିକ ଅସ୍ତ୍ର ସ୍ତୁପରେ ବସି ଆମେରିକାର ନବ୍ୟ ସାମ୍ରାଜ୍ୟବାଦୀ ଜବଦ୍ କରିବାକୁ ମସୁଧା କରେ । ସେମାନଙ୍କୁ ହୁସିଆର ଶୁଣାନ୍ତି କବି:

'ଆଣବିକ ଖଡ୍ଗ ଧର କିଏ ? - ଦୂର୍ ହୁଅ
ବୈଦ୍ୟୁତିକ ବାତ୍ୟା ଆଣ କିଏ ? - ଦୂର ହୁଅ ।'
(ଆସିଚି ମୁଁ ଆସିଚି)

ଶାନ୍ତି କବିତାରେ ସାମ୍ରାଜ୍ୟବାଦୀଙ୍କ ନରମେଧ ଯଜ୍ଞକୁ ଚିହ୍ନାଇ ଦେବା ପାଇଁ କବି ଅନେକତ୍ର ସୋଚ୍ଚାର ହୋଇ ଉଠିଛନ୍ତି -

'ତୁମେ ଜାଣିଛ କି ? ତାର ଭୁରୁ ଖେଳଦୁରୁ ସରଜୁଛି କେତେ ମହାମାରୀ
ତାର ବେଉସା ବଢ଼ାଇ, ତୁମ ଘରେ ତୁମେ ମୁରୁଦାର, ସେ ଯେ ଦରବାରୀ ।'
(ଶାନ୍ତି ଶିଖା)

'ଅରତୁ ରତୁ' ସଂକଳନରେ ସେ ମଧ ଲେଖନ୍ତି -
'ବନ୍ଧୁ ଜାଡିଆ ଏ ବିଦେଶୀ ବେପାରୀ
ନିଜ ଦେଶେ ନେଇ ସୁନା ଓ ରୂପା
ପଜାଇଲେ ଆସି ବିଷ ତରବାରୀ
ଲୋଡ଼ି ଆମ ଘର ଠାଇଁରେ
ଦେଖିକି ଦେଖୁତ, ନାଇଁରେ' ?
(ଫେରିବ ନାହିଁରେ ଫେରିବ ନାହିଁ)

କବି ଅନନ୍ତ 'ଶାନ୍ତି ଶିଖା'ରେ ତୀବ୍ର ବିରୋଧ କରିଥିଲେ ସାମ୍ରାଜ୍ୟବାଦୀ ଯୁଦ୍ଧର । ସୈରାଚାରୀ ଶାସନ କବଳରୁ ବର୍ତ୍ତିବା ପାଇଁ କୌଣସି ଦେଶରେ ଜନଗଣ ମୁକ୍ତି ଯୁଦ୍ଧ ରଚନା କଲେ ତାଙ୍କ କଲମ ଏ ପ୍ରକାର ସଂଗ୍ରାମର ଜୟ ଗାନ କରିଅଛି । କବି ଶ୍ରେଣୀ ସଂଗ୍ରାମରେ ଦୃଢ଼ ପ୍ରତ୍ୟୟ ରଖିଥିଲେ ଓ ନିଜେ ଜଣେ କମ୍ୟୁନିଷ୍ଟ ବୋଲି ଗର୍ବ କରୁଥିଲେ । 'ଅରତୁ ରତୁ' କବିତାରେ କବି ଅନନ୍ତ ସମଗ୍ର ସାମ୍ୟବାଦୀ ଆନ୍ଦୋଳନକୁ ଚଳମାନ୍ ଖଡ୍ଗଟିଏ ବୋଲି କଳ୍ପନା କରିଛନ୍ତି । ତାହାରି "ଦୁଷ୍ଟ ନିବାରି ସନ୍ଥ ପାଳୁ" ଭୂମିକାକୁ ଉର୍ଦ୍ଧ୍ୱକୁ ଟୋଳି ଧରି ନିଜର ଜୀବନ ଯାତ୍ରା ପଥରେ ସେହି ଆଦର୍ଶକୁ ସେ ବରଣ କରି ନେଇଛନ୍ତି । ସେ ଲେଖନ୍ତି -

ଖଡ୍ଗଟିଏ ବୁଲେରେ ସାଥୀ ! / କେତକୀ - କିଆ ପାଖୁଡ଼ା ସେ ତ
'ଖଡ୍ଗଟିଏ ବୁଲେ। / ଗୋଟାଏ ପାଖ ତୀକ୍ଷ୍ଣ ଧାର
ସିଆର କାଟେ ମଟାଳ ବାଲି। ପାହାଡ଼ ଛାତି ପରେ।
ନିଃଶ୍ୱାସରେ ସମୀରେ ତା'ର / ଶ୍ରମର ପ୍ରୀତି ସ୍ୱରେ।
ଆଖିରୁ କେତେ ଝରାଏ ହସି ଲୁହ ଖେଳାଇ ଦିଏ /
ପ୍ରସରେ କେତେ଼ ଜୀବନ ଜ୍ୟୋତି ସୁଅ
ହସାଇ ଦିଏ ଶୂନ୍ୟ ବିଲ, ଗହମ ଧାନ ଫୁଲେ।
ଆରେକ ପାଖ ଧାରୁଆ ଧାର ହାଣେରେ ଯେତେ ଅତ୍ୟାଚାର ହାଣେ
ମନ୍ଥିତ ଯେତେ ପାରେନା ଉଠି / ତାହାରି ପାଖେ ଚଳେରେ ଛୁଟି
ଆଶାର ଭାଷା ଭରେରେ ତା'ର ପ୍ରାଣେ।'

(ଅରତ୍ରୁ ରତ୍ରୁ)

ଏ କବିଙ୍କର ବାଧା ବନ୍ଧୁର ଜୀବନକୁ ବିଶ୍ଳେଷଣ କଲେ ଆମେ ଦେଖୁ କବିଙ୍କ ଚିତ୍ତବୃତ୍ତି ପୁରିତ ସର୍ବହରାର ଅଖଣ୍ଡ ଆଶାବାଦରେ। ଦେଶର ଅନ୍ଧାରୀ ଆକାଶକୁ ଚିରି ସେ ରକ୍ତ ପ୍ରଭାତ ଫୁଟାଇବାର ଅଙ୍ଗୀକାର କରିଛନ୍ତି ଜୀବନର ପ୍ରତି ପଦକ୍ଷେପରେ। ଯେଉଁ ମଣିଷ କାଳର ଘୂର୍ଣ୍ଣନରେ ସ୍ଥିତିଶୀଳତାକୁ ଆଦରି ନେଉଛନ୍ତି, ଯେଉଁମାନେ ସ୍ଥବିରତାକୁ ବରଣ କରି ନେଇଛନ୍ତି, ତାଙ୍କରି ମନରେ ଆଶା ବିଶ୍ୱାସର ଜାଗରଣ କରି କବି ଅନନ୍ତଙ୍କ ଶିବ ଡମ୍ବରୁ ବାଜି ଉଠୁଛି -

'କାଳର ଘୂର୍ଣ୍ଣନରେ ସ୍ତବ୍ଧ ଯିଏ ଶୁଣ
ହଳୀର କର୍ଷଣରେ ମୃତ୍ତିକାର ମର୍ମରଣ, ଶୁଣ
ଚାହେଁ ମୁଁ ସକାଳ, ସେମିତି ଗୋଟିଏ ସକାଳ।
ଶ୍ରମର ବିଳାସରେ ହସିବାର ଦାୟିତ୍ୱ ନେଇ ଆସିବ ଯିଏ
ବଲ୍‌ଗା ଛାଡ଼ି ସୃଜନୀର ବାର୍ତ୍ତାରେ ବସନ୍ତର ବ୍ୟାକୁଳତା ଭଳି -
ମନସ୍କାମ କାମନାର ଓଲଟ ପଦ୍ମର ପାଖୁଡ଼ାରେ ଆସିବ ଯିଏ
ପେଚ୍‌କଷ୍‌ର୍ ଫୂର୍ତ୍ତିରେ - ଗଇଁତିର ଗୀତରେ
ଆଗ୍ନେୟ ବାସନାରେ ବିହ୍ୱଳ କରି ନୁହେଁ
ସଚେତ କରି ସତେଜ କରି ଯୁଗକୁ
ଚାହେଁ ମୁଁ ସେମିତି ଗୋଟିଏ ସକାଳ।'

(ଅରତ୍ରୁ ରତ୍ରୁ)

●

# ଗାଳ୍ପିକ ବସନ୍ତ ଶତପଥୀଙ୍କ ଗଳ୍ପ ମାନସ

ଗାଳ୍ପିକ ବସନ୍ତ କୁମାର ଶତପଥୀ ୧୯୧୩ ମସିହାରେ ମୟୂରଭଞ୍ଜ ଜିଲ୍ଲାରେ ବାଙ୍ଗିରୀପୋଷି ଥାନାର ପାନ୍ଧଡ଼ା ଗ୍ରାମରେ ଜନ୍ମଗ୍ରହଣ କରିଥିଲେ। ୧୯୧୪ ମସିହା ଫେବୃୟାରୀ ୨୦ ତାରିଖରେ ସେ ରାଉରକେଲାରେ ମୃତ୍ୟୁବରଣ କରିଥିଲେ। ମୟୂରଭଞ୍ଜର ରାଜାଙ୍କ ଠାରୁ କୃତୀଛାତ୍ର ରୂପେ ବୃତ୍ତି ପାଇ ସେ ଉଚ୍ଚଶିକ୍ଷା ସମାପ୍ତ କରିଥିଲେ। ୧୯୪୦ ମସିହାରେ ସେ ମୟୂରଭଞ୍ଜ ରାଜ୍ୟରୁ ପ୍ରକାଶ ପାଉଥିବା ସାହିତ୍ୟ ପତ୍ରିକା 'ଭଞ୍ଜ ପ୍ରଦୀପ' ଓ Mayurbhanj Chronicle'ର ସମ୍ପାଦନା କରିଥିଲେ ଓ ସେଇ ଦେଶୀୟ ରାଜ୍ୟର ପବ୍ଲିକ୍ ରିଲେସନ୍ ଅଫିସର୍ ରୂପେ କାର୍ଯ୍ୟ କରିଥିଲେ। ୧୯୪୮ ମସିହାରେ ମୟୂରଭଞ୍ଜ ରାଜ୍ୟ ଓଡ଼ିଶାରେ ମିଶ୍ରଣ ବେଳେ ସେ ରାଜଦରବାରରେ ସର୍ଦ୍ଦାର ପଟେଲଙ୍କ ସାମ୍ନାରେ ନିଜ ରାଜ୍ୟର ପକ୍ଷ ରଖି ମିଶ୍ରଣ ପ୍ରକ୍ରିୟାରେ ବିଶେଷ ଭୂମିକା ଗ୍ରହଣ କରିଥିଲେ। ୧୯୬୨ ମସିହାରେ ତାଙ୍କର ପତ୍ନୀଙ୍କର ଅକାଳ ବିୟୋଗ ହୁଏ। ୧୯୭୪ ମସିହାରେ ତାଙ୍କ କନିଷ୍ଠ ପୁତ୍ର ମୁନୁର ବିୟୋଗ ହୁଏ- ବସା ପାଖ ଗଡିଆରେ ବୁଡ଼ିଯିବା ଯୋଗୁଁ। ଏଇ ଦୁଇଟି ମୃତ୍ୟୁଲୀଳା ଅଧ୍ୟାପକ ବସନ୍ତ ଶତପଥୀଙ୍କୁ ମାନସିକ ଭାବେ ଦୋହଲାଇ ଦିଏ ଏବଂ ସେ କଥାସାହିତ୍ୟ ରଚନାରେ ବ୍ରତୀ ହୁଅନ୍ତି।

ଅନେକ ଲେଖକ, କବି, ନାଟ୍ୟକାର ଓ ଶିଳ୍ପୀଙ୍କ ଜୀବନକୁ ଅନୁଧ୍ୟାନ କରି ଆମେ ଦେଖିଛୁ ଆତ୍ମୀୟ ସ୍ୱଜନର ଅକାଳ ମୃତ୍ୟୁ ସ୍ରଷ୍ଟାକୁ ଶୋକାଚ୍ଛନ୍ନ କରାଏ ଏବଂ ଏ ଦୁଃଖଦ ଘଟଣା ଏମିତି ମାନସିକ ଚାପ ସୃଷ୍ଟି କରେ ଯେ ଲେଖକର ଲେଖନୀର ମୋଡ଼ ତାହାର ଗତିପଥ ବଦଳାଏ। ବିଶ୍ୱକବି ରବୀନ୍ଦ୍ରନାଥଙ୍କ ଲେଖନୀର ମୋଡ଼ ପରିବର୍ତ୍ତନ ହୁଏ ତାଙ୍କ ଲେଖକୀୟ ଜୀବନର ସକଳ ପ୍ରେରଣାର ଉତ୍ସ ତାଙ୍କ ଭାଉଜ କାଦମ୍ବରୀ ଦେବୀଙ୍କ ଆତ୍ମହତ୍ୟା ଘଟଣା ପରେ। ଔପନ୍ୟାସିକ ଫକୀରମୋହନଙ୍କ ଲେଖନୀର ମୋଡ଼ ପରିବର୍ତ୍ତନ ହୁଏ ତାଙ୍କ ପ୍ରାଣପ୍ରିୟା ପତ୍ନୀ କୃଷ୍ଣାକୁମାରୀଙ୍କ ଅକାଳ ମୃତ୍ୟୁରେ। ସେହିପରି ଅନୁବାଦକ ବସନ୍ତ ଶତପଥୀ, ନାଟ୍ୟକାର ବସନ୍ତ ଶତପଥୀ ସଫଳ କଥାକାର ପାଲଟନ୍ତି ତାଙ୍କ ଏଇ ଦୁଇଜଣ ପ୍ରାଣାଧିକ ପ୍ରିୟ ଆତ୍ମୀୟ ସ୍ୱଜନର ଅକାଳ ନିଧନ ଯୋଗୁ। ବସନ୍ତ ବାବୁ ତାଙ୍କ ଗଳ୍ପ 'କାଣିଚିଆଁ'ରେ ଯେଉଁ ଶ୍ଳୋକର ଆବୃତ୍ତି କରିଥିଲେ ସେତେବେଳେ ମୃତ୍ୟୁକୁ ପାଖରୁ ଦେଖି କାୟୋମନ ଆତ୍ମାରେ ଚହଲି ଯିବାର ଅବକାଶ ତାଙ୍କ ଜୀବନରେ ଆସିନଥିଲା। କିନ୍ତୁ 'ଓଇ ଛେଲେଟା' ଗଳ୍ପରେ ଶ୍ରୀମତୀ ସରକାରଙ୍କ ପ୍ରୟାତ ପୁତ୍ର ନନୀ ଗୋପାଲ ଓ ଲେଖକଙ୍କର ବୁଡ଼ି ମରିଥିବା ପୁତ୍ର 'ମୁନୁ' ଏକାକାର ହୋଇ ଯାଇଛନ୍ତି- ଗୋଟିଏ ସତ୍ତାରେ ରୂପାନ୍ତରିତ ହୋଇଛନ୍ତି। ବ୍ୟକ୍ତିଗତ ବେଦନାକୁ କିପରି ସାର୍ବଜନୀନ ବେଦନାବୋଧରେ ପରିଣତ

କରିବାକୁ ହୁଏ ଗଳ୍ପରେ ସେ କଳାକୌଶଳ ଗାଳ୍ପିକ ଦେଖାଇଛନ୍ତି। ଗଳ୍ପଟିରେ ଅଛି ଭରପୁର ନଷ୍ଟାଲଜିଆ, ଅଛି ଗଭୀର ମର୍ମଦାହ ଓ ଅଛି ସାର୍ବଜନୀନ ଦୁଃଖ - ଯେଉଁ ପ୍ରକାର ଦୁଃଖରେ ବିଗଳିତ ହୋଇ ନିର୍ଜନ ମାଳ ଅଞ୍ଚଳରେ ଏଇ କୃଷିକ୍ଷେତ୍ରରେ ଏକାକିନୀ ଏକ ଯୁବତୀ ବା ସଲିଟାରୀ ରିପର୍ ଗାଉଥିଲା ଶୋକ ସଙ୍ଗୀତଟିଏ।

ଗାଳ୍ପିକ ତାଙ୍କ ପ୍ରିୟପୁତ୍ର ମୁନୁର ବିୟୋଗରେ Saddest thought କୁ ନିଜ କଥା ସାହିତ୍ୟରେ ପ୍ରସଙ୍ଗକ୍ରମେ ଉପସ୍ଥାପନ କରିଛନ୍ତି ବିଭିନ୍ନ ରଙ୍ଗରେ ଓ ବିଭିନ୍ନ ପ୍ରସଙ୍ଗରେ। 'ଓଇ ଛେଲେଟା'ରେ ଯାହା ଅକୁହା ରହିଯାଇଛି, ସେଇ ମର୍ମବେଦନା କୁହାଯାଇଛି ଅତି ସବ୍‌ଜେକ୍‌ଟିଭ୍ ମାର୍ଗରେ 'ଏକ ଲାଲ ସ୍ମୃତି: କାଠଚମ୍ପାର' ଗଳ୍ପରେ। ଏ ଗଳ୍ପରେ ମୁନୁର ବ୍ୟବହୃତ ଟେନିସ୍‌ବଲ୍, ଚୁଇଙ୍ଗମ୍ ଖୋଳ, ଟିଫିନ୍ ବକ୍ସ, ଚକ୍‌ଖଡ଼ି ଏବଂ ତା' ହାତରେ ରୋପିତ କାଠଚମ୍ପା ଗଛ ସବୁ କିଛି ଅବଲୀଳାକ୍ରମେ ଆସିଯାଇଛି। ଗାଳ୍ପିକଙ୍କ ବାକ୍‌ଚତୁରୀ ଓ ଭାବାବେଗପୂର୍ଣ୍ଣ ବର୍ଣ୍ଣନା ଏ ଗଳ୍ପର ଶୋକୋଚ୍ଛ୍ୱାସକୁ ଦ୍ୱିଗୁଣିତ କରି ଦେଇଛି ଓ ସାର୍ବଜନୀନ ଶୋକ ଆଡ଼କୁ ଏହାକୁ ଟାଣି ନେଇଛି।

'ଚାଉଳ' ଗଳ୍ପରେ ଆମେ ପୁଣି ମୁନୁର ଉପସ୍ଥିତି ଦେଖୁଁ। ସେଠି ମୁନୁ ଆସିଛି ଓଡ଼ିଶାରୁ ଚାଉଳ ଚୋରାରେ ଚଲାଣକାରିଣୀ ବଙ୍ଗାଳୁଣୀ ଲକ୍ଷ୍ମୀପ୍ରିୟାର କୁନି ସନ୍ତାନ ବେଶରେ। 'ଚାଉଳ' ଗଳ୍ପରେ ସେ ଆଉ ଗୋଟିଏ ଚିରନ୍ତନ ସତ୍ୟର ଜୟ ଜୟକାର କରିଛନ୍ତି। ସିଏ ହେଲା ମଣିଷ ଓ ମଣିଷପଣିଆ। ଜାତୀୟ, ଆନ୍ତର୍ଜାତିକ - ଏପରିକି ଆଞ୍ଚଳିକ ଭେଦଭାବ ସୃଷ୍ଟିକାରୀ ସମସ୍ତ ରାଜନୈତିକ ଓ ଆଦର୍ଶଗତ ସୀମାରେଖାକୁ ସେ ଏ ଗଳ୍ପରେ ଅସ୍ୱୀକାର କରିଛନ୍ତି। ମଣିଷକୁ ସେ ଏ ଗଳ୍ପରେ ଘୋଷଣା କରିଛନ୍ତି ଜଗତର ପରମ ସତ୍ୟ ଓ ସାର୍ବଭୌମ ବୋଲି। 'ପିମ୍ପୁଡ଼ି' ଗଳ୍ପରେ ଏହିପରି ଗାଳ୍ପିକ ଗୋପୀନାଥ ମହାନ୍ତି ବୁଭୁକ୍ଷିତ ମଣିଷକୁ ପିମ୍ପୁଡ଼ି ବୋଲି କହିଲେ ଏବଂ ଶତ ବଢ଼ି - ମରୁଡ଼ି - ଭୂକମ୍ପ, ଅଭାବ, ଦୁର୍ଭିକ୍ଷ ଅନଟନ ଭିତରେ ବି ଏଇ ପିମ୍ପୁଡ଼ି ବଂଶ ଅବିନାଶୀ ବୋଲି କହିଲେ। ଓଡ଼ିଶାର ଏକ ହାଟରୁ ଅଦୂର ସୀମା ଆରପାରି ଆନ୍ଧ୍ରର ଗାଁଗଣ୍ଡାକୁ ଚାଉଳ ନେଇଗଲା ବେଳେ ଏ ପିମ୍ପୁଡ଼ି ପଲ ସମସ୍ତଙ୍କ ଅଲକ୍ଷ୍ୟରେ ମାତିଥା'ନ୍ତି ଜୀବନ ସଂଗ୍ରାମରେ। ତାଙ୍କୁ ଦେଖି ତାଙ୍କୁ ଧରିବାକୁ ଛକିଥିବା ସପ୍ଲାୟ ଅଫିସରଙ୍କର ଦୟାଭାବ ଜାତ ହୁଏ। ସେମାନଙ୍କୁ ଚାଉଳ ଚାଲାଣ ଅପରାଧରେ ଧରିବା ପରିବର୍ତ୍ତେ ଅଫିସର ସେମାନଙ୍କୁ ଛାଡ଼ିଦେଲେ। 'ଚାଉଳ' ଗଳ୍ପରେ ଗାଳ୍ପିକ ବସନ୍ତ ଶତପଥୀ ସେହିପରି ବାଲେଶ୍ୱରରୁ ବଙ୍ଗଳାକୁ ଚାଉଳ ଚୋରା ଚଲାଣକୁ ମାନବୀୟ ଗୁଣରେ କ୍ଷମା କରାଯାଇପାରେ ବୋଲି କହିଛନ୍ତି। ଓଡ଼ିଶାର ଚାଉଳ ଅନ୍ୟ ରାଜ୍ୟକୁ ଯାଇ ପାରିବ ନାହିଁ ବୋଲି ଯେଉଁମାନେ ଅଫିସିଆଲ ଅର୍ଡ଼ର କରିଛନ୍ତି ଓ ସୀମାନ୍ତବର୍ତ୍ତୀ ରେଳଷ୍ଟେସନ୍ ଗୁଡ଼ିକରେ ଧରପଗଡ଼ କରୁଛନ୍ତି, ସେମାନଙ୍କ ଅମାନୁଷିକ କର୍ମ ଦେଖି ଗାଳ୍ପିକ ଏ ଗଳ୍ପରେ ବ୍ୟଙ୍ଗାତ୍ମକ ଭାବେ କହିଛନ୍ତି - "ଜାତି ଓ ଜାତୀୟତା ଆଜି ଜାଗ୍ରତ ଅଭାବନୀୟ ଉଗ୍ରତାରେ।" ଗୋପୀନାଥ ମହାନ୍ତିଙ୍କ ସପ୍ଲାଇ ଇନିସ୍‌ପେକ୍ଟର ନିଜର ଭାବନା ରାଜ୍ୟରେ ହଜିଯିବା ବେଳେ 'ଚାଉଳ' ଗଳ୍ପ ଶେଷ ହୋଇଛି ବଙ୍ଗାଳୀ ବଧୂ ଗରିବ ଲକ୍ଷ୍ମୀପ୍ରୀୟା ତାହାର ନିଜ ମୃତ ଶିଶୁ ସନ୍ତାନକୁ ଓଡ଼ିଶା ଓ ବଙ୍ଗଳା ସୀମାନ୍ତର

ମାଟି ଖୋଳି ପୋତିବାରେ। ପ୍ରକାଶ ଥାଉକି, ଜଳେଶ୍ୱର ରେଳଷ୍ଟେସନରେ ପିଲାଟି ପାଖରୁ ଚଉଳ ଖାନ୍‌ତଲାସି କଲାବେଳେ ବ୍ୟାଟନରେ ତାକୁ ଖୁବ୍ ଜୋର୍‌ରେ ଭୁଷି ଦେଇଥିଲା କନେଷ୍ଟବଳଟିଏ ଏବଂ ପିଲାଟିର ସେଇ ଆଘାତରେ ମୃତ୍ୟୁ ହୋଇଥିଲା। ଏକ ଶୋକାବହ ପରିବେଶରେ 'ଚଉଳ' ଗପଟି ଶେଷ ହୋଇଛି ଏହିପରି- "ମାଛି ଅନ୍ଧାରରେ ଲକ୍ଷ୍ମୀ ଚାଲିଲା ସେ ସୀମାଳି ପଥର ଗୋଟାକ ପାଖକୁ। ଅଗଭୀର ଗାତଟିଏ ଖୋଳି ଲମ୍ୱେଲମ୍ୱ ଉତ୍ତରକୁ ମୁଣ୍ଡ କରି ଏମିତି ଶୁଆଇ ଦେଲା ଯେମିତି ଦିହର ଅଧେ ଏ ରାଜ୍ୟରେ ଆଉ ଅଧକ ଅନ୍ୟ ରାଜ୍ୟରେ ରହିବ। ରୋହିତର ସତ୍କାର କରିବାକୁ ଶୈବ୍ୟା ସହିତ ହରିଶ୍ଚନ୍ଦ୍ର ଶ୍ମଶାନରେ ଥିଲେ। ଏଠି ଲକ୍ଷ୍ମୀପ୍ରିୟା ଏକାକିନୀ। ମାଟି ଘୋଡ଼ାଇବା ଆଗରୁ ଲକ୍ଷ୍ମୀପ୍ରିୟା ଛୋଟ ସିଲଟ୍‌ଟିକୁ, ଛିଣ୍ଡା ଜାମାପଟାକୁ ଏକାଠି କରି ଗୋଟାଏ ରକମ୍ ତକିଆ କରି ମୁଣ୍ଡ ତଳେ ରଖିଲା। ଯେଉଁ ଛୋଟ ରବର ବଲ୍‌ଟିରେ ସେ ଖେଳୁଥିଲା ତାକୁ ହାତ ପାଖରେ ଥୋଇ ଦେଲା। ତାଳରୁ ତଳିପା ଯାଏ ଥରେ ଆଉଁସି ଦେଲାବେଳେ ଦେଖିଲା, ପେଟରେ ବେଟନ୍ ବାଜିଥିବା ଜାଗାଟି ଫୁଲି ରହିଛି। ଗୋଟାଏ ଆଖି ସାମାନ୍ୟ ଫିଟାଇ ଦେ଼ଖି ଦେଇ ଭୋ' କରି କାନ୍ଦି ଉଠିଲା ଏବଂ ବାଷ୍ପଭରା କଣ୍ଠରେ କହିଲା, "କିରେ ବାପା ! ଚାଲିଗଲୁ" ଏ ହେଉଛି ଗାନ୍ଧିକ ନିଜ ମୃତପୁତ୍ର ମୁନୁର ଶବକୁ ମାଟିରେ ପୋତିବାର ଦୃଶ୍ୟ ଏବଂ ଶୋକୋଚ୍ଛ୍ୱାସ ହେଉଛି ଜଣେ ବିଦଗ୍ଧ ପିତାର।

ଗାନ୍ଧିକ ବସନ୍ତ ଶତପଥୀ ନିଜ କଥୋପକଥନ ବେଳେ ନିଜ ସମୟର ମୟୂରଭଞ୍ଜ ରାଜ୍ୟର ରାଜାଙ୍କର ପ୍ରଜାନୁରଞ୍ଜନ ଗୁଣ ଓ ଉଦାରଚେତା ସ୍ୱଭାବକୁ ପ୍ରଶଂସା କରୁଥିଲେ। ଉତ୍କଳୀୟ ଜାତୀୟ ନବଜାଗରଣ ପର୍ବରେ ସେଇ ରାଜବଂଶର ଅବଦାନକୁ ମଧ ସେ ସ୍ୱୀକାର କରୁଥିଲେ। ମାତ୍ର ମଣିଷ ହିସାବରେ ଏ ଗାନ୍ଧିକ ଥିଲେ ଉଦାର ମାନବବାଦୀ, ଜାତୀୟବାଦୀ ତଥା ଗାନ୍ଧିବାଦୀ। ମହାମତି ମାର୍କସ୍ ମଣିଷର ସଂଶୋଧନ ସମାଜବାଦୀ ଶାସନ ପର୍ବରେ ଷ୍ଟେଟ୍ ବା ରାଷ୍ଟ୍ର ମାଧମରେ ହେବ ବୋଲି କହିଥିଲେ। ସମାଜବାଦୀ ସୋପାନ ଅତିକ୍ରମ କରି କମ୍ୟୁନିଜିମ୍ ଆଗମନ କାଳରେ ମଣିଷକୁ ସଂଶୋଧନ ବା ସୁସଂସ୍କୃତି ସମ୍ପନ୍ନ କରିବାରେ ସମାଜ ବା ଷ୍ଟେଟ୍ ମୁଖ୍ୟ ଭୂମିକା ଗ୍ରହଣ କରିବ ବୋଲି ସେ ମତ ଦେଇଥିଲେ। ମଣିଷକୁ ତାହାର ଅନ୍ତଃକରଣର ସଂଶୋଧିତ ହେବାକୁ ବା ତାହାର ନୈତିକତା ବିକାଶ ପାଇଁ ମାର୍କସ୍ ବିଶେଷ ଗୁରୁତ୍ୱ ଦେଇନଥିଲେ। ଲେନିନ୍ କିନ୍ତୁ ସମାଜବାଦୀ ଅର୍ଥନୀତିକ ପଟ୍ଟଭୂମି (Socialistic economic structure) ଗଠନ ବେଳେ କେତେକ ସମାଜବାଦୀ ନୈତିକତାର କର୍ଷଣ ହେଉ ବୋଲି ଚାହିଁଥିଲେ। ତେଣୁ ସୋଭିଏତ୍ ୟୁନିୟନ୍‌ରେ କ୍ଷମତାସୀନ ହେବା ପରେ ସେ ସମାଜବାଦୀ ସମାଜରେ ନୈତିକତାର ସଂଗଠନା କରିବା ନିମନ୍ତେ ଆରମ୍ଭ କରିଥିଲେ ସାଂସ୍କୃତିକ ବିପ୍ଳବ।

ଗାନ୍ଧି କିନ୍ତୁ ବ୍ୟକ୍ତି ମୌଳିକ ଭାବେ ନିଜ ମଧରୁ ନିଜେ ସଂଶୋଧିତ ବା ଶୋଧିତ ହେଉ ବୋଲି ମତ ଦେଲେ। ବ୍ୟକ୍ତି ଯଦି ନିଜସ୍ୱ ଚେଷ୍ଟାରେ ନିଜ ମଧରୁ ନିଜେ ଶୃଙ୍ଖଳିତ, ସୁବ୍ୟବସ୍ଥିତ, ସଂସ୍କୃତିସମ୍ପନ୍ନ ନହୁଏ, ତେବେ ଏକ ଗଣତାନ୍ତ୍ରିକ ରାଷ୍ଟ୍ର ଗଠିତ ହୋଇ ପାରିବ ନାହିଁ। ଗାନ୍ଧି

ନୈତିକତା ଉପରେ ତେଣୁ ବିଶେଷ ଗୁରୁତ୍ୱ ଆରୋପ କରୁଥିଲେ। ରାଷ୍ଟ୍ର ବ୍ୟକ୍ତିକୁ ଯେତେ ପ୍ରକାର ଆର୍ଥନୀତିକ ସୁବିଧା ଦେଉ ବା ଯେତେ ପ୍ରଜାମଙ୍ଗଳକାରୀ ଯୋଜନା ଚାଲୁ କରୁ ସେଇ ରାଷ୍ଟ୍ରରେ ବସବାସ କରୁଥିବା ବ୍ୟକ୍ତି ଚରିତ୍ର ଯଦି କଳୁଷିତ ହୁଏ, ତେବେ ଯଥାର୍ଥ ବିକାଶ କ୍ଷେତ୍ରରେ କିଛି ସଫଳ ମିଳିବ ନାହିଁ। ଗାଳ୍ପିକ ବସନ୍ତ ଶତପଥୀ ଗାନ୍ଧୀ ଓ ନେହେରୁଙ୍କ ଭକ୍ତ ଥିଲେ। ସେ ଦୁହିଁଙ୍କ ଜୀବନ ଦର୍ଶନରେ ପ୍ରଭାବିତ ମଧ୍ୟ ହୋଇଥିଲେ। ୧୯୩୪ ମସିହାରେ ରେଭେନ୍‌ସା କଲେଜରେ ଛାତ୍ର ଥିବାବେଳେ ସେ ଗାନ୍ଧିଙ୍କୁ କଟକ ରେଳଷ୍ଟେସନର ପ୍ଲାଟଫର୍ମରେ ଦର୍ଶନ କରିବାର ସୁଯୋଗ ପାଇଥିଲେ। ଗାନ୍ଧିଙ୍କୁ ସେ ସରାଜ ପାଣ୍ଠି ପାଇଁ କିଛି ପଇସା ମଧ୍ୟ ଦାନ କରିଥିଲେ। ଗାନ୍ଧିଙ୍କ ଦର୍ଶନର ଅନୁଭୂତିକୁ କଥାମୟ କରି ଗାଳ୍ପିକ ଲେଖନ୍ତି - "ପ୍ଲାର୍ଟଫର୍ମ ଭିତରକୁ ପଶି ଦେଖିଲି ଭିଡ଼ ଆଉ ନାହିଁ। ତେଣେ ସବୁଜ ଆଲୁଅ ଦିଶିଲାଣି। ଗାଡ଼ି ଛାଡ଼ିବାକୁ ଅପେକ୍ଷା। ଗାନ୍ଧି କିନ୍ତୁ ସେମିତି ହାତ ପାତି ଛିଡ଼ା ରହିଛନ୍ତି। ଦଉଡ଼ି ଯାଇ ଯାହା ନେଇଥିଲି (ତିନୋଟି ବା ଚାରୋଟି ତମ୍ବା ପଇସା) ହାତରେ ଥୋଇ ଦେଲି। ତାପରେ ସାହସ ବାନ୍ଧି ପାପୁଲିରୁ ବାହୁ ପର୍ଯ୍ୟନ୍ତ ଲମ୍ବା ହାତଟାକୁ ଆଉଁସି ନେଇଗଲି। ବିରକ୍ତି, ଆପତ୍ତି, ଅଭିଯୋଗ ଲେଶମାତ୍ର ନାହିଁ। ପୁଣ୍ୟାତ୍ମାଙ୍କ ଆଖି ମୁହଁରେ ଯେବେ ହାତ ଛୁଇଁ ବା ଆଉଁସି ଲୋକେ ଆନନ୍ଦ ପାଉଛନ୍ତି ତେବେ ବର୍ଷବର୍ଷ ଧରି ତାହା ଲମ୍ବାଇ ରଖିବାର ଯେମିତି ତାଙ୍କ କ୍ଲାନ୍ତି ନାହିଁ। କେତେ ମାସ ପୂର୍ବେ ପ୍ରଥମ କରି ଜଗନ୍ନାଥଙ୍କୁ ଦର୍ଶନ ଓ ସ୍ପର୍ଶ କଲାବେଳେ ମନରେ ଯେଉଁ ଆଲୌକିକ ଆନନ୍ଦ ଓ ପୁଲକ ପାଇଥିଲି ସେ ମୁହୂର୍ତ୍ତରେ ଅବିକଳ ମୋର ସେହି ଅନୁଭୂତି ହେଲା। ରୋମାଞ୍ଚକର ଯାଦୁକାରୀ ସେ ସ୍ପର୍ଶ। ସେହି ସ୍ପର୍ଶ ରୋଗୀକୁ ରୋଗମୁକ୍ତ କରେ, ପଥରକୁ ରୋଟି କରେ।" **(ମାଂସାଶୀମାନଙ୍କ ଉଦ୍ଦେଶ୍ୟରେ - ସାକ୍ଷାତକାର ପୃ.୧୨୪)**
ସେହିପରି ଗାଳ୍ପିକ ନାରୁ ମହାନ୍ତିଙ୍କୁ ଏକ ସାକ୍ଷାତକାର ପ୍ରଦାନ ବେଳେ ଜୀବନର ସ୍ମରଣୀୟ ଘଟଣା ରୂପେ ସେ ନେହେରୁଙ୍କୁ ଦର୍ଶନ କରିବା କଥା ଉଲ୍ଲେଖ କରି କହିଥିଲେ - "କଟକ ମ୍ୟୁନ୍‌ସିପାଲଟି ଟାଉନ ହଲ ସାମ୍ନାରେ ଜବାହରଲାଲ 'ସ୍ପେନୀୟ ଯୁଦ୍ଧ' ବିଷୟରେ ପାଞ୍ଚମିନିଟିଆ ବକ୍ତୃତାଟିଏ ଦେଇଥିଲେ। ତାହା ମୁଁ ମୁଗ୍ଧ ଚିତ୍ତରେ ଶୁଣିଥିଲି।" ଗାନ୍ଧୀଙ୍କ ଦର୍ଶନ ଥିଲା ନୈତିକତାର ଦର୍ଶନ, ବ୍ୟକ୍ତି ଚରିତ୍ରକୁ ପରିବର୍ତ୍ତନ କରି ରାମରାଜ୍ୟ ଗଠନର ଜୀବନଦର୍ଶନ, 'ମୋ ଜୀବନ ପଛେ ନର୍କେ ପଡ଼ିଥାଉ ଜଗତ ଉଦ୍ଧାର ହେଉ'ର ଶାଶ୍ୱତ ଦର୍ଶନ। ନେହେରୁଙ୍କ ଫିଲୋସଫି ଥିଲା ରାଷ୍ଟ୍ର ଶାସନ କ୍ଷେତ୍ରରେ ଗାନ୍ଧିବାଦୀ ଦର୍ଶନର କାର୍ଯ୍ୟକାରୀ କରିବାକୁ ଯତ୍‌ପରୋନାସ୍ତି ପ୍ରୟାସ - ସମାଜବାଦୀ ଆର୍ଥନୀତିକ ପ୍ରକଳ୍ପ ସହିତ ପୁଞ୍ଜିବାଦୀ ଘରୋଇ ପ୍ରକଳ୍ପର ସହାବସ୍ଥାନ ବା ମିଶ୍ର ଅର୍ଥନୀତିର ପ୍ରଚଳନ। ବ୍ୟକ୍ତିର ଚାରିତ୍ରିକ ବିକାଶ କ୍ଷେତ୍ରରେ ଉଭୟ ବ୍ୟକ୍ତି ନିଜର ତଥା ରାଷ୍ଟ୍ରର ଭୂମିକା ଅଛି ବୋଲି ନେହେରୁ କହୁଥିଲେ। ଗାଳ୍ପିକ ବସନ୍ତ ଶତପଥୀ କିନ୍ତୁ ଏ ପ୍ରସଙ୍ଗରେ ବ୍ୟକ୍ତିର ବିକାଶ ନିମନ୍ତେ ସର୍ବାଗ୍ରେ ବ୍ୟକ୍ତିର ନିଜସ୍ୱ ପ୍ରଚେଷ୍ଟାକୁ ଗୁରୁତ୍ୱପୂର୍ଣ୍ଣ ବିଷୟ ବୋଲି ଭାବୁଥିଲେ। 'ଗରିବୀ ହଟାଓ' ଗଳ୍ପରେ ସେ ଏ ପ୍ରସଙ୍ଗକୁ ମୁଖ୍ୟ ବିଷୟ ରୂପେ ଉପସ୍ଥାପନ କରିଅଛନ୍ତି। ଗରିବ ଭଙ୍ଗାକାଚ ସାଉଁଟାଳିଟି କିଛି ଅଧିକା କାଚ ବୋତଲ ଲେଖକଙ୍କ ଠାରୁ ସଂଗ୍ରହ କରିଛି। ତା'ର ବିକ୍ରୟ ଉପଲବ୍ଧ ପଇସାକୁ ସେ ଅନ୍ୟ କେଉଁ ବାଟରେ ବ୍ୟୟ କରିବା ପରିବର୍ତ୍ତେ ମଦ୍ୟପାନରେ

ଖର୍ଚ୍ଚ କରିଛି ଓ ତା'ର ପତ୍ନୀକୁ ମଦନିଶାରେ ରାତିରେ ପିଟିଛି। ଭଙ୍ଗାକାଚ ସାଉଁଟାଳିର ସ୍ତ୍ରୀ ଲେଖକଙ୍କୁ ଆଉ ଅଧିକ କାଚ ବୋତଲ ମାଗଣାରେ ଦେବାକୁ ବାରଣ କରି କହୁଚି- "ଏ ବାବୁ! ତୋତେ ଜୁହାର ହେଉଚି, ଆଉ ତାକୁ ଶିଶି ବୋତଲ ଦବୁ ନାହିଁ। ଫେର୍ ପିଇବ, ମୋତେ ମାରିବ, ମୁଁ ମରିଯିବି।" (ଗଙ୍ଗା ଓ ଗାଙ୍ଗୀ, ପୃ. ୧୮) ଅନ୍ୟ ପକ୍ଷରେ ଲେଖକଙ୍କ ମୂର୍ଖ ଚାକର ସେଇ କାଚ ବିକ୍ରି ପଇସାରୁ ଯାହାକିଛି ଭାଗ ପାଇଥିଲା, ସେ ଅର୍ଥକୁ ସିନେମା ଦେଖି ଓ ବାଦାମ୍ ଖାଇ ଉଡ଼ାଇ ଦେଇଛି। ଅତି ଦାରିଦ୍ର୍ୟ ଓ ଅଶିକ୍ଷାରେ ସଢୁଥିବା ଲୋକଙ୍କୁ ରାଷ୍ଟ୍ର ବିଭିନ୍ନ ଯୋଜନା ସୂତ୍ରରେ ଅତ୍ୟଧିକ ଅର୍ଥ ଦେଲେ ତାହା ଅପବ୍ୟୟରେ ଯାଏ- କାରଣ ଗ୍ରହୀତା ସେ ଅର୍ଥକୁ ନିଜର ବିକାଶ ନିମନ୍ତେ ବ୍ୟୟ କରିବାର ମାନସିକତାରେ ନଥାଏ, ବ୍ୟକ୍ତି ଚରିତ୍ର ଠିକ୍ ହୋଇ ରହିଥିଲେ ରାଷ୍ଟ୍ରର ଆର୍ଥିକ ସହାୟତା ଠିକଣା ବାଟରେ ଯାଇଥାନ୍ତା। ତେଣୁ ରାଷ୍ଟ୍ର ଗରିବୀ ହଟାଇବା ନିମନ୍ତେ ଯେତେ ଯୋଜନା ଓ ଖର୍ଚ୍ଚ ବରାଦ କଲେ ବି ବ୍ୟକ୍ତି ଚରିତ୍ର ଶୋଧିତ ନହେଲେ ତାହା କେବଳ ଦରିଆରେ ଶଙ୍ଖେ ପାଣି ପରି ଢଳା ହେବାରେ ଯିବ।

ଗାଳ୍ପିକ ବସନ୍ତ ଶତପଥୀ ଏହିପରି ଆତ୍ମ ପରିବର୍ତ୍ତନର ପ୍ରସଙ୍ଗ ଅନେକ ଗଳ୍ପରେ ଉଠାଇଛନ୍ତି। 'ଶାନ୍ତି ପୁରସ୍କାର' ତା' ମଧ୍ୟରୁ ଏକ ଉଲ୍ଲେଖନୀୟ ଗଳ୍ପ। ଏ ଗଳ୍ପରେ ସେ ମଦର୍ ଟେରେସାଙ୍କ ଉକ୍ତିର ସାହାଯ୍ୟ ନେଇଛନ୍ତି ଗାନ୍ଧିଙ୍କ ସେବା, ନୈତିକତା ଓ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ମାର୍ଗକୁ ସୁପ୍ରଶସ୍ତ ଓ ସୁଦୃଢ଼ ଭାବେ ବ୍ୟାଖ୍ୟା କରିବା ପାଇଁ। ଗାଳ୍ପିକଙ୍କ ବସାଘର ତଳେ ଥିବା ଗ୍ୟାରେଜ୍‌ରେ ସରସ୍ୱତୀ ମୂର୍ତ୍ତି ତିଆରି କରି ମୃତ ଶିଳ୍ପ ବ୍ୟବସାୟ କରିବାକୁ ନିରଞ୍ଜନ ନାମକ ଏକ ବଙ୍ଗାଳୀ ଯୁବକ ଶିଳ୍ପୀ ମାନଙ୍କୁ ଧରି ଭଡ଼ାରେ ରହେ। ଷ୍ଟେରିଓ ବଜାଇ ସେ ଲେଖକଙ୍କର ମାନସିକ ଶାନ୍ତି ଭଙ୍ଗ କରେ ଦିବାରାତ୍ର। ଲେଖକ ତାକୁ ଗାଳି ଦିଅନ୍ତି ଓ ଏ ନେଇ ଉଭୟ ପକ୍ଷ ମଧ୍ୟରେ ବଚସା ହୁଏ। ଅଶାନ୍ତି ଓ ପ୍ରତିଯୋଗିତା ମୂଳକ ଆଚରଣ ଦିନୁଦିନ ବଢ଼ିଚାଲେ। ସେଇ ଅଶାନ୍ତ ଦିନ ମାନଙ୍କରେ ମଦର ଟେରେସା ଶାନ୍ତି ପାଇଁ ନୋବେଲ ପୁରସ୍କାର ପାଇଥିବାର ଖବର ପ୍ରଚାରିତ ହୁଏ। ଲେଖକଙ୍କୁ ଟେରେସାଙ୍କ ବାର୍ତ୍ତା ଭାରି ଭଲ ଲାଗେ। ଯଥା : 'ଲଭ୍ ଏଣ୍ଡ ବି ଲଭଡ୍।' ଅର୍ଥାତ୍ ପ୍ରେମ କର, ପ୍ରେମିକ ହୁଅ, ପ୍ରେମ ଦିଅ ଓ ପ୍ରେମ ନିଅ। ମଦରଙ୍କର ଏହି ବାକ୍ୟକୁ କାର୍ଯ୍ୟକାରୀ କରିବାକୁ ଯାଇ ଲେଖକ ନିରଞ୍ଜନ ଓ ତା'ର ସାଥୀମାନଙ୍କୁ ଚା' ଯାଚନ୍ତି ଓ ସେମାନଙ୍କ ଶିଳ୍ପକଳାର ତାରିଫ କରନ୍ତି। ହଠାତ୍ ସେଇ ଅଶାନ୍ତ ବାତାବରଣ ଦୂରୀଭୂତ ହୁଏ ଏବଂ ଫେରିଆସେ ଶାନ୍ତି ଓ ସଂପ୍ରୀତି।

ଗାଳ୍ପିକ ବସନ୍ତ ଶତପଥୀ ସତସତିକା ସାମାଜିକ ନ୍ୟାୟ ପ୍ରତିଷ୍ଠା ଦେଖିବାକୁ ବ୍ୟଗ୍ର ଥିଲେ। ଆଜିର ତଥାକଥିତ ସ୍ୱାଧୀନ ସମାଜରେ ସାମ୍ପ୍ରତିକତାବାଦ, ଜାତିଆଣବାଦ, ବା ଗୋଷ୍ଠୀକନ୍ଦଳ କିପରି ଭୋଟ ରାଜନୀତିର ଲାଞ୍ଜ ଧରି କ୍ୟାନସର୍ ବ୍ୟାଧି ପରି ଭାରତର ମୂଳ ସମାଜକୁ ଖାଇ ଗଲାଣି, ବସନ୍ତ ଶତପଥୀ ତାହା ଚିତ୍ରଣ କରିଛନ୍ତି 'ଉନ୍ନୟନ' ଶୀର୍ଷକ ଗଳ୍ପରେ। ରାଜତନ୍ତ୍ର ଅମଳରେ

ଗୋଟିଏ ଗାଁରେ ଡୋମ ଓ ବ୍ରାହ୍ମଣମାନେ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ରୀତିରେ ବେଶ୍ ସୁଖଶାନ୍ତିରେ ଥିଲେ। ଡୋମମାନଙ୍କ ମୁଖିଆ ଥିଲା ବୃଦ୍ଧ ଲାଲମୋହନ। ବ୍ରାହ୍ମଣ ସାଇର କୂଅରୁ ପାଣି ଆଣିବାର ଅଧିକାର ଦେବା ନାମରେ ରାଜନୀତି କରୁଥିବା ଜଣେ ପୁରୁଖା ବ୍ରାହ୍ମଣ ଲୋକ ଲାଲମୋହନ ଓ ତା'ର ଜାତି ଭାଇକୁ ପ୍ରଲୁବ୍ଧ କରେ ଓ ପାଣି କାଢ଼ିବା ବେଳେ ଡୋମମାନଙ୍କ ଉପରେ ବ୍ରାହ୍ମଣ ସାହିର ଯୁବକଙ୍କୁ ଲଗାଇ ନୃଶଂସ ଆକ୍ରମଣ କରାଏ। ଶେଷରେ ଡୋମ ସାହିକୁ ବ୍ରାହ୍ମଣମାନେ ପୋଡ଼ି ଛାରଖାର କରିଦିଅନ୍ତି। ଏହିପରି ଗାଁରେ ଦଳିତ ଡୋମମାନଙ୍କର ସର୍ବାଙ୍ଗୀନ ଉନ୍ନୟନ ସାଧିତ ହୁଏ। ଲାଲମୋହନ ଏ ନୂଆ ନୀତିର ନୀରବ ପ୍ରତିବାଦ ସ୍ୱରୂପ ସେ ଗାଁ ତଥା ନିଜ ସାତ ପୁରୁଷର ଭିଟାମାଟି ଛାଡ଼ି ଅନ୍ୟତ୍ର ପ୍ରସ୍ଥାନ କରେ।

ଗାଳ୍ପିକ ବସନ୍ତ ଶତପଥୀ ଏକ ପୁଞ୍ଜିବାଦୀ ସମାଜରେ ଲୁଚି ରହିଥିବା ବିଭିନ୍ନ ପ୍ରକାର ପାତର ଅନ୍ତର ନୀତିକୁ ତାଙ୍କର ଅନେକ ଗଳ୍ପରେ ହାସ୍ୟମୟ ଭାଷାରେ ଉଦ୍‌ଘାଟିତ କରିଛନ୍ତି। ହାସ୍ୟରସର ପ୍ରଚ୍ଛଦ ତଳେ ଶୋକର ଫଲ୍‌ଗୁଟିଏ ଅନ୍ତଃସଲିଳା ହୋଇ ବହୁଥାଏ। ତଥାକଥିତ ବିକଶିତ ନଗରୀ ଓ ମହାନଗରୀର ଉପାନ୍ତ ଖଣ୍ଡି ବଜାର ଓ ବସ୍ତିକୁ ନେଇ ତାଙ୍କର ରଚିତ ଦୁଇଟି ଗଳ୍ପ 'ମକର: ଘୁଷୁରି ସାହିର' ଓ 'ରଜା: ଘୁଷୁରି ସାହିର'। ଗାଳ୍ପିକ ତଥାକଥିତ ଆର୍ଥନୀତିକ ତଥା ସାମାଜିକ ବିକାଶକୁ ଏ ଦୁଇ ଗଳ୍ପରେ ଦେଖିଛନ୍ତି ବାସ୍ତବରେ ଏକ Critical realist ଦୃଷ୍ଟିରେ। ବହୁ ପ୍ରତୀକ୍ଷିତ ମକର ପର୍ବ ପାଳିବା ନିମନ୍ତେ ବେଙ୍ଗର ନୂଆ ଶାଢ଼ୀ ଓ ବ୍ଲାଉଜ୍ ସେ ବର୍ଷ କିଣା ହୋଇ ପାରିନଥାଏ। ସେ ପାଇଁ ଘୁଷୁରି ସାଇର ଝୁମ୍ପୁଡ଼ିବାସିନୀ ବେଙ୍ଗ ମା'ର ସମ୍ବଳ ନଥାଏ। ବେଙ୍ଗର ମନ କଷ୍ଟ ଦେଖି ବେଙ୍ଗ ମା' ଯୁବତୀ ଝିଅକୁ ନେଇ କେତେ ଘଣ୍ଟା ପାଇଁ ଟେକି ଦେଇଛି ସାଇ ଛକରେ ଦେହ ବ୍ୟବସାୟର ମଧ୍ୟସ୍ଥି ନିମନ୍ତେ ନାଁକୁ ମାତ୍ର ପାନ କେବିନ୍ ଖୋଲି ବସିଥିବା ବେପାରି ହାତରେ। ଦେହ ବିକି ମକର ପାଳନ ଦୁଃସମ୍ବାଦ ଲେଖକ ଶୋକମୟ ଭାଷାରେ 'ମକର : ଘୁଷୁରି ସାଇର' ବର୍ଣ୍ଣନା କରି ସତେ ଯେମିତି ଆହ୍ୱାନ ଦେଇଛନ୍ତି - "ନା - ନା - ଏମିତି ବ୍ୟବସ୍ଥା ଆଉ ବେଶୀ ଦିନ ଚଳିବାକୁ ଦେବୁ ନାହିଁ। ତୁରନ୍ତ ଏହାର ପରିବର୍ତ୍ତନ କର।"

ଗାଳ୍ପିକ ବସନ୍ତ ଶତପଥୀ ଯଦିଓ ଉପରକୁ ଜଗନ୍ନାଥଙ୍କ ଭକ୍ତ ପରି ଜଣାପଡୁଥିଲେ, କିନ୍ତୁ ଜଗତର ପ୍ରାଣୀଙ୍କ ଆରତ, ପେଷଣ, କଷଣ ଦେଖି ଅନ୍ତଃସ୍ମରଣରେ ଜଗତର ସ୍ରଷ୍ଟା ବିଧାତାଙ୍କ ଲୀଳାଖେଳା ପ୍ରତି ସନ୍ଦେହବାଦୀ ଦୃଷ୍ଟିଭଙ୍ଗୀ ପୋଷଣ କରୁଥିଲେ। ସେ ନାଁ ଥିଲେ ଜଣେ କଟ୍ଟର ଆସ୍ତିକ, ନାଁ ଥିଲେ ଜଣେ ନିରୀଶ୍ୱରବାଦୀ, ବରଂ ସେ ଥିଲେ ଜଣେ ଏଗ୍ନୋଷ୍ଟିକ୍ ବା ସନ୍ଦେହବାଦୀ। 'ବାସନ୍ତୀ' ଗଳ୍ପରେ ଲେଖକ ଏହି ମର୍ମରେ ନିଜର ଆତ୍ମବିଶ୍ଳେଷଣ ପେଶ୍ କରିଛନ୍ତି। 'ପୁରୀରୁ ମୁଁ ଶହେ ଟଙ୍କା ଦେଇ ତିନି ଠାକୁରଙ୍କ ମୂର୍ତ୍ତି କିଣି ଆଣି ଘରେ ରଖିଛି। ଗାଧୋଇ ପାଧୋଇ 'ନ ଜାଣାମି ମନ୍ତ୍ରମ୍' କହି ଫୁଲ କେତୁଟା ଦିଏଁ ଓ ଧୂପଦୀପ ଦିଏଁ। ଲୋକ ଦେଖାଣିଆ ମୋର ଦେବ ଭକ୍ତି ଅତି ବେଶି ହେଲେ ଦିହପା ଖରାପ ହେଲେ ଡାକ୍ତର ଆସିବା ପର୍ଯ୍ୟନ୍ତ ଠାକୁରମାନଙ୍କ ଉପରେ ନିର୍ଭର କରେ। ମୋଟ ଉପରେ ସ୍ତ୍ରୀଙ୍କ ତାଗିଦା ଓ ଭୟରେ ଏ ଜଗନ୍ନାଥ ପ୍ରୀତି। ପୁଅବୋହୂଙ୍କ ଧର୍ମ

କର୍ମ ପ୍ରତି ଆସ୍ଥା ଥାଉ ନଥାଉ, ଆଗ୍ରହ ନାହିଁ। ସେମାନେ ଏକ କଥାରେ ସ୍ଥିତିବାଦୀ।" (ଆକାଶୀ ଫୁଲ, ପୃ. ୫୦)

କଳା ହେଉଛି ଏକ ସୂକ୍ଷ୍ମ ମାଧ୍ୟମ - ଯାହା ପାଠକଙ୍କୁ କର୍ମପ୍ରବଣ ହେବାକୁ ପ୍ରଚୋଦନା ସୃଷ୍ଟି କରେ- ଆଗ୍ରହାନ୍ୱିତ କରେ। କଥା ଓ ଶୈଳୀ ଭିତରେ ଲୁଚି ରହିଥିବା କଳା ପାଠକଙ୍କ ମନରେ ସମ୍ବେଦନା ସୃଷ୍ଟି କରି ତାହାକୁ ଲେଖକ ଚାହୁଁଥିବା ପରିବର୍ତ୍ତନ ଆଡ଼କୁ ପ୍ରଧାବିତ କରାଏ। ମାନବବାଦୀ ସମ୍ବେଦନା ପାଠକ ମନରେ ରେଚନ ପ୍ରକ୍ରିୟା ସୃଷ୍ଟି କରିପାରିଲେ, ପାଠକ ଭିତରେ ପ୍ରତିକ୍ରିୟା ସୃଷ୍ଟି ହୁଏ। ପାଠକର ମନ ଏତଦ୍ୱାରା ଗତିଶୀଳ ହେଲେ ତାହା ସ୍ଥିତାବସ୍ଥା ଭାଙ୍ଗିବା ପାଇଁ ଖୁବ୍ ବେଗରେ ଦଉଡ଼େ।

ଗିରୀଶ୍‌ଚନ୍ଦ୍ରଙ୍କର କଳାପାହାଡ଼ ଭୂମିକାରେ ସଫଳ ଅଭିନୟ ଦେଖି ଈଶ୍ୱରଚନ୍ଦ୍ର ଯେତେବେଳେ ମଞ୍ଚକୁ ଉଠିଯାଇ ଭାବ ଗଦ୍‌ଗଦ୍ ହୋଇ ଅଭିନେତାଙ୍କୁ ଚପଲ ଦ୍ୱାରା ଆକ୍ରମଣ କରନ୍ତି ବା 'ସିରାଜଉଦ୍ଦୌଲା' ନାଟକ ଦେଖି କଲିକତାର ତତ୍କାଳୀନ ମେୟର ସୁଭାଷଚନ୍ଦ୍ର ବସୁ ଯେତେବେଳେ 'ଭାରତ ମାତା କି ଜୟ' ସ୍ଲୋଗାନ ଦେଇ ହଲରୁ ବାହାରି ଆସନ୍ତି, କଳା ତାହାର କାର୍ଯ୍ୟ ସଫଳ ଭାବରେ କଲା ବୋଲି ବୁଝିହୁଏ। ସବୁରି ମୂଳରେ ଅସଲ କଥା ହେଲା ମାନବିକ ସମ୍ବେଦନା ସୃଷ୍ଟି କରିବା ଦିଗରେ କଳାର ଭୂମିକା। ବସନ୍ତ ବାବୁଙ୍କ 'କାଠ' ଗଳ୍ପର ସାନ୍ତାଳ କାଠ କଟାଳୀ ବୁଢ଼ାଟି ପ୍ରତି ମାଲିକ ନେଇଥିବା ଦୃଷ୍ଟିଭଙ୍ଗୀକୁ ଅନୁଧ୍ୟାନ କରି ପାଠକ ମନରେ ଯେଉଁ ସମ୍ବେଦନା ଜନ୍ମେ, ତାହା ହେଉଛି ଏକ ଶକ୍ତିଶାଳୀ ମାନବବାଦୀ ସମ୍ବେଦନା। ଏଇ ମାନବବାଦୀ ସମ୍ବେଦନାର ସୃଷ୍ଟି ଓଡ଼ିଆ ଗଳ୍ପ ସାହିତ୍ୟ ଆହରଣ କରିଛି ଆଧୁନିକ ୟୁରୋପୀୟ କଥା ସାହିତ୍ୟରୁ। ଆଧୁନିକ ଗଳ୍ପ ସାହିତ୍ୟର ଦୁଇ ଜଣ ପିତା - ଜଣେ ହେଲେ ଫ୍ରାନ୍ସର 'ମୋପାଁସା' ଓ ଆର ଜଣକ ହେଲେ ରୁଷର ଯଶସ୍ୱୀ କଥାକାର 'ଆଣ୍ଟୋନ୍ ଚେକଭ୍'। ଚେକଭ୍‌ଙ୍କ ପ୍ରସିଦ୍ଧ ଗଳ୍ପ 'ଭିକ୍ଷୁକ'ରେ ବସନ୍ତ ଶତପଥୀଙ୍କ କାଠୁରିଆ ବୁଢ଼ା ପରି ଏକ ଅସହାୟ ଚରିତ୍ର ଲୁଶ୍‌କେଫ୍ ଆସିଛି। ଓକିଲ ବାବୁ ତାକୁ ମଧ୍ୟ କାଠ କାଟିବାକୁ ବରାଦ୍ କରନ୍ତି ଓ ମୂଲ ମଜୁରିର ଦର କଷାକଷି କରନ୍ତି। ଉଭୟ ଗାଳ୍ପିକଙ୍କ ନାୟକ କାଠକଟାଳୀ ଲୋକଟି ମଧ୍ୟ କାଠ କାଟିଛି। ମାତ୍ର ରୁଷୀୟ କାଠକଟାଳୀ ଲୁଶ୍‌କେଫ୍‌କୁ ସାହାଯ୍ୟ କରିଛି ଓକିଲଙ୍କ ରୋଷେଇଆ ଓଲଗା। ସେ କାଠ ଗଣ୍ଡିଟିକୁ ଓକିଲଙ୍କ ଦୃଷ୍ଟିର ଉହାଡ଼କୁ ଗଡ଼ାଇ ନେଇ ଦୁର୍ବଳ ତଥା ମଦ୍ୟପ ଲୁଶ୍‌କେଫ୍‌ଙ୍କୁ ସାହାଯ୍ୟ କରିଛି। ଓଲଗାର ଅନୁନୟ ବିନୟ ଓ ଶେଷତଃ ଗାଳିରେ ଲୁଶ୍‌କେଫ୍ ମଦ୍ୟପାନ ଛାଡ଼ି ଦେବ ବୋଲି ପ୍ରତିଜ୍ଞା କରିଛି। ସେ ହୋଇଛି ଏକ ପରିବର୍ତ୍ତିତ ମଣିଷ ଓ ପରେ ପରେ ଧନ ଅର୍ଜନ କରି ପାଲଟି ଯାଇଛି ଜଣେ ସମ୍ଭ୍ରାନ୍ତ ପୁରୁଷ। ଚେକଭ୍ ଏ ଗଳ୍ପରେ ଜଣେ ଗରିବ ଲୋକର ଆତ୍ମିକ ବିକାଶଧାରାକୁ ପୂର୍ଣ୍ଣାଙ୍ଗ କରି ଛାଡ଼ିଛନ୍ତି। ମାତ୍ର ବସନ୍ତ ଶତପଥୀ ତାଙ୍କ 'କାଠ' ଗଳ୍ପରେ କାଠକଟାଳୀକୁ ଗାରଡେଇ କ୍ରୋଧପୂର୍ଣ୍ଣ ନେତ୍ରରେ ଚାହିଁବା ଅବସ୍ଥାରେ ରଖି ଗପଟିର ଉପସଂହାର ଟାଣିଛନ୍ତି। କାଠକଟାଳିକୁ ଶୋଷଣ

କରିଥିବା ନାୟକ ବୁଢ଼ାର କ୍ରୋଧ ଦେଖି ଭୟଭୀତ ହୋଇଛି ନିଶ୍ଚିତ। କିନ୍ତୁ ଗଳ୍ପଟିରେ ଇପ୍‌ସିତ କ୍ରୋଧଟି ପାଠକ ମନରେ ହୃଦୟ ପରିବର୍ତ୍ତନର ବାଡ଼ବାଗ୍ନି ସୃଷ୍ଟି କଲା କି ନାହିଁ ତାହା ଆମର ଅନୁଧ୍ୟାନର ବିଷୟ ହୋଇ ରହିଛି। ଏକଥା ସତ୍ୟ ଯେ ଗପଟିରେ ସୃଷ୍ଟି କରାଯାଇଥିବା ଉତ୍‌ପ୍ରେକ୍ଷା ପାଠକର ହୃଦୟ ତନ୍ତ୍ରୀକୁ ସମ୍ବେଦନାରେ ଭିଜେଇ ଦିଏ ଏବଂ ତା' ମନରେ ଏକ ପ୍ରତିକ୍ରିୟା ସୃଷ୍ଟି କରେ - ମାନବିକତା ସପକ୍ଷରେ, ମଣିଷପଣିଆ ସପକ୍ଷରେ।

ଗାଳ୍ପିକ ବସନ୍ତ ଶତପଥୀଙ୍କ 'କାଠ' ବ୍ୟାପାରଟି ପୂର୍ଣ୍ଣତା ଲଭିଛି ତାଙ୍କର ଅନ୍ୟ ଏକ ଗଳ୍ପ 'ମୁଖାଗ୍ନି'ରେ। ଜଣେ ଲୋକ ଆର୍ଥିକ ଭାବେ ତଳିତଳାନ୍ତ ହୋଇଗଲେ, ସଙ୍ଗୀନ୍ ପରିସ୍ଥିତିରେ ପଡ଼ି ନାଚର ହୋଇଯାଏ। ଶ୍ମଶାନରେ ଅଧାପୋଡ଼ା କାଠକୁ ଆଣି ନିଜ ଘରେ ରୋଷେଇରେ ବ୍ୟବହାର କରିବା ଆମ ହିନ୍ଦୁ ସଂସ୍କାରରେ କେଉଁଠି ହେଲେ ଚଳେନା। ମଡ଼ାପୋଡ଼ାରେ ସାହାଯ୍ୟ କରୁଥିବା ଧୋବା ବଳକା କାଠକୁ ସେଇଠାରୁ ତାହାର ତୁଠକୁ ନେଇଯାଏ ଓ ସେଠାରେ ଲୁଗାସିଝା ପାଇଁ ତାହା ବ୍ୟବହାର କରିଥାଏ। କିନ୍ତୁ ଭୋଦୁଅ ମାସରେ ଏକ ବର୍ଷଣମୁଖର ଦିବସରେ ବାପାଙ୍କ ଶବ ପୋଡ଼ି ସାରି ଘରକୁ ଫେରି ପୁଅ ଦେଖୁଛି ଘରେ ପିତା ଭାତ ଖାଇବା ପାଇଁ ଚାଉଳ ନାହିଁ କି ରୋଷେଇ ନିମନ୍ତେ ଜାଳେଣି ନାହିଁ। ସ୍ତ୍ରୀ ବହୁତ ଖୋଜାଖୋଜି କରି ଏକ ପୁରୁଣା ହାଣ୍ଡିରେ ରଖିଥିବା ମୁଠିଚାଉଳ ପାଇଛି। ଜାଳେଣି ସଂଗ୍ରହ ପାଇଁ ପୁଅ ଯାଇଛି ଶ୍ମଶାନକୁ ବାପାଙ୍କ ଜୁଇରୁ ଅଧାପୋଡ଼ା କାଠ ଆଣିବାକୁ ଓ ତାହା ମଧ ଆଣିଛି। ଏ ଦୃଶ୍ୟ ପାଠକର ଚିତ୍ତବୃତ୍ତିକୁ ସମ୍ବେଦନାରେ ଦୋହଲାଇ ଦିଏ। ତା' ପାଟିରୁ ଆହା ଶବ୍ଦ ବାହାରିପଡ଼େ। କିନ୍ତୁ ଚେକଭ୍‌ଙ୍କ ବ୍ୟକ୍ତି ବିକାଶର ଉଦ୍ଦେଶ୍ୟ ଏ ଗପରେ ମଧ ସାଧିତ ହୁଏ ନାହିଁ। କେବଳ ସମ୍ବେଦନା ସୃଷ୍ଟି କରିବାରେ ଅଟକି ଯାଏ ବସନ୍ତ ଶତପଥୀଙ୍କ ନାୟକର କାଠ ସଂଗ୍ରହ ଅଭିଯାନ।

ମାନବବାଦୀ ସମ୍ବେଦନା ସହ ନଷ୍ଟାଲଜିକ୍ ପରିବେଶ ସୃଷ୍ଟି କରେ ବସନ୍ତ ଶତପଥୀଙ୍କ ଅନେକ ଗଳ୍ପ। ପିତାମାତାଙ୍କର ପ୍ରଥମ ସନ୍ତାନଙ୍କୁ ଶୁଭ ମନାସି ମାର୍ଗଶିର ମାସ ଅଷ୍ଟମୀ ତିଥିରେ ଓଡ଼ିଆ ପରିବାରରେ ପାଳନ କରାଯାଏ ପ୍ରଥମାଷ୍ଟମୀ। ବଡ଼ ନାନୀର ବଡ଼ଛୁଆକୁ ପଢୁଆଁ କରିବା ପାଇଁ ଖନ୍ତାପଡ଼ାରୁ ଲୋକାଲ ଟ୍ରେନ୍‌ରେ ବସ୍ତା ଯାଉଥାଏ ସରୋଜିନୀ ମହାନ୍ତି ନାମ୍ନୀ ଝିଅଟିଏ। ଲେଖକ ବାଲେଶ୍ୱରରେ ଟ୍ରେନ୍‌ରେ ଚଢ଼ି ସରୋଜିନୀର ପାଖ ସିଟ୍‌ରେ ବସନ୍ତି। କଥୋପକଥନ ବେଳେ ଝିଅଟି ସହ ଦୋସ୍ତି ହୁଏ ଏବଂ ଲେଖକ ଝିଅଟିର ଅଜା ବନିଯା'ନ୍ତି। ଅଜା ବାପାଙ୍କ ମାଆଙ୍କ ପଢୁଆ ସନ୍ତାନ କିନ୍ତୁ ତାଙ୍କୁ ପଢୁଆଁ କରିବାକୁ ଏ ଦୁନିଆରେ କେହି ନାହାନ୍ତି। ସରୋଜିନୀ ସନ୍ଧ୍ୟାରେ ବସ୍ତାରେ କାମ ସାରି ଏ କାର୍ଯ୍ୟ ଫେରିବା ବାଟରେ ନିଜ ହାତରେ ସମ୍ପାଦନ କରିବ ବୋଲି କହେ। କେମିତି ସେ ଅଜାଙ୍କୁ ପଢୁଆଁ କରିବ, ତାହାର ଏକ କଳ୍ପିତ ଚିତ୍ର ଝିଅଟି ଦେଲାବେଳେ ବର୍ଣ୍ଣନା କେତେ ମାତ୍ରାରେ ନଷ୍ଟାଲଜିକ୍ ହୋଇ ଉଠିଛି ଅନୁଧ୍ୟାନ କରାଯାଉ। ଆନନ୍ଦାତିଶଯ୍ୟରେ ସରୋଜିନୀ କହିଲା - "ଅଜା! ମୋତେ ଭାରି ଖୁସି ଲାଗୁଛି। ତମକୁ କଞ୍ଚା ହଳଦୀ ମଖାଇବି, ସିନ୍ଦୁର ଚନ୍ଦନ ଦେବି। ମନ୍ଦିରକୁ ଯିବା-ଭୋଗ ଲଗାଇବା। କୁଞ୍ଚ ଛାଡ଼ି ନୂଆ ଲୁଗା ପିନ୍ଧି ନୂଆ ଜାମା

ଘୋଡ଼ି ତୁମେ ଯେତେବେଳେ ଚାଲିଥିବ, କେତେ ସୁନ୍ଦର ନ ଦିଶିବ ! ମୁଁ ଶଙ୍ଖ ହୁଳହୁଳି ଦେଉଥିବି ।" ମୁଁ କହିଲି, "ଆଉରି ଭଲ ଦିଶନ୍ତା କନିଆଟିଏ ମୋ ଆଗରେ ଚାଲିଥିଲେ ।" (ଗଳ୍ପ-କୁଳିଗାଁର ଶ୍ରୀମତୀ ସରୋଜିନୀ ମହାନ୍ତି କେଆର୍ ଅଫ୍ ସୁଦାମ ମହାନ୍ତି) । ଏ ଉଦ୍ଧାରଣ ଭିତରେ ଲେଖକଙ୍କ ପଛରେ ଛାଡ଼ି ଆସିଥିବା ଦିନ ଗୁଡ଼ିକର ସ୍ମୃତି ପାଠକ ଆଗରେ ଚେଇଁ ଉଠେ ।

କଥାକାର ଫକୀରମୋହନଙ୍କ ଗଳ୍ପ ଶୈଳୀର ଦାୟାଦତ୍ୱ କରିବା ପାଇଁ ଓଡ଼ିଶାରେ ଅନେକ କଥାକାର ନିଜ ଜ୍ଞାତସାରରେ ଅବା ଅବଚେତନରେ ପ୍ରୟାସ କରିଛନ୍ତି । ସୁରେନ୍ଦ୍ର ମହାନ୍ତି, ମନୋଜ ଦାସ ବା ବସନ୍ତ ଶତପଥୀଙ୍କ ନାମ ଏ ପ୍ରସଙ୍ଗରେ ଉଲ୍ଲେଖ କରାଯାଇପାରେ । ବସନ୍ତ ଶତପଥୀ ତାଙ୍କର ଅନେକ ସାହିତ୍ୟକ ଅଭିଭାଷଣରେ ନିଜକୁ ଫକୀରମୋହନଙ୍କ ଦାୟାଦ ବୋଲି ପାଠକଙ୍କ ଠାରୁ ବା ଶ୍ରୋତାଙ୍କ ଠାରୁ ଶୁଣିବାକୁ ସଶବ୍ଦ ଇଚ୍ଛା ପ୍ରକାଶ କରିଥାନ୍ତି । ଯେଉଁ ପାଠ ପଢ଼ିବା ପାଇଁ ଫକୀରମୋହନଙ୍କ ରେବତୀର ପରିବାର ନଷ୍ଟ ହୋଇ ଯାଇଥିଲେ, ସେଇ ପାଠ ପଢ଼ି ଶିକ୍ଷିତା ହେବା ନିମନ୍ତେ ବସନ୍ତ ବାବୁଙ୍କ 'ଅନପଢ଼' ଗଳ୍ପର ନାୟିକା ଗ୍ରାମ୍ୟ ଝିଅ 'ବୁଢ଼ୀ' ଆଗେଇ ଯାଇଛି । ବୁଢ଼ୀ ଚରିପଟର ପୁରୁଷ ଅଧ୍ୟୁଷିତ ସମାଜର ଦୃଷ୍ଟିରେ କିନ୍ତୁ ନାରୀ ପ୍ରତି ପ୍ରାଚୀନ ଦୃଷ୍ଟିଭଙ୍ଗୀ ବଦଳି ନାହିଁ । ଏ ସମାଜର ଦୃଷ୍ଟିରେ ନାରୀ ହେଉଛି ଯୌନତୃପ୍ତି ସାଧନର ପଡ଼ିଆରେ ଏକ ଫୁଟବଲ୍ । ବୁଢ଼ୀ କିଶୋରୀ ଛାତ୍ରୀଟିଏ ଥିବାବେଳେ ଯେଉଁ ବସ୍‌ରେ ସ୍କୁଲ ଯିବାବେଳେ ବସ୍‌ର ଷ୍ଟାଫ୍ ଓ ଯାତ୍ରୀଗଣ ତାକୁ ଆଦରରେ କେତେ ପ୍ରଶ୍ନ କରୁଥିଲେ, ମ୍ୟାଟ୍ରିକ୍ ଶେଷ ବର୍ଷରେ ପହଞ୍ଚିବା ବେଳକୁ ସେଇ ବସ୍‌ରେ ସମସ୍ତେ ତା' ଆଡ଼କୁ ଖାଇଯିବା ପରି ଅନେଇ ଦେଖୁଥିଲେ । ବସନ୍ତ ଶତପଥୀ 'ବୁଢ଼ୀ' ଚରିତ୍ରକୁ ଏଇ ପ୍ରକାର ସାମାନ୍ୟ ଅଡୁଆରେ ପକାଇ ଦେଇଛନ୍ତି – ମାତ୍ର ତାଙ୍କ ପରବର୍ତ୍ତୀ ଗାଳ୍ପିକ ତରୁଣକାନ୍ତି ମିଶ୍ର 'ରେବତୀ' ଗଳ୍ପରେ ଓଡ଼ିଶାର ମାଳ ଅଞ୍ଚଳର କିଶୋରୀ ରେବତୀକୁ ଘଟଣା ଚକ୍ରରେ ନେଇ ପହଞ୍ଚାଇ ଦେଇଛନ୍ତି କଲିକତାର ହାଡ଼କଟା ଗଳିରେ, ଏକ ଦେହ ବ୍ୟବସାୟ କେନ୍ଦ୍ରରେ । ବୁଢ଼ୀକୁ ଅନ୍ତତଃ ଏ ଦୁର୍ଦ୍ଦଶାରେ ପଡ଼ିବାକୁ ଦେଇ ନାହାନ୍ତି ଗାଳ୍ପିକ ଶତପଥୀ । ସେ ବୁଢ଼ୀର ପଢ଼ା ଛଡ଼େଇ ଦେଇଛନ୍ତି ଓ ତାକୁ ଏକ ମଧ୍ୟବିତ୍ତ ପରିବାରରେ ବିବାହ କରାଇ ଦେଇଛନ୍ତି । ବାସୁ ମାଷ୍ଟ୍ରଙ୍କୁ ଦେଖି ରେବତୀ ମନରେ ଯେଉଁ ସାମାନ୍ୟ ପ୍ରେମୋଦୟ ହୋଇଥିଲା, ତାହା ବୁଢ଼ୀର ବୈବାହିକ ଜୀବନ ଆରମ୍ଭରେ ସମ୍ପୂର୍ଣ୍ଣ ହୋଇଛି । ମାତ୍ର ବୁଢ଼ୀର ଚରିତ୍ରକୁ ଚିତ୍ରଣ କଲାବେଳେ ଗାଳ୍ପିକ ଆଜିର ସଭ୍ୟତାର ନାରୀ ପ୍ରତି ପଣ୍ୟ ସୁଲଭ ଦୃଷ୍ଟିଭଙ୍ଗୀ ପ୍ରତି ଏକ ତୀର୍ଯ୍ୟକ୍ ଦୃଷ୍ଟିପାତ କରିଛନ୍ତି ।

ଗାଳ୍ପିକ ବସନ୍ତ ଶତପଥୀଙ୍କ ଗଳ୍ପ ଗୁଡ଼ିର ସାମଗ୍ରିକ ଚରିତ୍ର ଅନୁଧ୍ୟାନ କରି ସେ ଗୁଡ଼ିକୁ ଅଳ୍ପ ମାତ୍ରାରେ ସ୍ୱଭାବବାଦ (naturalist) ଏବଂ ଅଧିକ ମାତ୍ରାରେ ବାସ୍ତବବାଦୀ (realist) ବୋଲି ଆମେ କହିପାରୁ । ତାଙ୍କ ରିଏଲିଷ୍ଟ ଧାରାର ବର୍ଣ୍ଣନାର ଶ୍ରେଷ୍ଠ ଉଦ୍ଧାରଣ ଶୁଭେ 'ଆଈ ବୁଢ଼ୀ' ଗଳ୍ପରେ । 'ଆଈ ବୁଢ଼ୀ' ହେଉଛି ନାୟକଙ୍କ ଘରର ଜଣେ ବୁଢ଼ୀ ଚାକରାଣୀ । ମାଲିକଙ୍କ ଘରକୁ ସେ ନିଜର ବୋଲି ଭାବେ । ଥରେ ଛୁଟି ନେଇ ବୁଢ଼ୀ ଘରକୁ ଯାଏ । ଆସି ଦେଖେ ମାଲିକର ଘର

ଅନ୍ୟ ଉଠା ଚାକରାଣୀଙ୍କ ଅଦଉତିରେ ବିପର୍ଯ୍ୟସ୍ତ । ଗୋଟାଏ ଯୋଡ଼ାଏ ଉଦାହରଣରୁ ଆଈ ବୁଢ଼ୀର ସେ ଘର ପ୍ରତି ଥିବା ଆପଣାର ପଣ ବେଶ୍ ମାପି ହେବ। ଗୋଟାଏ ପ୍ରସଙ୍ଗରେ ଆଈ ବୁଢ଼ୀ ପଚାରିଛି- "ବାପାରେ ! ଯେଉଁ ବଡ଼ ବେଲାଟାରେ ତୁ ମୁଢ଼ୀ ବାଇଗଣ ପୋଡ଼ା ଖାଇଥିଲୁ, ସେଇଟା କାହିଁ। ଲଖ୍ନଉରୁ ଯେଉଁ ଚା' ବାସନ ଆଣିଥିଲୁ ତା'ର ପିଲେଟ ଅଛି, କପ୍ କାହିଁ ? ଯେଉଁ ସାନ ଷ୍ଟିଲ ଟାଟିଆରେ ଲେମ୍ବୁ ଆଚାର ଚକଟି ଖାଉଥିଲୁ, ସେଟା ବି ଦେଖୁନି ।"

ନାୟକଙ୍କ ପୁଅ ବାହାଘରରେ ସମସ୍ତଙ୍କ ଅଇଁଠା ପତ୍ର ଉଠାଇବା ପାଇଁ ଶୀତାର୍ତ୍ତ ଅର୍ଦ୍ଧରାତ୍ରରେ ଅନୁରୋଧ କରାଗଲା ବେଳେ ବୁଢ଼ୀର କରୁଣ ଅଥଚ ବାସ୍ତବବାଦୀ ପ୍ରତିକ୍ରିୟା: "ବୁଢ଼ୀର ବିଶାଳ ନୟନରୁ ଛଳଛଳ ହୋଇ ବଡ଼ବଡ଼ ଲୁହଟୋପା ଗାଲ ଦେଇ ଗଡ଼ିବାକୁ ଆରମ୍ଭ କଲା । ବାହୁ ଦୁଇଟାରୁ ପିନ୍ଧା ଲୁଗାଟା ଉଠାଇ କହିଲା- ଦେଖ ବାପା! ପାଣି ଟାଣି ଟାଣି ହାତ ଦୁଇଟା କିମିତି ଫୁଲି ଯାଇଛି। ପାପୁଲିର ଫୋଟକା ବି ଫାଟି ଗଲାଣି। ଏଇ ଦେଖ୍ ଆଙ୍ଗୁଳି ସନ୍ଧିରେ ସରଫ୍ ଆଉ ପାଉଁଶ ଲାଗି ବଡ଼ ରୋଗୀର ହାତ ପରି ଦିଶିଲାଣି। ମୋତେ ଅଇଁଠା ପତର ଉଠାଇବାକୁ ସବା ଶେଷରେ କହିଲୁ ନାଁ ? ଜାତି ଅଜାତିର ଲୋକଙ୍କୁ ଡାକିଛୁ ଓ ମୋ ପୁଅବୋହୂ ଏକଥା ଜାଣିଲେ ମତେ ପରାଶ୍ଚିତ ନକରି ଛାଡ଼ିବେ।" (ମାଂସାଶୀମାନଙ୍କ ଉଦ୍ଦେଶ୍ୟରେ, ପୃ.୮)

ବୁଢ଼ୀ ଶେଷତଃ କାମ ଛାଡ଼ି ଘରକୁ ଚାଲିଯାଏ। ବୁଢ଼ୀର ବାତ୍ସଲ୍ୟପ୍ରେମ ଆପଣାରପଣ, ସୁଖଦୁଃଖିଆ ଚଳଣି ନାୟକଙ୍କୁ ଏତେ ଭାବ ଗଦ୍‌ଗଦ୍ ଓ ଅନ୍ଧ କରି ଦେଇଥାଏ ଯେ, ସେ ବୁଢ଼ୀର ଯିବା ବାଟକୁ ଚାହିଁ ସ୍ୱତଃ ଭାବେ- "ମାଆ ମାଆ ଡାକି ଭେଁ ଭେଁ ରଡ଼ି ଛାଡ଼ି ବୁଢ଼ୀ ପଛରେ ଖଣ୍ଡେ ଦୂର ଯାଇଥିଲେ ହୁଏତ ମୋ ମନ ମାନିଥାନ୍ତା।"

ଜଣେ ରିକ୍ସାବାଲାର ସହିତ କିଛି ବାଟ ରିକ୍ସାରେ ଯାଇ ଓ ତା' ସହ କେତେକ ଅନ୍ତରଙ୍ଗ ବାକ୍ୟାଳାପ କରି ଲେଖକଙ୍କର ସେହିପରି ବାସ୍ତବବାଦୀ ପ୍ରତିକ୍ରିୟା ହୋଇଥାଏ 'ଭଡ଼ା' ଗଳ୍ପରେ। ଗଳ୍ପର ଶେଷାଂଶରେ ଲେଖକଙ୍କ ଅନୁରୂପ ପ୍ରତିକ୍ରିୟା- "ଷ୍ଟାଫ୍ କମନ୍‌ରୁମ୍‌ରେ ଏ ଘଟଣାକୁ ଯେତେବେଳେ ବର୍ଣ୍ଣନା କରୁଥିଲି, ସେତେବେଳେ ନାନା କଥା ସହିତ ମିଳାଇ ଅନୁଶୋଚନା କରୁଥିଲି, ମୁଁ କାହିଁକି ତାକୁ ବାପା ବୋଲି ଥରେ ସମ୍ବୋଧନ କରି ପାରିଲି ନାହିଁ, ଯଦିଓ ସେ ମୋତେ ସାର୍, ସାହେବ, ବାବୁ ବୋଲି ବାରମ୍ବାର ସମ୍ବୋଧନ କରୁଥିଲା ଏବଂ ମୋତେ ପୁଅ ବା ଛାତ୍ର ଭାବି କେତେ କଥା ପଢ଼ାଇ ପଢ଼ାଇ ପଚିଶ ତିରିଶ ମିନିଟ୍‌ର ବାଟରେ ଲମ୍ବାଲମ୍ବି ଜୀବନରାସ୍ତାକୁ ସୁଖମୟ ନିରାପଦମୟ କରିବାର ବାଟ ବତାଇ ଦେଲା। ବାପାଙ୍କ ପରି ତାକୁ କ'ଣ ଦିଶୁ ନଥିଲା ?" (ଗଙ୍ଗା ଓ ଗାଙ୍ଗୀ, ପୃ. ୧୫୫)

ଲେଖକ ଉପରୋକ୍ତ ପରିବେଶ ମାନଙ୍କରେ ଦଳିତ ଚରିତ୍ର ସହ ଏକବାରେ ଏକାତ୍ମ ହୋଇଯାଇଛନ୍ତି। ମଧ୍ୟବିତ୍ତୀୟ ଅଭିମାନର ମୁଖା ତାଙ୍କର ଏଇ ସବୁସ୍ଥାନ, କାଳରେ ଖସି ପଡ଼ିଛି। ଅନ୍ୟ ଭାଷାରେ କହିଲେ - ସେ ନିଜ ଶ୍ରେଣୀର ଉଚ୍ଚ ସିଂହାସନ ଛାଡ଼ି ଚରିତ୍ର ମାନଙ୍କ ସମଭୂମିକୁ

ଓହ୍ଲାଇ ଆସିଛନ୍ତି । ସେ ନିଜକୁ De-class କରି ପାରିଛନ୍ତି । ଏଇ De-class ହେବାର ଅଭ୍ୟାସ ହିଁ ଲେଖକଙ୍କୁ ରିଏଲିଷ୍ଟ ହେବାରେ ସର୍ଜନାତ୍ମକ ଭାବେ ସାହାଯ୍ୟ କରେ । ନିଜର ଅହମିକାର ଉଚ୍ଚପିଣ୍ଡା ଛାଡ଼ି ଯେଉଁ ଲେଖକ ଯେତେ କମନର (Commoner)ଙ୍କ ପାଖକୁ ଯାଇ ପାରିଛି, ସେମାନଙ୍କ ସହ ଅନ୍ତରଙ୍ଗ ହୋଇ ପାରିଛି, ସେ ନିଜର କଲମରେ ସେତେ ବାସ୍ତବବାଦୀ ସ୍ୟାହି ଭରି ପାରିଛି । ସାଇବେରିଆ ସମତଳରେ ଜାଡ଼ କାକର ବରଫପାତ ଭିତରେ ଯାଯାବରଙ୍କ ସହ ମିଶି ଗୋର୍କୀ ଯେଉଁ ଭାଷା ଓ ଭାବ ସଂଗ୍ରହ କରି ତାଙ୍କର ଗଳ୍ପ 'ଓଲ୍ଡ଼ ଇଜରଗିଲ' ବା 'ନିଉ ବର୍ନ' ଲେଖି ପାରିଥିଲେ, ତାହା realist ବର୍ଣ୍ଣନା ଯୋଗୁଁ ତାଙ୍କୁ କଲା ବିଶ୍ୱବିଶ୍ରୁତ । ଗାଳ୍ପିକ ବସନ୍ତ ଶତପଥୀ ନିଜସ୍ୱ ରାସ୍ତାରେ ନିଜସ୍ୱ ଶୈଳୀରେ ନିଜ ଜୀବନକୁ ନର୍କରେ ପକାଇ ବାସ୍ତବରେ ଦୁନିଆର ବୃହତ୍ତର ପାଠକଙ୍କୁ ମୁକ୍ତିର ଦିଶା ଦେଖାଇବାକୁ ତାଙ୍କ କଥା ସାହିତ୍ୟରେ ସାଧନା କରି ଯାଇଛନ୍ତି । ଯେତେଦିନ ଯାଏ ସାଧାରଣ ମଣିଷର ଆତ୍ମାକୁ ଚିହ୍ନିବାକୁ ଲୋକଙ୍କ ଉଦ୍ୟମ ଜାରି ରହିଥିବ, ବସନ୍ତ ଶତପଥୀଙ୍କ କଥା ସାହିତ୍ୟ ସେଇ ରାସ୍ତା ଧାରରେ ଆଲୋକବର୍ତ୍ତିକା ସାଜି ତାକୁ ସେ ଉଦ୍ୟମରେ ଆଗେଇ ଯିବା ପାଇଁ ନିରନ୍ତର ଉତ୍ସାହ ପ୍ରଦାନ କରୁଥିବ ।



# ଜତୁ ଗୃହରେ ଅଙ୍କୁରିତ ଏକ ସ୍ୱପ୍ନ

କୌଣସି ଲୋକ ଯେତେବେଳେ ନିଜ ଜୀବନଯାତ୍ରାର ବିବରଣୀକୁ ଡାଏରୀ ଲେଖା ଭିତରେ ବାନ୍ଧି ରଖିବାକୁ ଚେଷ୍ଟା କରେ, ସେ ଅଜାଣତରେ ଲେଖି ଦେଇଯାଏ ନିଜ ସମୟର ଇତିହାସ। ଆତ୍ମ ଜୀବନୀ ଓ ଡାଏରୀ ଲେଖକର ସମକାଳୀନ ସମାଜର ଗହିରିଆ ଦୁଃଖ ଅତି ଅନ୍ତରଙ୍ଗ ଭାବେ ପଦାକୁ ନେଇଆସେ। ଶୁଷ୍କ ଇତିହାସ ପଠନରେ ଯେତେବେଳେ ଜଣକୁ ଆନନ୍ଦ ମିଳେନା, ବ୍ୟକ୍ତିଗତ ଏଇ ଇତିହାସମାନ ପଢ଼ିଲେ ପାଠକକୁ ଉଚ୍ଚାଟିତ ହେବାକୁ ପଡ଼େ ଓ ବାନ୍ଧି ହୋଇ ଯିବାକୁ ପଡ଼େ ଘଟଣାର ଆଖିଦେଖା ବର୍ଣ୍ଣନା ସହିତ। ୧୯୩୯ ମସିହାରୁ ୧୯୪୫ ମସିହା ମେ ମାସ ଦୁଇ ତାରିଖ ପର୍ଯ୍ୟନ୍ତ ଦ୍ୱିତୀୟ ବିଶ୍ୱଯୁଦ୍ଧ ସମଗ୍ର ୟୁରୋପ ଓ ଏସିଆ ମହାଦେଶରେ ରଚନା କରିଥିଲା ତାଣ୍ଡବ ଲୀଳା। ୧୯୪୫ ମସିହା ଏପ୍ରିଲ ୩୦ ତାରିଖରେ ଜର୍ମାନୀର ଏକଛତ୍ରବାଦୀ ଶାସକ ହିଟ୍‌ଲର୍ ଆତ୍ମହତ୍ୟା କରନ୍ତି ଏବଂ ଅବରୁଦ୍ଧ ବର୍ଲିନ୍ ସହର ସୋଭିଏତ୍ ସୈନ୍ୟଙ୍କର ଦଖଲକୁ ଆସେ। ଏ ଘଟଣାର ପରଦିନ ପୋଷ୍ଟଡ୍ୟାମ୍ ଶିଖର ସମ୍ମିଳନୀରେ ବିଶ୍ୱଯୁଦ୍ଧର ତିନି ବିଜୟୀ ଦେଶର ମୁଖ୍ୟ ଷ୍ଟାଲିନ୍, ରୁଜ୍‌ଭେଲଟ୍ ଓ ଚର୍ଚ୍ଚିଲ ମିଳିତ ହୋଇ ଶାନ୍ତି ପ୍ରତିଷ୍ଠା ନିମନ୍ତେ ଆଲୋଚନା କରନ୍ତି। ୟୁରୋପର ଏଇ ହାଡ଼ଥରା ଯୁଦ୍ଧ ବିଭୀଷିକା ମଧ୍ୟରେ ଏକ ଗୁପ୍ତ ସ୍ଥାନରେ ଚଳନ୍ତି ଜୀବନ ପ୍ରବାହ ଠାରୁ ଦୂରରେ ବସି ତେର ବର୍ଷର ଇହୁଦୀ ଝିଅ ଆନୀ ଫ୍ରାଙ୍କ୍ ଲେଖୁଥାଏ ତାହାର ଦିନଲିପି। ପରବର୍ତ୍ତୀ ସମୟରେ ଉଦ୍ଧାର ହୋଇଥିବା ଡାଏରୀରୁ ଯାହା ଜଣାପଡ଼େ, ଆନୀର କଲମ ଥିଲା ଏକ ପ୍ରତିଶ୍ରୁତିବାନ୍ କଲମ। ଡାଏରୀରେ ବର୍ଣ୍ଣନା ଭରପୁର ଥିଲା ବହୁ ତଥ୍ୟ, ରାଜନୀତିକ ଖବର, ଦୈନନ୍ଦିନର ଚିତ୍ର, ସାହିତ୍ୟ, ପ୍ରେମୋଚ୍ଛ୍ୱାସ ଆହୁରି କେତେ କ'ଣ। ଡାଏରୀଟିର ଅବଧି ହେଉଛି ୧୯୪୨ ମସିହା ୧୪ ଜୁନ୍‌ରୁ ୧୯୪୪ ଅଗଷ୍ଟ ପହିଲା ପର୍ଯ୍ୟନ୍ତ।

ଏଇ ଡାଏରୀର ଲେଖିକା କିଶୋରୀ ଆନୀ ଫ୍ରାଙ୍କ୍ ୧୯୨୯ ମସିହା ଜୁନ୍ ୧୨ ତାରିଖରେ ଜାର୍ମାନୀ ସହର ଫ୍ରାଙ୍କ୍‌ଫୋର୍ଟରେ ଜନ୍ମଗ୍ରହଣ କରିଥିଲେ। ବାପା ଅଟୋଫ୍ରାଙ୍କ୍ ଥିଲେ ଜଣାଶୁଣା ବ୍ୟବସାୟୀ - ଯାହାଙ୍କର ବଂଶଲତା ସୁଦୂର ଅତୀତ ସପ୍ତଦଶ ଶତାବ୍ଦୀରୁ ସେ ସହରରେ ମାଡ଼ିଥିଲା। ଅଟୋଫ୍ରାଙ୍କ୍ ମଧ୍ୟ ଜିଉ ବା ଇହୁଦୀ ଥିଲେ। ପିଲାଦିନେ ନିଜ ପଢ଼ା ସ୍ଥାନ ଆଞ୍ଚଳିକ ନର୍ସରୀ ସ୍କୁଲ ବ୍ୟତୀତ ଆନୀ ସହରର ଅନ୍ୟ କୌଣସି ସ୍ଥାନ ଦେଖି ନଥିଲା। ୧୯୩୪ ମସିହାର ମଧ୍ୟଭାଗରେ ଫ୍ରାଙ୍କ୍ ପରିବାର ହିଟ୍‌ଲର ଅତ୍ୟାଚାରରେ ଅତିଷ୍ଠ ହୋଇ ସେ ସହର ଛାଡ଼ି ହଲାଣ୍ଡର ରାଜଧାନୀ ଆମଷ୍ଟରଡାମ୍‌କୁ ପଳାଇ ଯାଇଥିଲେ। ହଲାଣ୍ଡ ସେତେବେଳେ ରାଜ-ଶାସିତ ଦେଶ ଥିଲା। ଇଂଲଣ୍ଡର ପ୍ୟୁରିଟାନ୍‌ମାନେ, ଫ୍ରାନ୍‌ସର ପ୍ରଟେଷ୍ଟାଣ୍ଟ୍ ପନ୍ଥୀ ଓ ଜର୍ମାନୀରୁ ଇହୁଦୀ, କମ୍ୟୁନିଷ୍ଟ ତଥା ଟ୍ରେଡ଼୍

ୟୁନିୟନ୍ ନେତାଗଣ ପଳାୟିତ ଅବସ୍ଥାରେ ହଲାଣ୍ଡରେ ସେତେବେଳେ ଆଶ୍ରୟ ଗ୍ରହଣ କରୁଥିଲେ। ୧୯୪୦ରେ ହଲାଣ୍ଡ୍ ଉପରେ ଏଇ କାରଣରୁ ହିଟଲରଙ୍କ କୋପଦୃଷ୍ଟି ପଡ଼େ। ସେ ହଲାଣ୍ଡ ଆକ୍ରମଣ କରିବା କ୍ଷଣି ରାଣୀ ଉଇଲମିନା ନିଜ ପରିବାର ସହ ଲଣ୍ଡନ ପଳାୟନ କରନ୍ତି ଓ ସେଠାରେ ବର୍ହିଦେଶୀୟ ସରକାରଟିଏ ଗଠନ କରନ୍ତି। ଜର୍ମାନୀମାନେ ହଲାଣ୍ଡର କେନ୍ଦ୍ରୀୟ ଶାସନ ବ୍ୟବସ୍ଥା, ରେଡ଼ିଓ ଷ୍ଟେସନ, ବ୍ୟବସାୟ ପେଣ୍ଠ, ରିଜର୍ଭ ବ୍ୟାଙ୍କ୍ ଓ ବିଶ୍ୱ ବିଦ୍ୟାଳୟମାନ ଦଖଲ କରନ୍ତି ଓ ଜାର୍ମାନ ହାଇ କମିଶନର୍ ଆର୍ଥର୍ ସିଏସ୍ ଇନ୍‌କୁଏଟ୍‌ଙ୍କୁ ଶାସନକର୍ତ୍ତା ରୂପେ ନିଯୁକ୍ତି କରନ୍ତି। ଆନୀ ଜୀଉ ବଂଶୋଦ୍‌ଭବ ବୋଲି ଜଣାପଡ଼ିବାରୁ ସେ ମଣ୍ଟେସୋରୀ ସ୍କୁଲ ପରିତ୍ୟାଗ କରେ ଓ ଘରେ ସୀମାବଦ୍ଧ ହୋଇଯାଏ।

୧୯୪୧ ମସିହାରେ ନାଜୀମାନେ ଆମଷ୍ଟରଡାମ୍‌ରେ ଜିଉମାନଙ୍କୁ ବଳପୂର୍ବକ ବନ୍ଦୀ କରି ଜାର୍ମାନକୁ ଶାସ୍ତି ନିମନ୍ତେ ପଠାନ୍ତି। ଅଟୋଫ୍ରାଙ୍କ୍ ନିଜ ବ୍ୟବସାୟ କେନ୍ଦ୍ର ବନ୍ଦ କରି ଦିଅନ୍ତି ଓ ବେପାରର ଦାୟିତ୍ୱ ଜଣେ ବିଶ୍ୱସ୍ତ ଡଚ୍ ବନ୍ଧୁଙ୍କୁ ହସ୍ତାନ୍ତର କରନ୍ତି। ଫ୍ରାଙ୍କ୍ ପରିବାରର ଲୁଚିବା ପାଇଁ ଡଚ୍ ବନ୍ଧୁଗଣ ପ୍ରିନ୍‌ସେନ୍‌ଗାଚ୍ କେନାଲ ପାଖରେ ତାଙ୍କ ଗୋଦାମ ତଳେ ଏକ ବଡ଼ ମାଟିତଳ ଗୃହ ନିର୍ମାଣ କରନ୍ତି ଓ ସେଠାକୁ ପରିବାରଟିକୁ ଏକ ନିଶାର୍ଦ୍ଧରେ ସ୍ଥାନାନ୍ତର କରନ୍ତି। ୧୯୪୨ ମସିହାର ଜୁଲାଇ ୫ ତାରିଖରେ ଆନୀର ବଡ଼ ଭଉଣୀ ଷୋଡ଼ଶୀ ମାର୍‌ଗଟ୍‌ଙ୍କୁ ଦେଶ ଛାଡ଼ି ଚାଲିଯିବାକୁ ସ୍କୁଲରେ ନୋଟିସ୍ ଦିଆହୁଏ। ତହିଁ ପରଦିନ ଅଟୋଫ୍ରାଙ୍କ୍‌ଙ୍କ ପରିବାର କେନାଲ ପାଖ ସେ ଗୁପ୍ତ ସ୍ଥାନକୁ ଚାଲିଯାଆନ୍ତି। ଅଟୋ ସେହିଦିନରୁ ଆଉ ଅଫିସ କାମକୁ ଯାଆନ୍ତି ନାହିଁ। ପାଣ୍ଡବ ଜତୁଗୃହରେ ରହିବା ପରି ସେମାନେ ସେଇ ଗୁପ୍ତ ଗୃହରେ ଲୁଚି ରହନ୍ତି। ନିଶାର୍ଦ୍ଧରେ ମାଟି ଉପରର ଗୋଦାମ୍ ଘର ଜନଶୂନ୍ୟ ଓ ନିରୋଳା ହେବା ପରେ ଅତି ସତର୍କତା ସହିତ କେହି କେବେ ବାହାରକୁ ଆସିଥାନ୍ତି। ଅଟୋଫ୍ରାଙ୍କ୍‌ଙ୍କ ପରିବାରର ବଳକା ରୁମ୍‌ରେ କେତେ ଦିନ ପରେ ତାଙ୍କ ବ୍ୟବସାୟର ସହଯୋଗୀ ଭାନ୍‌ଡାନ୍, ତାଙ୍କ ଧର୍ମପତ୍ନୀ ଓ ପୁତ୍ର ପିଟର୍ ଆସି ରହନ୍ତି। ପରେ ଅନ୍ୟ ଜଣେ ଇହୁଦୀ ଦାନ୍ତ ଡାକ୍ତର ଆର୍ଲବଟ୍ ଡାସେଲ ଏକାକୀ ଆସି ପାଖ ରୁମ୍‌ରେ ରହନ୍ତି।

୧୯୪୪ ମସିହା ଅଗଷ୍ଟ ମାସରେ କୌଣସି ଜଣେ ଡଚ୍ ଗୁପ୍ତଚରର ରିପୋର୍ଟ ଫଳରେ ଜାର୍ମାନୀ ଗୋଇନ୍ଦା ପୋଲିସ 'ଗେଷ୍ଟାପୋ' ସେଇ ଗୁପ୍ତଗୃହର ଆବିଷ୍କାର କରେ ଓ ସେମାନଙ୍କୁ ଏକ ବିଦେଶୀ ଟ୍ରେନ୍‌ରେ ବଳପୂର୍ବକ ଏସ୍‌ଟ୍ୟୁଟ୍‌କୁ ପଠାଇ ଦିଆଯାଏ। ଏସ୍‌ଟ୍ୟୁଟ୍ ପୋଲାଣ୍ଡ୍‌ରେ ନାଜୀର ଏକ ଅନ୍ଧକୂପ ପରି ଜେଲ୍ ଯେଉଁଠି ପ୍ରତି ନିୟତ ଶହଶହ ବିପ୍ଳବୀ କମ୍ୟୁନିଷ୍ଟ ଓ ଇହୁଦୀଙ୍କୁ ବିଷଗ୍ୟାସ ପ୍ରୟୋଗ କରି ହତ୍ୟା କରାଯାଏ। ଏସ୍‌ଟ୍ୟୁଟ୍‌କୁ "ପ୍ରଳୟ ଗର୍ଭ" ବହିରେ ଗୁରୁଚରଣ ପଟ୍ଟନାୟକ ଏକ 'ସୁସଂଗଠିତ ଅତ୍ୟାଚାରର ନର୍କ' ବୋଲି ଲେଖିଛନ୍ତି। ବନ୍ଦୀମାନଙ୍କୁ ପରଶା ଯାଉଥିବା ଖାଦ୍ୟ ସେ ଜେଲ୍‌ରେ ଥିଲା ଗୋଖାଦ୍ୟ ଠାରୁ ନିକୃଷ୍ଟତର। ଆନ୍ନୀ ସେଇ ନାରକୀୟ ପରିବେଶରେ ତଥାପି ନିଜ ବ୍ୟାରାକ୍‌କୁ ପରିଷ୍କାର ପରିଚ୍ଛନ୍ନ ରଖିଥାଏ। ପ୍ରତିଦିନ ସକାଳେ ସନ୍ଧ୍ୟାରେ ବ୍ୟାରାକ୍ ଗୁଡ଼ିକରୁ ଦଳ ଦଳ ଲୋକଙ୍କୁ ପିଟି ପିଟି ଯାତନା ଶିବିରକୁ ନିଆଯାଏ। ଯେଉଁମାନଙ୍କୁ

ଗ୍ୟାସ୍ ଚେମ୍ବରରେ ଭରି ଦିଆଯାଏ ସେମାନେ ଆଉ ଫେରନ୍ତି ନାହିଁ । ତଥାପି ପ୍ରତିଦିନ ବନ୍ଦୀମାନଙ୍କର ଉପସ୍ଥାପନା ନିଆଯାଏ । କେହି କିଛି ମନ୍ତବ୍ୟ ଦେଲେ ସଙ୍ଗେ ସଙ୍ଗେ ତାକୁ ଅସହ୍ୟ ବେତ୍ରାଘାତ କରାଯାଏ ବା ଗଣ୍ଡଗୋଳକାରୀକୁ କୋଠା ଉପରେ ହାଇ ଆଲାର୍ଟରେ ଥିବା ପୋଲିସ୍ ଗୁଳି କରି ଚିରଦିନ ପାଇଁ ଚୁପ୍ କରିଦିଏ । ସେଠାରୁ ତାରବାଡ଼ ଡେଇଁ ପଳାଇ ଯିବାର ଜୁ' ନ ଥାଏ କାହାର - ନିଷେଧାଜ୍ଞା ସ୍ୱରୂପ ତାରବାଡ଼କୁ ସଦା ସର୍ବଦା ହାଇଭଲଟେଜ୍ ଇଲେକ୍ଟ୍ରିସିଟିରେ ଚାର୍ଯ କରିଦିଆ ଯାଇଥାଏ ।

ଅଟୋଫ୍ରାଙ୍କ୍‌କୁ ତାଙ୍କ ଜାତି ଭାଇମାନଙ୍କୁ ଚିହ୍ନଟ କରିବା ନିମନ୍ତେ ବନ୍ଦୀ ଅବସ୍ଥାରେ ଜର୍ମାନ୍ ଫେରାଇ ନିଆଯାଏ । ସେଠାରେ ସେ ଜେଲ୍‌ରେ ଅବସ୍ଥାନ କାଳରେ ଜାର୍ମାନ୍ ବିଶ୍ୱ ଯୁଦ୍ଧରେ ପରାଜିତ ହେବାର ଦେଖନ୍ତି ଓ ପରେ ମୁକ୍ତି ଲାଭ କରନ୍ତି । କିନ୍ତୁ ଅନ୍ୟ ପକ୍ଷେ ଏସ୍‌ଟ୍ୟୁଟ୍ ଜେଲରେ ଇତି ମଧ୍ୟରେ ଭାନ୍‌ଡାନ୍‌ଙ୍କ ପରିବାରକୁ ଗ୍ୟାସ୍ ଚେମ୍ବରକୁ ନେଇ ହତ୍ୟା କରାଯାଇଥାଏ। ଇହୁଦୀ ଦନ୍ତ ଚିକିତ୍ସକ ଡାସେଲ ଅସୁସ୍ଥ ହୋଇ ଜାର୍ମାନକୁ ଚିକିତ୍ସା ପାଇଁ ଫେରି ସେଠାରେ ଏକ ହସ୍‌ପିଟାଲ୍‌ରେ ମୃତ୍ୟୁ ବରଣ କରନ୍ତି । ୧୯୪୫ ମସିହାର ଅଗଷ୍ଟ ମାସରେ ଆନୀର ପ୍ରେମିକ ପିଟର୍‌କୁ ଜାର୍ମାନୀ ଗୁପ୍ତ ପୋଲିସ ପଶ୍ଚିମ ଜାର୍ମାନ୍‌କୁ ଆଉ କେତେକ ବନ୍ଦୀ ସହ ଚଲାଇ ଚଲାଇ ନେଇଯାନ୍ତି ଓ ପରେ ତାଙ୍କ ଖବର ମିଳେନା । ୧୯୪୫ ମସିହା ମାର୍ଚ୍ଚ ମାସରେ ଆନୀକୁ ବେଲସନ୍ ଜେଲ୍‌କୁ ସ୍ଥାନାନ୍ତର କରାଯାଏ ।

ବେଲ୍‌ସନ୍ ଜେଲ୍‌ରେ ଆନୀ ସହ ଦେଖାହୁଏ ତାହାର ଇହୁଦୀ ସହପାଠୀ ଲାୟୀ ସହିତ। ଲାୟୀ ଜୀବିତାବସ୍ଥାରେ ଯେତେବେଳେ ହଲାଣ୍ଡକୁ ଫେରନ୍ତି, ସେତେବେଳର ସେ ଆନୀର ଦୁଃସ୍ଥ ପୋଷାକ ଓ ଚେହେରା କଥା ମନେ ପକାଇ କହନ୍ତି - 'ଆନୀର ଡ଼ାକ ଶୁଣିପାରି ମୁଁ ଜେଲ୍‌ର ସେ ପଟର ତାରବାଡ଼ ପାଖକୁ ଚାଲିଯାଏ । ଆନୀକୁ ମୁଁ ଭଲକରି ଚିହ୍ନିପାରେ । ଆନୀ ପିନ୍ଧିଥାଏ ଛିଣ୍ଡା ପୋଷାକ । ମାର୍‌ଗୋଟ୍ ଅନ୍ୟ ଏକ ସେଲ୍‌ରେ ପୀଡ଼ିତା ଥିବାର ତା'ଠାରୁ ଶୁଣେ। ଭାରି ଦୁଃଖ ଲାଗେ । ମାର୍‌ଗୋଟ୍ ପରବର୍ତ୍ତୀ ମାସରେ ବେଲ୍‌ସନ୍ ଜେଲରେ ମୃତ୍ୟୁବରଣ କରେ। ମୃତ୍ୟୁ ଖବର ପାଇ ଆନୀ ଦୁଃଖରେ କାନ୍ଦେ । ତହିଁ ପରଦିନ ରାତିରେ ସେ ଶାନ୍ତିରେ ଶେଷ ନିଃଶ୍ୱାସ ତ୍ୟାଗ କରେ ।

୧୯୪୫ ମସିହାରେ ମେ' ମାସରେ ଅଟୋଫ୍ରାଙ୍କ ସ୍ୱାଧୀନ ଜାର୍ମାନକୁ ଫେରି ଆମଷ୍ଟରଡାମ୍ ଯାତ୍ରା କରନ୍ତି । ଡ଼ଚ୍ ବ୍ୟବସାୟୀ ବନ୍ଧୁ ଅଟୋଙ୍କୁ ତାଙ୍କ' ଝିଅ ଆନୀର ହାତ ଲେଖା ଡ଼ାଏରୀଟି ଦିଅନ୍ତି । ସେଇଟି ଗୁପ୍ତ ସୁଡ଼ଙ୍ଗରେ ଜାର୍ମାନୀ ଗୁପ୍ତଚର ଅବହେଳିତ ଅବସ୍ଥାରେ ଫିଙ୍ଗି ଦେଇ ଯାଇଥିଲା ବୋଲି ସେ କହନ୍ତି । ଏ ଡ଼ାଏରୀ ଆନୀର ମନସ୍ତତ୍ୱ ଓ ବିଶ୍ୱ ଦୃଷ୍ଟିଭଙ୍ଗୀର ପ୍ରକୋଷ୍ଠ ଭିତରକୁ ଖୋଲି ଦିଏ ନୂଆ ଏକ ଗବାକ୍ଷ ।

ନିଜ ଆଦ୍ୟ ଯୌବନରେ ପ୍ରେମର ଅଙ୍କୁରୋଦ୍‌ଗମ ଓ ପ୍ରଣୟ ବଲ୍ଲରୀର କ୍ରମାଗତ ଅଭିବୃଦ୍ଧିର ଖବର, ନିଜ ପିତାମାତା ଓ ଆତ୍ମୀୟଙ୍କ ସଂପର୍କରେ ଟିକିନିଖି ତଥ୍ୟ, ସମକାଳୀନ ସମାଜର ଚିତ୍ର ବିଶେଷତଃ ଅର୍ଥନୀତି ବିଷୟରେ ସମ୍ୟକ୍ ସୂଚନା, ହିଟ୍‌ଲରୀ ଯାତନାର ଜତୁଗୃହ - କନ୍‌ସେନ୍‌ଟ୍ରେସନ୍ କାମ୍ପ୍ ବିଷୟରେ ମଂଜଥରା ଖବର, ନିଜର ନିଃସଂଗତା ବା ଏକାକୀତ୍ୱବୋଧର ଅନୁଭବ, ନିଜ ତଥା ନିଜ ଜାତିର ସ୍ୱାଧୀନତା ପ୍ରତି ଅଦମ୍ୟ ଆକାଂକ୍ଷା ଓ ବ୍ୟାକୁଳତା, ସର୍ବୋପରି ଭୟାବହ ମହାଦେଶୀୟ ମହାଯୁଦ୍ଧ ବିରୁଦ୍ଧରେ ନୀରବ ପ୍ରତିବାଦ ପରି ଅନେକ ଅଙ୍ଗେନିଭା ଅନୁଭୂତି ଓ ଖବର ଆନୀର ଏ ଡ଼ାଏରୀର ବିଶେଷତ୍ୱ ।

କୈଶୋରରୁ ଯୌବନାବସ୍ଥାକୁ ଡ଼େଇଁବା ବେଳେ ଆନୀର ଏ ଡ଼ାଏରୀ ଲିଖିତ । ନିଜ ଦେହର ଗଠନରେ ଭୌଗଳିକ ପରିବର୍ତ୍ତନ ଓ ତା' ସହ ମାନସିକ ଅବସ୍ଥାର ଘୋରତର ପରିବର୍ତ୍ତନ ଆନୀର ବ୍ୟକ୍ତିଗତ ଜୀବନରେ ପ୍ରବଳ ଛାପ ପକାଇଛି । ସେଇ ଅନୁସାରେ ଚିନ୍ତା ଓ ଚେତନାରେ ତାର ଆସିଛି ପରିବର୍ତ୍ତନ । ପ୍ରତି ମାସ ଋତୁସ୍ରାବ ଯଦିଓ ତାକୁ ଘୃଣ୍ୟ ଓ ଅପରିଚ୍ଛନ୍ନତାବୋଧରେ ଘାରି ଦେଇଛି, ତଥାପି ତାହା ଆନୀ ମଧ୍ୟରେ ଆଣିଛି ତୀବ୍ର ଏକ ନବାନୁଭୂତି । ଏହା ତା'ପକ୍ଷରେ ଅନୁଭୂତ ହୋଇଛି ଏକ ମଧୁର ସୁଖପରି। ସେହିପରି ଯୌବନାବସ୍ଥାକୁ ଯିବାବେଳର ଅନୁଭବ ହେଉଛି - That a girl in the years of puberty becomes quiet within and begins to think about the wonders that are happening to her body" (The diary of a young girl - P- 130) ଗୁପ୍ତ ଗୃହରେ ରହୁଥିବା ଭାନ୍‌ଡ଼ାନ୍ ଦଂପତିଙ୍କର ୧୬ ବର୍ଷର ପୁଅ ପିଟର୍‌କୁ ଆନୀ ପ୍ରେମ କରେ । ପିଟର୍ ତାକୁ ପ୍ରେମ ନିବେଦନ କରିବା ପୂର୍ବରୁ ତା' ମନରେ ଯୌନ ବିଷୟକ ଭାବବୋଧ ଜାଗ୍ରତ କରିବା ପାଇଁ ପାଖ ଗୋଦାମ୍ ଘରେ ଗୋଟିଏ ଅଣ୍ଡିରା ବିଲେଇକୁ ଦେଖାଇ ତାହାର ପୁରୁଷାଙ୍ଗ ବିଷୟରେ ବର୍ଣ୍ଣନାର ଆଶ୍ରୟ ନିଏ । ନିଭୃତ ଗୋଦାମର ବାରଣ୍ଡାରେ "ଗୋଟେ ମଜାର ଜିନିଷ ଦେଖିବୁ ଆ" କହି ପିଟର୍ ହଠାତ୍ ଅଣ୍ଡିରା ବିଲେଇକୁ ଓଲଟାଇ ଧରେ । ବିଲେଇର ପଞ୍ଝାଗୁଡ଼ିକ ଉପରକୁ ହୋଇ ରହେ । ସେ ଭୂଗୋଳ ଶିକ୍ଷକଟିଏ ପରି ଦର୍ଶାଇ ଚାଲେ - ଏଇଟା ପୁରୁଷର ଯୌନାଂଗ । ଦେଖ ଏହାର ଚାରିପଟେ କେତେଟା ନାମୀଦାମୀ ବାଳ ଉଠିଛି । ଏଇଟା ଦେଖ ତାହାର କୋଷ ।" ଅଣ୍ଡିରା ବିଲେଇଟିକୁ ଛାଡ଼ିଦେବାକ୍ଷଣି ସେ ଅସ୍ୱସ୍ତିରୁ ମୁକ୍ତି ପାଇ ସିଧା ହୋଇ ଠିଆ ହୁଏ । ଘୁମ୍ ଭାଙ୍ଗେ । ପିଟର୍ କଥାରେ କୌଣସି ଖରାପ ଇଙ୍ଗିତ ଓ ଅଶାଳୀନତା ଥିବାର ଦେଖି ପାରେନା ଆନୀ । ପିଟର୍ ଏ ଘଟଣାର ଭାବାବେଗରେ ଦୋହଲି ନ ଯାଇ ସ୍ୱାଭାବିକ ଥାଏ । (୨୪-୧-୧୯୪୪ର ଡ଼ାଏରୀର ବର୍ଣ୍ଣନାରୁ ଗୃହୀତ) ।

ଆସ୍ତେ ଆସ୍ତେ ପିଟର୍ ଆନୀକୁ ଆଚ୍ଛନ୍ନ କରି ବସେ । ୧୯୪୪ ମସିହା ଫେବୃଆରୀ ୨୭ ତାରିଖ ବେଳକୁ ଦିବାରାତ୍ର ପିଟର୍‌ର ସ୍ମୃତି ଓ ସାହାଚର୍ଯ୍ୟ ଆନୀକୁ ଘାରି ରଖିଥାଏ । ଫେବୃଆରୀ ୨୭ର ଡ଼ାଏରୀ ଆନୀ ଆରମ୍ଭ କରେ ଏଇପରି - "ସକାଳଠାରୁ ମଧ୍ୟରାତ୍ରୀର ଶୋଇବାକୁ ଯିବା ପର୍ଯ୍ୟନ୍ତ ଅହରହ ପିଟର୍ ମୋର ସ୍ମୃତିରେ, ପିଟର୍ ମୋର ଅନୁଭୂତିରେ ମୋର ଅନ୍ତରରେ ପୁଣି

ବାହାରେ ବ୍ୟାପ୍ତ ହୋଇ ରହିଛି । ସବୁ କାମ ଛାଡ଼ି ମୁଁ ତା'ରି ବିଷୟ ହିଁ ଭାବିବସେ । ମୁଁ ଶୋଇବାକୁ ଯିବାବେଳେ ପଲକ ମଧ୍ୟରେ ତାକୁ ହିଁ ଲୁଚାଇ ନିଏ । ସପ୍ନରେ ତାକୁ ଦେଖେ ଏବଂ ନିଦରୁ ଜାଗି ଉଠିବାବେଳେ ପିଟର୍‌କୁ ହିଁ ମୋ ସାମ୍ନାରେ ଅନୁଭବ କରେ । ପିଟର୍ ମୋଠାରୁ ଭିନ୍ନ ନୁହେଁ । ସେ ଅଛି ମୋ ଭିତରେ ଆଉ ମୁଁ ଥାଏ ତା' ଭିତରେ ।"

ପ୍ରେମର ପ୍ରଥମ ସୋପାନରେ ଏଇ ଭାବନା ସବୁ ଆନୀର ବ୍ୟକ୍ତିଗତ ଓ ଗୁପ୍ତ ବ୍ୟାପାର ଥିଲା। ପିଟର୍‌ର ବାରମ୍ବାର ସାନ୍ନିଧ୍ୟ ଓ ତା' ସହ ପ୍ରେମାସ୍ପଦ କଥାବାର୍ତ୍ତା ଯୋଗୁଁ ପ୍ରେମ ଯେତେବେଳେ ଗଭୀର ହୁଏ, ସେତେବେଳେ ଆନୀ ମନରେ ସାହସ ସୃଷ୍ଟି ହୁଏ । ସେ ତା'ର ଡ଼ାଏରୀରେ "ପିଟର ହିଁ କେବଳ ମୋର" ବୋଲି ଘୋଷଣା କରେ । ଛୋଟ ପରିସର ବିଶିଷ୍ଟ ସେ ଗୁପ୍ତଗୃହରେ ଥାଏ ଏକ ଝରକା କେନାଲ ପାଖ ଟନେଲ୍ ଆଡ଼କୁ । ସେଇ ଝରକା ପାଖଟି ଏକ ନିଭୃତ ଥାନ ବୋଲି ଦୁହେଁ ନିର୍ଣ୍ଣୟ କରନ୍ତି । ସେଇଠି ଦୁଇଟି ହସ୍ତହୀନ ଚେୟାର ପକାଇ ଆନୀ ଓ ପିଟର୍ ସକାଳ ସଂଧ୍ୟା ବସନ୍ତି ଓ ଗପସପ କରନ୍ତି ।

୧୯୪୪ ମସିହା ଏପ୍ରିଲ୍ ୧୬ ତାରିଖ ଏକ ରବିବାର ଥାଏ । ସକାଳ ବୈଠକରେ ପିଟର୍ ଆନୀକୁ ତା'ର ଛାତିକୁ ଟାଣି ଆଣେ । ବିନା ପ୍ରତିବାଦରେ ପିୟାସୀ ଆନୀ ପିଟର୍‌ର ଦେହକୁ ଲାଗିଯାଏ । ପିଟର୍ ଆଲିଙ୍ଗନରେ ଥାଏ ଶକ୍ତି ଓ ପୁରୁଷତ୍ୱ। ସେ ଆନୀର ମଥାକୁ ନିଜ କାନ୍ଧରେ ଥୁଏ ଏବଂ ନିଜ ମଥା ଥୁଏ ଆନୀର ଅନ୍ୟପଟ କାନ୍ଧରେ। ସେ ଅନୁକ୍ଷଣ ଆନୀର କୁନ୍ତଳକୁ ସାଉଁଳାଏ ଓ ଓଠକୁ ସ୍ପର୍ଶ କରେ। ଅନେକ ସମୟ ବାହୁ ବନ୍ଧନରେ ଟୋଳି ଧରି ସେ ଆନୀର ଦେହ ସହ ଖେଳେ। ଓଠରେ ତାହାର ହସର ସହର ବସିଯାଏ। ଏଇ ମିଳିତ ଅବସ୍ଥାରେ ଯୁଗ ଯୁଗ ରହିବାକୁ ଆନୀ ଈଶ୍ୱରଙ୍କୁ ମନେ ମନେ ପ୍ରାର୍ଥନା କରେ। ବସ୍ତୁତଃ ଏଇ ଘଟଣା ଆନୀର ପିଟର୍ ସହିତ ପ୍ରଥମ ମିଳନର ସଜଳ ଚିତ୍ର ଟୋଳି ଧରେ। ମିଳନାନ୍ତେ ପିଟର୍ ଅଜସ୍ର ଚୁମାରେ ଆନୀର କୁସୁମିତ ଗଣ୍ଡକୁ ଛାଇ ଦିଏ। ଆନୀ ଅନେକ ସପ୍ନର ପୂର୍ଣ୍ଣତା ପ୍ରାପ୍ତିକୁ ସାମ୍ନା ନକରିପାରି ସେଠାରୁ ତୁରନ୍ତ ପଳାୟନ କରେ।

ପ୍ରେମ ପ୍ରଗାଢ଼ ହୋଇ ଆନୀକୁ ଅଭିଷିକ୍ତ କରେ ପିଟର୍‌ର ହୃଦୟେଶ୍ୱରୀ ରୂପରେ। ପିଟର୍‌କୁ ଲୋଡ଼ିବାପଣର ଏଇଠି ହୁଏ ସମାପ୍ତି। ଜଣେ ସାଙ୍ଗ ହିସାବରେ, ପାର୍ଟନର୍ ହିସାବରେ କ୍ରମେ କ୍ରମେ ସେ ପିଟର୍‌କୁ ପାଏ। ପ୍ରେମରେ ପିଟର୍ ଅବଶ୍ୟ ଆନୀ ପରି ଏତେ ସକ୍ରିୟ ନଥାଏ। ତେଣୁ ଆନୀ ଭାବେ ସେ ପିଟର୍‌କୁ ଜିଣି କରି ପାଖକୁ ଆଣିଛି ଓ ନିଜର କରିଛି। ବାପା ଯଦିଓ ଆନୀର ପ୍ରିୟ ପୁରୁଷ ଥିଲେ, ତଥାପି ୧୯୪୪ ମସିହା ଏପ୍ରିଲ୍ ପନ୍ଦର ବେଳକୁ ପିଟର୍ ସେଇ ସ୍ଥାନରେ ଆସୀନ ହୋଇଛନ୍ତି। ଏବେ ଶୟନେ ସପନେ ଓ ଜାଗରଣରେ ସବୁବେଳେ ଆନୀ ପାଖରେ ଥାଏ ପିଟର୍। ପିଟର୍ ହିଁ ତା'ର ହୋଇଯାଏ ପ୍ରାଣବାୟୁ ପରି ଅପରିହାର୍ଯ୍ୟ। ୧୯୪୫ ମସିହା ଅଗଷ୍ଟ ମାସରେ ପିଟର୍‌କୁ ଜର୍ମାନ୍ ସୈନ୍ୟମାନେ ଆନୀର ଦୃଷ୍ଟିର ଆଢୁଆଳକୁ ନେଇଯାନ୍ତି ତାହାର ସ୍ଥାନାନ୍ତରୀକରଣ ମାଧ୍ୟମରେ।

ଆନୀର ଅନେକ ବିଚାରଧାରା ତା'ର ବାପାଙ୍କ ସହିତ ମେଳ ଖାଉଥିବାରୁ ସେ ମାନସିକ ଭାବେ ବାପାଙ୍କ ସନ୍ନିକଟ ଥିଲା। ମା'ଙ୍କୁ ଯଦିଓ ପିଟରର ଭଲପାଇବା ବିଷୟରେ ସେ କହିଛି, ସେ ଏଥିପ୍ରତି ଏତେ ଗୁରୁତ୍ୱ ଦେଇ ନଥାନ୍ତି। ବସା ଉଠା କରିବା ପାଇଁ ଉତ୍ତମ ସ୍ଥାନ ନଥିବାରୁ ବା ଗୁପ୍ତଗୃହର ପରିସର ଅତି କ୍ଷୁଦ୍ର ଥିବାରୁ ଲଭ୍ ମେକିଙ୍ଗ୍ ଦିଗରେ ଅଧିକ ଆଗେଇବାକୁ ରକ୍ଷଣଶୀଳା ମା' ତା'ର ବାରଣ କରନ୍ତି। ମା'ର ହୃଦୟର କୋମଳତାକୁ ଆନୀ କେବେ ଅନୁଭବୀ ପାରିନାହିଁ। ତେଣୁ ସେ ମା'ଠାରୁ ଅନେକ ସମୟରେ ବା ଅନେକ ଘଟଣାରେ ଦୂରେଇ ରହିଛି। I have to be my own mother ବୋଲି ଆନୀ ନଭେମ୍ବର ସାତ ୧୯୪୨ ର ଡାଏରୀରେ ସ୍ଥାନେ ଉଲ୍ଲେଖ କରିଛି। ପରିବାର ଓ ବାହାର ଦୁନିଆଠାରୁ ବିଚ୍ଛିନ୍ନ ହୋଇ ଆନୀ ଏଲିଏନେସନ୍ (alienation) ର ଶୀକାର ହୋଇଛି। ନିଜ ଜେଜେମା' ଏକଦା ଏଇମିତି ନିଃସଙ୍ଗତା ରୋଗରେ ପୀଡ଼ିତା ହୋଇ ଅବହେଳିତା ଅବସ୍ଥାରେ ମୃତ୍ୟୁ ବରଣ କରିଥିବାରୁ ସେ ଶୁଣିଥିଲା। ନିଜ ଜେଜେମା'ଙ୍କ ନିଃସଙ୍ଗତାବୋଧ ବିଷୟରେ ସେ ୧୯୪୩ ମସିହା ଡିସେମ୍ବର ୨୯ର ଡାଏରୀ ପ୍ରସ୍ଥରେ ଲେଖିଛି- "ମୃତ୍ୟୁ ବେଳେ ଜେଜେମା' ନିଜ ମଧରେ ଶୂନ୍ୟତା, ଅସହାୟତାକୁ କେତେ ସାମ୍ନା କରିନଥିବେ! ଆହା, ମରଣ ଶେଯ ପାଖରେ ତା'ର କେହି ନଥିବେ! ସବୁ ଥାଇ ବି ବୁଢ଼ୀର ସେ କାଳରେ କିଛି ହିଁ ନଥିବ! କେତେ ନିଃସ୍ୱ ଭାବେ ସେ ମରିନଥିବେ!" ଜଣେ ଦାର୍ଶନିକ ପରି ଆନୀ ଲେଖିଛି- "ଜଣେ ଲୋକକୁ ସମସ୍ତ ବନ୍ଧୁ, ଆତ୍ମୀୟ ଓ ପରିଜନ ଘେରି ରହିଥିଲେ ମଧ, ତାକୁ ଭଲ ପାଇ ନିରନ୍ତର ପୋତି ଦେଲେ ମଧ, ସେ ନିଜ ମଧରେ ଏକାନ୍ତ ନିଃସ୍ୱ ଓ ନିଃସଙ୍ଗ ଥାଏ। ନିଜ ମଧରେ ସେ ରହିଥାଏ ଏକା ଏକା - ଜୀବନ ପଥରେ ସେ ଚାଲିଥାଏ, ଯଥା - ଏକା ଏକା ବିକ୍ରମାର୍କ।"

ଆନୀ ହୋଇପାରେ ଏକ କମ୍ ବୟସର ଝିଅ। କିନ୍ତୁ ହଲାଣ୍ଡ ଓ ଜନ୍ମଭୂମି ଜାର୍ମାନ୍‌ର ରାଜନୈତିକ, ଆର୍ଥନୀତିକ ତଥା ସାମାଜିକ ପରିବେଶ ତାକୁ ଅନେକ ଶିକ୍ଷା ଦେଇ ପରିଣତ କରିଥିଲା ଏକ ପୋଖତ ମଣିଷରେ। ବିଶେଷତଃ ୟୁରୋପରେ ଇହୁଦୀମାନଙ୍କର ହୀନ ଅବସ୍ଥା ତା'ର ସ୍ଥିତି ଓ ଚେତନାକୁ ଘୋରତର ଭାବେ ଦୋହଲାଇ ଦେଇଥିଲା। ଆନୀର ଜୀବନକାଳରେ "ୟୁରୋପରେ ଜାତିଭିତ୍ତିକ ରାଷ୍ଟ୍ରର ଅଭ୍ୟୁଦୟ ହେଉଥାଏ ଓ କେତେକ କ୍ଷେତ୍ରରେ ଭୌଗଳିକ ରାଷ୍ଟ୍ରୀୟତା ଏଇ ରାଷ୍ଟ୍ର ସଂଗଠନର ଚାବିକାଠି ହୋଇ ଯାଇଥାଏ। ଅନ୍ୟ କେଉଁ କ୍ଷେତ୍ରରେ ବହୁ ଲୋକର ଭାଷା ଏକ ହେଲେ ମଧ ତାଙ୍କ ପାଇଁ ଗଠିତ ହୋଇ ପାରୁନଥାଏ ଭିନ୍ନ ରାଷ୍ଟ୍ର ଗୋଟିଏ। ଇହୁଦୀମାନଙ୍କର ସମସ୍ୟା ଏଇପରି ଥିଲା। ସାରା ୟୁରୋପରେ ଦେଶେ ଦେଶେ ବିଛାଡ଼ି ହୋଇ ବସବାସ କରୁଥିବା ଜୀଉମାନେ ହିବ୍ରୁ ଭାଷା ବ୍ୟବହାର କରୁଥିଲେ ମଧ କୌଣସି ସ୍ଥାନରେ ସେମାନଙ୍କ ରାଷ୍ଟ୍ର ଗଠନ କରିପାରୁନଥିଲେ। ବାଣିଜ୍ୟ କ୍ଷେତ୍ରରେ ବା ଶିଳ୍ପ କାରଖାନା ଗଢ଼ି ଓ ତାହାର ସୁପରିଚାଳନା କରି ଇହୁଦୀ ମାନେ ନିଜେ ବସବାସ କରୁଥିବା ଦେଶର ଆର୍ଥନୀତିକ ପ୍ରଗତି ପଥରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କଲେ ମଧ, ସେଇ ଦେଶର ଖ୍ରୀଷ୍ଟିୟାନଙ୍କ ଦ୍ୱାରା ସେମାନେ ବିଶେଷ ଘୃଣିତ ହେଉଥିଲେ। ହିବ୍ରୁ ଭାଷାକୁ ଇହୁଦୀର ଜାତୀୟ ଭାଷା କରିବା ପାଇଁ ୧୮୯୪ ମସିହାରେ ଇହୁଦୀ ଜାତିର ତ୍ରାଣକର୍ତ୍ତା ଥିଓଡ଼ର୍ ହାର୍ଜେଲ୍ ଆନ୍ଦୋଳନ ଆରମ୍ଭ କରନ୍ତି

ଜର୍ମାନ୍‌ରେ। ଇସ୍ରାଏଲ୍‌କୁ ନିଜ ପିତୃଭୂମି କରିବାକୁ ସେ ନିଜ ସୃଷ୍ଟି ଆନ୍ଦୋଳନ (Zionigt movement ) ମାଧ୍ୟମରେ ଦାବୀ କରନ୍ତି। (ଦ୍ରଷ୍ଟବ୍ୟ- ସମୟ ଅସମୟ-ଲେଖକଙ୍କ ୨୦୦୭ରେ ପ୍ରକାଶିତ ପୁସ୍ତକ-ପୃ.୩୬)। ଜାର୍ମାନର ଦକ୍ଷିଣପନ୍ଥୀ ପ୍ରତିକ୍ରିୟାଶୀଳ ରାଜନେତାଗଣ ଏ ଆନ୍ଦୋଳନକୁ ପ୍ରବଳ ଭାବେ ବିରୋଧ କରନ୍ତି। ୧୯୭୦ରେ ଗଠିତ "ଉଇମାର୍" ସାଧାରଣତାନ୍ତ୍ରିକ ଜାର୍ମାନ୍‌ରେ ଜୀଉମାନଙ୍କ ସ୍ଥାନ ନାହିଁ ବୋଲି National Socialist German Workers Party ବା, ନାଜୀ ପାର୍ଟିର ମୁଖ୍ୟ ଏଡ୍‌ଲଫ୍ ହିଟଲର୍ ପ୍ରକାଶ କରନ୍ତି। ହିଟଲର୍ ଜାର୍ମାନ ଜାତିକୁ ଶ୍ରେଷ୍ଠ ଆର୍ଯ୍ୟ ବଂଶୋଦ୍‌ଭବ ବୋଲି ଘୋଷଣା କରନ୍ତି। ଜୀଉମାନେ ଅସଭ୍ୟ ଓ ବର୍ବର ବୋଲି ସେ ଘୋଷଣା କରନ୍ତି। ଆର୍ଥନୀତିକ ଦିଗରୁ ସେମାନେ ଜାର୍ମାନକୁ ଶୋଷଣ କରିଛନ୍ତି କାରଣ ଏ ଦେଶରେ ପ୍ରାରମ୍ଭିକ ସୋପାନରେ ସେମାନେ ବ୍ୟବସାୟ କରି ଅଭିବୃଦ୍ଧି ସୋପାନରେ ଦେଶାନ୍ତର ଗମନ କରିଥାନ୍ତି ଓ ପୁଞ୍ଜିକୁ ସ୍ଥାନାନ୍ତର ମଧ କରନ୍ତି। ଶ୍ରମିକ ମାନଙ୍କୁ ମତାଇ ଦେଶର କଳକାରଖାନାରେ ଧର୍ମଘଟ ଭିଆଇ ସେହିପରି ସୋସିଆଲଡ଼େମୋକ୍ରାଟ୍ ଓ କମ୍ୟୁନିଷ୍ଟମାନେ ଦେଶର ଆର୍ଥନୀତିକ ବିକାଶରେ ଅନ୍ତରାୟ ସୃଷ୍ଟି କରନ୍ତି। ଇହୁଦୀ ନିଧନ ଓ କମ୍ୟୁନିଷ୍ଟ୍ ମାରଣକୁ ହିଟଲର୍ ନିଜ ଦଳର ମୁଖ୍ୟ ନୀତି ବୋଲି ଘୋଷଣା କରି ଜାର୍ମାନକୁ ଏକନାୟକୀୟ ରାଷ୍ଟ୍ରରେ ପରିଣତ କରନ୍ତି। ଆର୍ଯ୍ୟର ଶ୍ରେଷ୍ଠତ୍ୱ ଜାହିର୍ କରିବା ତାଙ୍କର ଏକମାତ୍ର ସ୍ଲୋଗାନ୍ ହୁଏ। ୟୁରୋପର ଅନ୍ୟାନ୍ୟ ଦେଶକୁ ପଦାନତ କରି ଏହି ଶ୍ରେଷ୍ଠତ୍ୱର ବାନା ଦିଗେ ଦିଗେ ଉଡ଼ାଇବା ପାଇଁ ସେ ୧୯୩୯ରେ ପଡ଼ୋଶୀ ପୋଲାଣ୍ଡ ଓ ହଲାଣ୍ଡ ଆକ୍ରମଣ କରନ୍ତି।

ଗୁପ୍ତ ଗୃହାଙ୍ଗନକୁ ଅତ୍ୟାଚାରୀ ହିଟଲର୍‌ର ଇହୁଦୀ ନିଧନ ଖବର ରେଡ଼ିଓରେ ସମ୍ବାଦ ଓ ଆଲୋଚନା ମାଧ୍ୟମରେ ଆସିଥାଏ। ହଲାଣ୍ଡର ଗ୍ରାମେ ଗ୍ରାମେ ନଗରେ ନଗରେ ନାଜୀ ଗୁପ୍ତଚର ଓ ଗେଷ୍ଟାପୋ ଘୁରିବୁଲେ ଇହୁଦୀଙ୍କୁ ଧରିବା ନିମନ୍ତେ। ବୁଢ଼ାହଡ଼ା ବଳଦଙ୍କୁ କଂସେଇଶାଳାକୁ ଘାତକ ନେଇ ଯିବା ପରି ଜୀଉମାନଙ୍କୁ ତଡ଼ି ନେଉଥିଲେ ଜାର୍ମାନର ପୋଲିସ୍। ଆମଷ୍ଟରଡାମ୍‌ର ତିନୋଟି କଂସେଇଶାଳା ଏ କାର୍ଯ୍ୟ ତୁଲେଇ ନ ପାରିବାରୁ ଆନୀର ପରିବାରକୁ ପୋଲାଣ୍ଡର କୁଖ୍ୟାତ ଯାତନା କେନ୍ଦ୍ର ଏସ୍‌ଚ୍ୟୁଟ୍‌କୁ ପଠାଯାଏ। ୧୯୪୩ର ଏପ୍ରିଲ ମାସ ସମଗ୍ର ଜାର୍ମାନରେ କମ୍ବିଂ ଅପରେସନ୍ କରି ଇହୁଦୀଙ୍କୁ ଧରାଯାଏ ଓ ସମସ୍ତଙ୍କୁ ଯାତନା ଶିବିରରେ ମରା ସରିଥାଏ। ଦକ୍ଷିଣ ହଲାଣ୍ଡରେ ଏ କାର୍ଯ୍ୟ ପରବର୍ତ୍ତୀ ପକ୍ଷରେ ସରିଥାଏ।

୧୯୪୩ ମସିହା ନଭେମ୍ବର ମାସରେ ୟୁରୋପ୍‌ରେ ଦ୍ୱିତୀୟ ବିଶ୍ୱଯୁଦ୍ଧର ଗତିପ୍ରକୃତି ବଦଳିଯାଏ। ସୋଭିଏତ୍ ଫଉଜ ଷ୍ଟାଲିନ୍‌ଗ୍ରାଡ୍‌ରୁ ଜାର୍ମାନ୍ ଫଉଜକୁ ବିତାଡ଼ିତ କରନ୍ତି। ତାପରେ ରୁଷିଆର କମ୍ୟୁନିଷ୍ଟ୍ ବାହିନୀ ବିଜୟ ପରେ ବିଜୟ ଘୋଷଣା କରିଚାଲନ୍ତି। ରୁଷିଆ ଛାଡ଼ି ହିଟଲର୍‌ଙ୍କ ସୈନ୍ୟ ପୋଲାଣ୍ଡ ଚେକୋସ୍ଲୋଭିଆ, ଯୁଗୋସ୍ଲୋଭିଆ, ଅଷ୍ଟ୍ରିଆ ଦେଇ ଜାର୍ମାନ୍ ପଳାୟନ କରନ୍ତି। ଜାର୍ମାନ୍‌ର ପଶ୍ଚିମ ପଟ ଇଂଲିଶ୍ ପ୍ରଣାଳୀ ଆଡୁ ଇଂଲଣ୍ଡ ମଧ ଜାର୍ମାନ୍ ଆକ୍ରମଣ କରେ। ହଲାଣ୍ଡ୍‌ରେ ନିଜ ପ୍ରତିଷ୍ଠାକୁ କାଏମ୍ ରଖିବା ପାଇଁ ହିଟ୍‌ଲରଙ୍କ ପାଖରେ ସୈନ୍ୟବଳ ନିଅଣ୍ଟ ପଡ଼େ। ସେ ହଲାଣ୍ଡ

ଛାଡ଼ିବା ପୂର୍ବରୁ ସେ ଦେଶକୁ ଧ୍ୱଂସ କରି ଆସିବାର ଯୋଜନା କରନ୍ତି। ହଲାଣ୍ଡ ଦେଶର ଭୂପୃଷ୍ଠ ସମୁଦ୍ର ପତ୍ତନରୁ ପାଞ୍ଚଫୁଟ ତଳେ ଥିବାର ପାଠକେ ଜାଣନ୍ତି। ଅନନ୍ୟୋପାୟ ହୋଇ ଗେଷ୍ଟାପୋ ଡାଇକ୍ ବା ସମୁଦ୍ର ଆଡ଼ି ବନ୍ଧର ସ୍ଲୁଇସ୍‌ଗେଟ୍ ଗୁଡ଼ିକ ଖୋଲି ଦେଇ ସେ ଦେଶକୁ ଜଳରେ ପ୍ଲାବିତ କରିବାକୁ ମସୁଧା କରନ୍ତି। ଏଇ ପାଶବିକ ମନ୍ତ୍ରଣାର ସୂଚନା ଆନୀର କାନକୁ ଆସିଛି। ସେ ୧୯୪୪ର ଫେବୃଆରୀ ୩ ତାରିଖର ଡାଏରୀରେ ଲେଖିଛି- "ଶୁଣା ଯାଉଛି ଯେ, ହଲାଣ୍ଡକୁ ଇଂଲଣ୍ଡ ମାଡ଼ି ଆସିଲେ ଜାର୍ମାନମାନେ କୁଆଡ଼େ ପଳାୟନ କରିବେ। ବଳ କଷାକଷିରେ ସେମାନେ ଯଦି ପରାସ୍ତ ହୁଅନ୍ତି ତେବେ ସେମାନେ ସମୁଦ୍ର ବନ୍ଧ ଭାଙ୍ଗି ହଲାଣ୍ଡକୁ ଜଳାର୍ଣ୍ଣବ କରିଦେବେ।"

ଦ୍ୱିତୀୟ ପୃଥିବୀ ମହାସମର କାଳରେ ଯୁଦ୍ଧ ପ୍ରଭାବିତ ଅର୍ଥନୀତି ବିଷୟରେ ଆମକୁ ସମ୍ୟକ୍ ସୂଚନା ଦେଇଥିଲା ପ୍ରାଣବନ୍ଧୁ କରଙ୍କ ଓଡ଼ିଆ ଗଳ୍ପ - "ସୁଅ ମୁହଁର ପତର"। ଯୁଦ୍ଧ ସମୟର ଓଡ଼ିଶାର ଗାଁ ଗହଳିରେ ଚାଉଳର ଅଭାବ ଓ ସେଥିରୁ ଜାତ ବୁଭୁକ୍ଷା, ଚିନି, କିରୋସିନିର କଳା ବଜାର ଏବଂ କିଳାପୋଡେଇରେ ଲୁଗାପଟାର ବିକ୍ରି ସାଧାରଣ ଜନଜୀବନକୁ ବିଶେଷ ସନ୍ତାପିତ କରିଥିଲା। ଅପର୍ତ୍ତି ଓ ଗୁରେଇ ତାଙ୍କ ନିତିଦିନିଆ ତେଲ ଲୁଣର ସଂସାରର ଅଭିଜ୍ଞତାରୁ ଯୁଦ୍ଧ ଓ ପରାଧୀନତାକୁ ଏ ଦୁର୍ଦ୍ଦଶା ଓ ଅଭାବ ନିମନ୍ତେ ଦାୟୀ ବୋଲି ଭାବନ୍ତି। ଆନୀ ବି ହଲାଣ୍ଡର ଅର୍ଥନୀତିକୁ ଯୁଦ୍ଧ ଖରାପ ଦିଗରେ ପରିଚାଳନା କରୁଛି ବୋଲି କହିଛି। ଯୁଦ୍ଧ ଆରମ୍ଭରୁ ଯେଉଁ ସ୍କାର୍ଟର ଦାମ୍ ସାଢ଼େସାତ ଫ୍ଲୋରିନ୍ ଥିଲା, ଏଇ କେତେ ମାସ ମଧ୍ୟରେ ତାହା ୨୪ ଫ୍ଲୋରିନ୍ ହୋଇଗଲା। ଆନୀ ଆଶ୍ଚର୍ଯ୍ୟାନ୍ୱିତ ହୋଇ ଲେଖେ-" What a difference compared with before the war, (୧୯୪୨ ଅକ୍ଟୋବର ୧ ତାରିଖର ଡାଏରୀରୁ)

ହଲାଣ୍ଡ କାହିଁକି ସାରା ୟୁରୋପ୍‌ରେ ଚୋରୀ ଡକାୟତି ବଢ଼ି ଯାଇଥିଲା ଯୁଦ୍ଧ କାଳରେ। ନିଜ କାର୍ ଦାଣ୍ଡରେ ଠିଆ କରି ଡାକ୍ତର ଜଣେ ରୋଗୀ ଦେଖିବାକୁ କାହା ଘରେ ଟିକିଏ ବ୍ୟସ୍ତ ରହିଲେ, ଚୋରମାନେ କାରକୁ ଅପହରଣ କରୁଥିଲେ। ଘରେ ଚାବି ଲଗାଇ ଘଣ୍ଟେ ଯଦି ବାହାରକୁ ବୁଲିଯାଅ, ଫେରି ଦେଖିବ ଘର ତାଲା ଭାଙ୍ଗି କିଏ ତୁମ ସର୍ବସ୍ୱ ଲୁଟି ନେଇଛି। ପ୍ରତିଦିନ ଖବର କାଗଜରେ ଏଇ ଛୋଟ ବଡ଼ ଚୋରୀର ଖବର ବହୁଜାଗା ଦଖଲ କରି ବସୁଛି। ଜଣାଯାଉଛି, ଯୁଦ୍ଧକାଳରେ ହଲାଣ୍ଡର ଆବାଳବୃଦ୍ଧ ବନୀତା ସତେ ଯେମିତି ଚୋର ପାଲଟି ଯାଇଛନ୍ତି। (୧୯୪୪ ମସିହା ମାର୍ଚ୍ଚ ୨୯ ତାରିଖର ଡାଏରୀରୁ)

ସେହି ଡାଏରୀ ଅନୁସାରେ ୧୯୪୪ ମସିହା ମେ ୬ ତାରିଖ ବେଳକୁ ହଲାଣ୍ଡ କଳାବଜାରୀ, ଚୋରୀ ଓ ବେଶ୍ୟାବୃତ୍ତିରେ ସୀମା ଲଙ୍ଘନ କରି ସାରିଥାଏ। ପେଟ ପୋଷିବା ପାଇଁ ଦେହ ବିକି କିଛି ଅର୍ଥ ଉପାର୍ଜନ କରିବାକୁ ମନସ୍ଥ କରି ଅନେକ ସଂଭ୍ରାନ୍ତ ପରିବାରର ଝିଅ ଓ ବୋହୂମାନେ ପଦାକୁ ଗୋଡ଼ କାଢୁଛନ୍ତି। ଚୋରୀ ଓ ଲୁଟତରାଜ୍ ସଂଖ୍ୟା ଏତେ ବଢ଼ି ଯାଇଥାଏ ଯେ, ରାତ୍ରି ଜଗୁଆଳ ଓ ପୋଲିସଙ୍କ କାମ ହୋଇଉଠେ ଅତୀବ ଚ୍ୟାଲେଞ୍ଜିଂ। କଳା ବଜାରୀମାନେ

ସେ ଦେଶର ଚଳନ୍ତି ଅର୍ଥନୀତିର ତଣ୍ଟି ଚିପି ତାହାକୁ ହତ୍ୟା କରି ସାରିଥାନ୍ତି। ସାଧାରଣ ହାଟ ଓ ଡେଲି ମାର୍କେଟ୍‌ରେ ଯେଉଁ ଜିନିଷ ଦୁର୍ଲଭ କଳାବଜାରରେ ତାହା ସହଜଲଭ୍ୟ, ମାତ୍ର ଚଢ଼ା ଦରରେ। ସାଧାରଣ ଲୋକର ଆୟ ଏ ସମୟରେ କମିଥିବା ବେଳେ ଧନୀ, ବ୍ୟବସାୟୀ ଓ କଳା ବଜାରୀଙ୍କ ଆୟ ଶତ ଗୁଣରେ ବଢ଼ି ଯାଇଥାଏ। ତେଣୁ ଧନୀ ଗରିବଙ୍କ ମଧ୍ୟରେ ଆୟର ତଫାତ୍‌ଟା ଅହେତୁକ ଭାବେ ବଢ଼ି ଯାଇଥାଏ। ୟୁରୋପ ଉପରେ ନାଜୀ ଓ ଫାସିଷ୍ଟମାନେ ଜବରଦସ୍ତ ଲଦି ଦେଇଥିବା ଏଇ ବିରାଟ ଲଢ଼େଇ ହିଁ ଏଇ ଆର୍ଥନୀତିକ ଅଧୋଗତି ପାଇଁ ଦାୟୀ ବୋଲି ଆନୀ ବିଶ୍ୱାସ କରୁଥିଲା।

ନିଜ ଡାଏରୀରେ ଆନୀ କେତେ ଥର ବିଶ୍ୱ ମହାସମରର ଔଚିତ୍ୟ ବିଷୟରେ ଅତି ଶକ୍ତିଶାଳୀ ପ୍ରଶ୍ନମାନ ପଚାରିଅଛି। ବଡ଼ମାନେ କାହିଁକି ହତ୍ୟା ଲୁଟତରାଜ୍ ଓ ସାମୂହିକ ଧ୍ୱଂସ ଲୀଳା ପାଇଁ ଏକତ୍ର ବସି କୋଟି କୋଟି ଟଙ୍କାର ଖର୍ଚ୍ଚ ଅଟକଳ କରନ୍ତି, ସେ ପ୍ରଶ୍ନ କରିଛି। ଆନୀ ୧୯୪୪ ମସିହା ମେ ୩ ତାରିଖର ଡାଏରୀରେ ବାନ୍ଧବୀ କିଟୀକୁ ଭାବାବେଗରେ ପଚାରିଛି - "What, oh, what is the use of the war? Why can't people live peacefully together? Why all this destruction?"

ଯୁଦ୍ଧରେ ଏତେ ଟଙ୍କା ଖର୍ଚ୍ଚ ନ କରି ଯଦି ସେଇ ଅର୍ଥରେ ଦେଶଦେଶର ବିକାଶମୂଳକ କାମ କରାଯାନ୍ତା, ତେବେ ଜଗତ ଅଚିରେ ପାଲଟି ଯାଆନ୍ତା ସମୃଦ୍ଧିର ଅମରାବତୀ। ଆନୀ ପ୍ରଶ୍ନ କରିଛି "Why should millions be spent daily on the war, and yet there's not a penny available for medical services, artists, or for poor people?"

ଆନୀର ପ୍ରଶ୍ନ ପ୍ରକୃତରେ ଯଥାର୍ଥ। ଆମର ଦୈନନ୍ଦିନ ଜୀବନ ଯାତ୍ରାରୁ ଆମେ ଏ ସଂଦେଶ ମଧ୍ୟ ପାଇଥାଉଁ। ବିଶିଷ୍ଟ ଅର୍ଥନୀତିଜ୍ଞ ଡକ୍ଟର ଅମର୍ତ୍ତ୍ୟ ସେନ ଆମ ପଡ଼ୋଶୀ ରାଷ୍ଟ୍ର ଶ୍ରୀଲଙ୍କାର ଅର୍ଥନୀତିକୁ ବିଶ୍ଳେଷଣ କରି ଆନୀର କଥାକୁ ସତ୍ୟ ବୋଲି ପ୍ରମାଣ କରିଛନ୍ତି ଆନୀ ମୃତ୍ୟୁର ପଚାଶ ବର୍ଷ ପରେ। ଶ୍ରୀଲଙ୍କାରେ ୧୯୪୭ରୁ ୧୯୮୭ ପର୍ଯ୍ୟନ୍ତ ଯୁଦ୍ଧ ବିଗ୍ରହ ହୋଇ ନ ଥିଲା । ଶିରୋମାଭା ବନ୍ଦରାନାୟକଙ୍କ ଶାସନ ସମୟରେ ଏଇ ଶାନ୍ତିକାଳକୁ ଶ୍ରୀଲଙ୍କା ଭୋଗ କରିଥିଲା । ଭାରତୀୟ ନିରାପତ୍ତା ବାହିନୀର ଅଭୟ ଆଶିଷ ବଳେ ସେ ଦେଶର ସୁରକ୍ଷା ବେଶ୍ ବ୍ୟବସ୍ଥିତ ହୋଇ ରହିଥିଲା। ଯୁଦ୍ଧାସ୍ତ୍ର କ୍ରୟ କରିବା ଓ ସୈନ୍ୟ ସାମନ୍ତ ପୋଷିବା ପାଇଁ ଯେଉଁ ଅଜସ୍ର ଖର୍ଚ୍ଚ ବରାଦ୍ ହୋଇଥାନ୍ତା ତାହା ଖର୍ଚ୍ଚ ହୋଇଥିଲା ଶିକ୍ଷା, ସ୍ୱାସ୍ଥ୍ୟ ଓ ଜଳସେଚନ ଆଡ଼କୁ । ଫଳରେ ସେ ଦେଶ ଲୋକଙ୍କ ହାରାହାରି ପରମାୟୁ ୮୪ ବର୍ଷକୁ ବୃଦ୍ଧି ପାଇଥିଲା, ଯାହା ଫ୍ରାନସ୍ ଦେଶର ତତ୍ ସଂପର୍କିତ ହାର ସହିତ ସମାନ । ଶିଶୁର ଅକାଳ ମୃତ୍ୟୁର ହାର ଥିଲା ମାତ୍ର ଶତକଡ଼ା ୨ - ଯାହାକି ଜାପାନ୍ ଓ ଦକ୍ଷିଣକୋରିଆ ସହିତ ସମାନ। ସେହିପରି ସାଧାରଣ ମଣିଷର ଦୈନିକ ମୁଣ୍ଡପିଛା ଅର୍ଥ ଉପାର୍ଜନ ସେ ସମୟରେ ଥିଲା ଭାରତୀୟ ମୁଦ୍ରାରେ ଅଶି ଟଙ୍କା - ଯାହାକି ଆମ ଦେଶର ପଞ୍ଜାବ ରାଜ୍ୟର

ଜଣେ ଲୋକର ମୁଣ୍ଡପିଛା ଆୟ ସହିତ ସମାନ ଥିଲା । ଶାନ୍ତିପୂର୍ଣ୍ଣ ବସବାସ ଯେ ବିକାଶର ଜନନୀ ଏ କଥା ଏ ତଥ୍ୟ ପ୍ରମାଣିତ କରେ। ଆନୀ ଜଣେ କମ୍ ବୟସର ପିଲା ହେଲେ ମଧ ତା'ର ଶାନ୍ତି କାଳର ଆର୍ଥନୀତିକ ବିକାଶର ସ୍ୱପ୍ନ ବାସ୍ତବରେ କେତେ ପ୍ରଗତିଶୀଳ ଥିଲା, ଭାବିଲେ ଆଶ୍ଚର୍ଯ୍ୟ ଲାଗେ।

ୟୁରୋପରେ ପୁଞ୍ଜିବାଦର ବିକାଶ ସାଙ୍ଗକୁ ପୁଞ୍ଜିବାଦର ଦ୍ୱନ୍ଦ୍ୱାତ୍ମକ ଭିତିରିଆ ରୋଗ (ଫାସିଜିମ୍ ଓ ନାଜିଜିମ୍) ସୀମାଲଙ୍ଘନ କରି ସାଧାରଣ ମଣିଷକୁ ବୃଶ୍ଚିକର ତୀବ୍ର ଦଂଶନରେ ମ୍ରିୟମାଣ କରି ଦେଉଥାଏ। ଆନୀ ହିଟଲର୍‌ଙ୍କ ଏଇ ଉଗ୍ର ଜାତୀୟତାବାଦୀ ଚେତନାକୁ ତାହାର ଡାଏରୀରେ ବହୁତ ଘୃଣା କରିଛି। ହଲାଣ୍ଡ ଓ ଜାର୍ମାନ୍‌କୁ କେବେ ଏକ ମୁକ୍ତ ସମୟ ଫେରିବ ବା ଏକ ସୁସମୟ ଫେରିବ ସେ ବିଷୟରେ ଛୋଟ ଝିଅଟି ଗଭୀର ଚିନ୍ତା କରି ବସିଛି। ୧୯୪୩ ଡିସେମ୍ବର ୨୪ ତାରିଖରେ ଲେଖା ତାହାର ଡାଏରୀରେ ଆନୀ ଉତ୍‌କଣ୍ଠିତ ଚିତ୍ତରେ ପ୍ରଶ୍ନ କରିଛି - "When will we be granted the privilege of smelling fresh air ? ବିଶ୍ୱ ଯୁଦ୍ଧର ତ ଅନ୍ତ ହୋଇଛି ମଣିଷର ସୁଖ ଶାନ୍ତିକୁ ସୁବ୍ୟବସ୍ଥିତ କରିବା ଉଦ୍ଦେଶ୍ୟରେ ଜାତିସଂଘ ଗଠିତ ହୋଇଛି ଓ ମାନବିକ ଅଧିକାରର ଆନ୍ତର୍ଜାତିକ ସନନ୍ଦ ଗୃହୀତ ହୋଇଛି। କିନ୍ତୁ ବିଶ୍ୱର ଦେଶେ ଦେଶେ ଜାତିଆଣବାଦୀଙ୍କ ବିଷାକ୍ତ ଦଂଶନ ବନ୍ଦ ହୋଇଛି କି ? ବରଂ ନିତି ପ୍ରତି ଧର୍ମ, ଜାତି, ବର୍ଣ୍ଣର ପାତର ଅନ୍ତରର କାଳୀୟ ଦଂଶନରେ ପ୍ରତି ଦେଶରେ ଜାତି ସତ୍ତା ଅଦ୍ୟାପି ମ୍ରିୟମାଣ। ଆମେରିକାରେ ଜାତିଆଣ ବିଦ୍ୱେଷୀଗଣଙ୍କୁ କ୍ଲକ୍ସ କ୍ଲାନ୍ ରୂପରେ, ମୁସଲମାନ ବହୁଳ ଦେଶରେ ମୁଜାହିଦିନ୍ ବେଶରେ, ହିନ୍ଦୁ ସଂଖ୍ୟା ଗରିଷ୍ଠ ଦେଶରେ ହିନ୍ଦୁତ୍ୱବାଦୀର ଉଗ୍ର ବେଶରେ ଏମାନେ ମାନବିକତାର ଶିରରେ ବଜ୍ରମୁଷ୍ଟି ପ୍ରହାର କରି ଚାଲିଛନ୍ତି। ଜଣେ ମଣିଷ ପାଇଁ କେଉଁଠି ଫୁଟେ ଜାଗା ନାହିଁ ଯେଉଁଠି ଠିଆ ହୋଇ ଗଭୀର ମାନବିକତାବୋଧର ଚଳୁଏ ପବନ ସାହାଯ୍ୟରେ ଆରାମ୍‌ରେ ନିଜର ଶ୍ୱାସ ଭରିବାକୁ। ଆମକୁ ଏ ଧରା ପୃଷ୍ଠରେ ଭବିଷ୍ୟତର ଆନୀମାନଙ୍କ ହସର ଫୁଲକୁ ସତେଜ ରଖିବାକୁ ହେଲେ, ସଂଗ୍ରାମ କରିବାକୁ ପଡ଼ିବ ଏଇ ଜାତିଆଣବାଦୀ, ଆଞ୍ଚଳିକତାବାଦୀ ଅମଣିଷମାନଙ୍କ ବିରୁଦ୍ଧରେ। "ମଣିଷ" ମୂଳ ଏକକ ରୂପେ ବିଦ୍ୟମାନ ବୋଲି ଘୋଷଣା କରିବାକୁ ହେବ।

●

# ଚେକ୍‌ଭଙ୍କ ଗଳ୍ପ : ଏକ ଦୃଷ୍ଟିପାତ

ଏଣ୍ଟୋନ୍ ପାବ୍ଲୋଭିଚ୍ ଚେକ୍‌ଭ (୧୮୬୦-୧୯୦୪) ଏକଦା ଲେଖିଥିଲେ "ଡାକ୍ତରୀ ଚିକିତ୍ସାକୁ ମୁଁ ମୋର ପ୍ରଥମ ସ୍ତ୍ରୀ ବୋଲି କହିପାରିବି, କିନ୍ତୁ ମୋର ଦ୍ୱିତୀୟ ପତ୍ନୀ ଏବେ ପ୍ରକୃତ ମାଲିକାଣୀ ହେଉଛି ସାହିତ୍ୟ। ଯେତେବେଳେ ଏଥିରୁ କୌଣସି ଜଣକୁ ମୋତେ ବିତୃଷ୍ଣା ଲାଗେ, ମୁଁ ଅନ୍ୟ ଜଣକ ସହିତ ରାତ୍ରିଯାପନ କରେ। ଉଭୟେ ମୋ'ପ୍ରତି ଅନୁରକ୍ତ ଓ ବିଶ୍ୱସ୍ତ। ଘୃଣାକ୍ଷରେ କେବେହେଲେ ଉଭୟେ ମୋର ଚାରିତ୍ରିକ ଦୁର୍ବଳତାକୁ ପ୍ରଶ୍ନ କରିନାହାନ୍ତି।" ବାସ୍ତବରେ ଚେକ୍‌ଭ ନିଜର ଡାକ୍ତରୀ ଦୃଷ୍ଟିଭଙ୍ଗୀରୁ ଆହରଣ କରିଥିଲେ ହେତୁବାଦୀ ବିଶ୍ଳେଷଣ ଧାରା। ତାହାକୁ ସେ କଳାଦୃଷ୍ଟି ସହିତ ମିଶାଇ କଥା ତଥା ନାଟ୍ୟସାହିତ୍ୟକୁ କରିଛନ୍ତି ଋଦ୍ଧିମନ୍ତ। କ୍ଷୁଦ୍ର ଓ ବୃହତ୍ ନଗରୀର ବ୍ୟଥାକ୍ଳିଷ୍ଟ ସାଧାରଣ ମଣିଷ ତଥା ଆଶାପ୍ରତ୍ୟାଶାର ଗନ୍ତାଘର ରୂପେ ପରିଚିତ ମଧ୍ୟବିତ୍ତ ଶ୍ରେଣୀର ମଣିଷ ହିଁ ଚେକ୍‌ଭଙ୍କ କଥାସାହିତ୍ୟର ନାୟକ ନାୟିକା ବା ସାଧାରଣ ଚରିତ୍ର। ସେମାନେ ଜୀବନକୁ କଥାରେ କଥାରେ ଚିତ୍ରଣ କରିବାବେଳେ, ସେ ସେମାନଙ୍କର ମୋହଭଙ୍ଗ, ସ୍ୱପ୍ନଭଙ୍ଗ ବା ଆତ୍ମପ୍ରତ୍ୟୟ ଫେରିପାଇବା ପରି ମନୋବସ୍ଥାକୁ ଲାବଣ୍ୟମୟ ଭାଷାରେ ବର୍ଣ୍ଣନା କରିଛନ୍ତି। ଚେକ୍‌ଭ ମଧ୍ୟ ଥିଲେ ପ୍ରଚଣ୍ଡ ଭାବରେ ଜଣେ ସମୟସଚେତନ ଶିଳ୍ପୀ। ତାଙ୍କ ଜୀବନକାଳରେ ଅଖଣ୍ଡ ଋଷୀୟ ସାମ୍ରାଜ୍ୟକୁ ଶାସନ କରୁଥିଲେ ଦୁଇଜଣ ଜାର୍ ବଂଶୀୟ ସମ୍ରାଟ୍ - ପ୍ରଥମ ଜଣକ ହେଲେ : ଦ୍ୱିତୀୟ ଆଲେକ୍‌ଜାଣ୍ଡର (୧୮୬୧-୧୮୮୮) ଓ ୧୮୮୮ ମସିହାରେ ଦ୍ୱିତୀୟ ଆଲେକ୍‌ଜାଣ୍ଡରଙ୍କ ହତ୍ୟାକାଣ୍ଡରେ ମୃତ୍ୟୁ ହେବାପରେ ତାଙ୍କ ପୁତ୍ର ତୃତୀୟ ଆଲେକ୍‌ଜାଣ୍ଡର (୧୮୮୮-୧୯୧୭) ହେଲେ : ଦ୍ୱିତୀୟ ନିରଙ୍କୁଶ ଜାର୍ ଶାସନର ଅତ୍ୟାଚାରର କ୍ରୂରତା କଥାକାର ଚେକ୍‌ଭ ଅଙ୍ଗେ ନିଭାଇଛନ୍ତି।

୧୮୭୮ ମସିହା ବେଳକୁ ୟୁରୋପ୍‌ର ବିସ୍ତାରଲାଭ କରିଥିବା ତୁର୍କୀର ଅଟୋମାନ୍ ସାମ୍ରାଜ୍ୟ ଟଳିପଡ଼ିବାକୁ ଆରମ୍ଭ କରିଥାଏ। ସେଇ ସୁଯୋଗରେ ଋଷିଆ ଓ ଅଷ୍ଟ୍ରିଆ ପୂର୍ବୟୁରୋପ (ଯଥା : ସାଇବେରିଆ; ହରଜ୍ ଗୋବିନା, ପୋଲାଣ୍ଡ, ବୋସ୍‌ନିଆ, ବୁଲଗେରିଆ ଓ ଅନ୍ୟାନ୍ୟ ଛୋଟଛୋଟ ବଲ୍‌କାନ୍ ରାଜ୍ୟ)କୁ ଦଖଲ କରିବାକୁ କଳହରେ ମାତିଯାଆନ୍ତି। ଏ ଦୁଇ ଶକ୍ତିଙ୍କ ମଧ୍ୟରେ "ବର୍ଲିନ୍ ଶାନ୍ତି ଚୁକ୍ତି" ଜର୍ମାନ୍‌ର ଶାସକ ବିସ୍‌ମାର୍କଙ୍କ ମଧ୍ୟସ୍ଥତାରେ ସ୍ୱାକ୍ଷରିତ ହୁଏ। ଦ୍ୱିତୀୟ ଆଲେକ୍‌ଜାଣ୍ଡର ନିଜ ଶାଳକ ଆଲେକ୍‌ଜାଣ୍ଡର ଅଫ୍ ବ୍ରେଟନ୍‌ବର୍ଗଙ୍କ ସାହାଯ୍ୟରେ ପୂର୍ବ ୟୁରୋପୀୟ ରାଜ୍ୟଗୁଡ଼ିକର ଶାସନ ଓ ହେପାଜତ୍ ରାଜଧାନୀ ପେଟ୍ରୋଗାର୍ଡ଼ରୁ କରନ୍ତି। ବୁଲଗେରିଆ ଏହି ନିୟନ୍ତ୍ରଣର କେନ୍ଦ୍ର ରୂପେ କାର୍ଯ୍ୟକରେ।

ରୁଷ୍‌ରେ ଦ୍ୱିତୀୟ ଆଲେକ୍‌ଜାଣ୍ଡରଙ୍କ ଶାସନ କାଳରେ ଯଦିଓ କେତେକ ପେଣ୍ଠସ୍ଥାନରେ ନଗରୀକରଣ ଆରମ୍ଭ ହୋଇଥାଏ, ତଥାପି ଏ ସାମ୍ରାଜ୍ୟ ଥାଏ କୃଷିଅର୍ଥନୀତି ଅଧ୍ୟୁଷିତ। ରାଜକାର୍ଯ୍ୟରେ ଧନୀକ ଓ ବୃହତ୍ ଜମିମାଲିକଙ୍କୁ ନାମକୁ ମାତ୍ର ପରାମର୍ଶ କରିବା ଥିଲା ଧର୍ମକୁ ଆଖିଠାର ପରି ଏକ ବିଧି। ତଥାପି ନିଜକୁ ପ୍ରଗତିଶୀଳ ଶାସକ ରୂପେ ପ୍ରତିଷ୍ଠିତ କରିବାକୁ ଦ୍ୱିତୀୟ ଆଲେକ୍‌ଜାଣ୍ଡର ରୁଷୀୟ ସମାଜରୁ ଭୂମିଦାସ (Serfism) ପ୍ରଥା ଉଠାଇବା ନିମନ୍ତେ ହୁକୁମ୍‌ନାମା ଜାରିକଲେ। ତାଙ୍କ ପିତା ଜାର୍ ପ୍ରଥମେ ନିକୋଲାସ୍‌ଙ୍କ ଶାସନ କାଳରେ ସେ ଦେଶର ଭୂମିଦାସମାନଙ୍କ ଜୀବନଯାପନ ପଶୁଠାରୁ ହୀନଥିଲା। ବିଶିଷ୍ଟ ଐତିହାସିକ ଡେଭିଡ୍ ଥମ୍‌ସନ୍ ଲେଖିଛନ୍ତି – "Serfs could be used by their owners to work in mines, or factories or mills, they could be hired out for that purpose, and they could even be mortgaged as security for debts or loans. Some two thirds of the serfs not owned by the Tsar or the state were, indeed so mortgaged by 1855. They could be bought and sold, and instead of being bound to the soil as previously in Central Europe, they were virtually in bondage to their owners." (Europe since Nepoleaon - D. Thomson-P. 331) କଥାକାର ଗୋପୀନାଥ ମହାନ୍ତି, 'ପରଜା' ଓ 'ଅମୃତର ସନ୍ତାନ'ରେ କୋରାପୁଟର ଆଦିମ ବାସିନ୍ଦା ପରଜାମାନେ ଏହିପରି ଗୋତି ହିସାବରେ ଧନୀ ସାହୁକାର ବା କୁମୁଟିମାନଙ୍କ ଦ୍ୱାରା ବ୍ୟବହୃତ ହେଉଥିବାର ଜୀବନ୍ତ ବର୍ଣ୍ଣନା ଦେଇଛନ୍ତି। ଜାର୍ ତୃତୀୟ ଆଲେକ୍‌ଜାଣ୍ଡର ରୁଷିଆରେ ସାମନ୍ତବାଦୀ ଭୂବ୍ୟବସ୍ଥାର ସୀମିତ ସଂସ୍କାର ଆଣିବା ଅବସରରେ ସର୍ଫମାନଙ୍କୁ କେତେକାଂଶରେ ଗୋତିମୁକ୍ତ କରିଥିଲେ। ପରବର୍ତ୍ତୀ କେରେନ୍‌ସ୍କିଙ୍କ ମିଳିତ ମନ୍ତ୍ରିମଣ୍ଡଳ ସୋସାଲିଷ୍ଟ ରିଭଲ୍ୟୁନାରିଙ୍କ ପ୍ରଭାବରେ ଗୋତିପ୍ରଥା ଉଚ୍ଛେଦ କଲେ। ୧୯୧୭ ମସିହା ପରେ ଏ ପ୍ରଥା ସୋଭିଏତ୍ ଗଣପ୍ରଜାତନ୍ତ୍ରର ଆଇନ୍‌ବଳରେ ସମୂଳେ ବିଲୁପ୍ତ ହେଲା ଓ ରୁଷିଆର ଭୂସମ୍ପତ୍ତି ସରକାରଙ୍କ ଡିକ୍ରୀ ବଳରେ ଜାତୀୟକରଣ କରାଗଲା।

ରୁଷିଆ ଯେତେବେଳେ ଜାର୍ ଅତ୍ୟାଚାରରେ ପିଷ୍ଟ ହେଉଥିଲା, ଗ୍ରାମ୍ୟ ମଣିଷ କେବଳ ଧର୍ମ ଓ କେତେକ ମଧ୍ୟଯୁଗୀୟ ବଦ୍ଧମୂଳ ଧାରଣାକୁ ଧରି ପଶୁତୁଲ୍ୟ ଜୀବନଯାପନ କରୁଥିଲା, ତା'ର ସରଳ ବିଶ୍ୱାସ ତାକୁ ନିଷ୍ଠୁର ଦାରିଦ୍ର୍ୟ ମଧ୍ୟରେ ବଞ୍ଚାଇ ରଖିଥିଲା। "When I think back on my childhood, it all seems quite glory to me" ବୋଲି ଥରେ ଚେକ୍‌ଭ ନିଜ ବାଲ୍ୟ ଓ କୈଶୋର ଅବସ୍ଥା ବିଷୟରେ ସ୍ମୃତିଚାରଣ କରି କହିଥିଲେ। ବ୍ୟକ୍ତିଗତ ଜୀବନରେ ଚେକ୍‌ଭଙ୍କ ପିତା ଜଣେ ଗଦିଆନ୍ ତେଜରାତି ଦୋକାନୀ ଥିଲେ ଓ ଚେକ୍‌ଭଙ୍କ ଉପରେ ସେ କାୟିକ ଓ ମାନସିକ ଭାବରେ ଅତ୍ୟାଚାର କରୁଥିଲେ। ଚତୁଃପାର୍ଶ୍ୱର ସମାଜରେ ଭୂଦାସଙ୍କ ଉପରେ ଭୂସ୍ୱାମୀମାନଙ୍କର ଅତ୍ୟାଚାର ମଧ୍ୟ ସମୀଚୀନ ଥିଲା। ତତ୍‌କାଳୀନ ସାମାଜିକ ପ୍ରତିଚ୍ଛବି ଆମେ

ପ୍ରତ୍ୟକ୍ଷ କରୁ, ତାଙ୍କ ରଚିତ "ଆନନ୍ଦ' ( Happiness)ଗଳ୍ପରେ। ଏହି ଗଳ୍ପରେ ବୃଦ୍ଧ ମେଷପାଳକଟି ସେ ଅଞ୍ଚଳର ଧନୀ ଓ କଞ୍ଜୁସ୍ ମଣିଷ ୟେଫିମ୍ ଏକତାରକ ମନ୍ତ୍ର ଜାଣିଥିବାର ସେ ବିଶ୍ୱାସ କରୁଥିଲା - ସବୁ ଧନ ରତ୍ନକୁ ସେ ପାଇଥାଏ ଏହି ମନ୍ତ୍ର ଉଚ୍ଚାରଣ କରି। "To find the treasures you must have talismans, and without talisman you can do nothing, lad ! Yefim had talisman but there was no getting anything out of him, the bald devil. He kept them, so that no one could get them." (Happiness- selected stories - Projapati, Kol, P. 227)

ପୁରାତନ ରୁଷୀୟ ସମାଜରେ "ଆନନ୍ଦ" ଲାଭର ଚରିତ୍ର ମଧ୍ୟରେ ଫାଣ୍ଟାସି ଓ ପରୀକଥାର ଆମେଜ୍ ଥିଲା। ଭାଗ୍ୟରେ ଥିଲେ ହଠାତ୍ କେଉଁଠୁ ଜଣକୁ ସୁଖପ୍ରାପ୍ତି ହୁଏ ବୋଲି ଗାଁର ସରଳଲୋକ ବିଶ୍ୱାସ କରୁଥିଲେ। କେହି ମଣିଷ ନିଜର କାର୍ଯ୍ୟ ଓ ଉତ୍ପାଦନ ବଳରେ ସୁଖସମ୍ପଦ ଲାଭ କରିପାରେ ବୋଲି ବିଶ୍ୱାସ କରୁନଥିଲେ। ସାରା ରୁଷୀୟ ଜନସମାଜକୁ ରାତ୍ରି ଶେଷଯାମର ଏକ ଘୁମନ୍ତ ମେଣ୍ଢାପଲ ବୋଲି ଏ ଗଳ୍ପରେ ସେ କଳ୍ପନା କରିଛନ୍ତି। ମାଟିତଳେ ପୋତାହୋଇଥିବା ମୂଲ୍ୟବାନ ଧନରତ୍ନ ଓ ଖଣିଜ ଦ୍ରବ୍ୟ, ଯେତେ ପରିଶ୍ରମ କଲେ ବି ସାଧାରଣ ମଣିଷ ଭାଗ୍ୟରେ ପ୍ରାପ୍ତ ହେବାର ନାହିଁ। ବୃଦ୍ଧ ଶାଙ୍କାର ବିଶ୍ୱାସ ଯେ, କେତେକ ବଛାବଛା ଭାଗ୍ୟବାନ୍ ସୈନ୍ୟ ରାଜପୁତ୍ର ବା ଜମିଦାରଙ୍କୁ କେବଳ ଲୁକ୍କାୟିତ ରତ୍ନଭଣ୍ଡାରର ଅବସ୍ଥିତି ବିଷୟରେ ଜଣା ଅଛି। ସେମାନେ ମଧ୍ୟ ରତ୍ନଲାଭ ନିମନ୍ତେ ଆବଶ୍ୟକୀୟ ଗୁପ୍ତ ମନ୍ତ୍ର ଜାଣିଛନ୍ତି।

ଚେକ୍‌ଭଙ୍କ ସମକାଳୀନ ରୁଷୀୟ ସମାଜରେ ସାଧାରଣ ମଣିଷ ଥିଲା ଭୀତତ୍ରସ୍ତ, ରାଜାନୁଗତ, ବଶମ୍ବଦ ଓ ହୀନମନ୍ୟ। ଶାଣିତ ବ୍ୟଙ୍ଗ ଓ ହାସ୍ୟର ଛୁରିକା ଚାଳନା କରି ସେ ସେଇମାନଙ୍କ ମନରେ ଆତ୍ମପ୍ରତ୍ୟୟ ଭରିଦେବାକୁ ଓ ଜାଗିଉଠିବାର ଧ୍ୱନି ତୋଳିବା ନିଜ ରଚନା ମାଧ୍ୟମରେ ଚେଷ୍ଟା କରିଥିଲେ। ପଶ୍ଚିମ ୟୁରୋପ ଦ୍ରୁତ ଯନ୍ତ୍ରାୟନ ପଥରେ ଯେଉଁ ବେଗରେ ମାଡ଼ିଚାଲିଛି, ଦିନେ ଗଣତନ୍ତ୍ର ଓ ସାଧାରଣ ଜନତାର ଶାସନ ଦେଶେଦେଶେ ବ୍ୟାପିଯିବ ବୋଲି ସେ ଜାଣିପାରିଥିଲେ। ତେଣୁ ସେ ନାଟକ 'ଚେରୀ ବାଗାନ୍' (Cherry Orchard)ର ଉପସଂହାରରେ ମୂଲ୍ୟବାନ୍ ଚେରୀବଗିଚାକୁ କାଟି ଧୂଳିସାତ୍ କରିଦେଇଛନ୍ତି। ଯେତେ ସମୃଦ୍ଧ ଜଣାପଡୁଥିଲେ ବି ସମକାଳୀନ ସମାଜ ଓ ତା'ର ଆର୍ଥ-ରାଜନୀତିକ ବ୍ୟବସ୍ଥା ଦିନେ ଭୂଲୁଣ୍ଠିତ ହେବ ବୋଲି ନିଜର ଦୂରଦୃଷ୍ଟି ବଳରେ ସେ ଦେଖିପାରୁଥିଲେ। ସମାଲୋଚକ କନ୍‌ଷ୍ଟାଣ୍ଟିନ୍ ଷ୍ଟେନ୍‌ସ୍ଲାଭ୍‌ସ୍କି, ଚେକ୍‌ଭଙ୍କ ନାଟକ ତଥା କଥାସାହିତ୍ୟରେ ଲୁକ୍କାୟିତ ଏହି ଦୂରଦୃଷ୍ଟିକୁ ପ୍ରଶଂସା କରି ଲେଖିଥିଲେ " Among the men of letters of the end of 19th century and begining of the present one, Chekhov was one of the first to sense the inevitability of revolution, when it was still only embroy and society was continuing to wallow in extravagances. He was also one of the first

to sound the alarm. Who, if not he, began to count down the glorious flowering cherry orchard, realising that it had its day and that the old life was irrevocably condemned to demolition." ( Anton Chekhov : His plays, Preface, Progress publishers, Moscow- 1979-P.34)

"The man who lived in a shell" ଗଳ୍ପରେ ମୁଖ୍ୟ ଚରିତ୍ର ହେଉଛି ଜଣେ ଶୋଷିତ ସରଳ ଗ୍ରାମବାସୀ - ନାମ ବେଲିକୋଭ୍। ବେଲିକୋଭ୍ ଜାର-ଶାସିତ ରୁଷିଆର ଜଣେ ବଶମ୍ବଦ ଓ ରାଜାନୁଗତ ପ୍ରଜା। ରାଜ୍ୟର ପ୍ରତ୍ୟେକ ଆଇନ୍‌କୁ ସେ ଅକ୍ଷରେ ଅକ୍ଷରେ ପାଳନ କରେ। ସାଧାରଣ ଜନଜୀବନର ସାମାନ୍ୟ ତ୍ରୁଟିକୁ ପ୍ରଶାସନବିରୋଧୀ ଓ ସାଂଘାତିକ ଭାବେ ଭୁଲ୍ ବୋଲି ସେ ବିବେଚନା କରେ। କୌଣସି ଆଇନ୍‌ର ସାମାନ୍ୟ ଉଲ୍ଲଙ୍ଘନ ତାକୁ ବ୍ୟତିବ୍ୟସ୍ତ କରେ। ବେଲିକୋଭ୍ ଜଣେ ସ୍କୁଲ ଶିକ୍ଷକ। ସାମାନ୍ୟ ତ୍ରୁଟି ଦିନେ ବଢ଼ିବଢ଼ି ବିରାଟକାୟ ହୋଇ ମହାବିପଦ ରୂପେ ଦେଖାଯିବ ବୋଲି ସେ ବିଶ୍ୱାସ କରେ। କୌଣସି ପିଲା ସ୍କୁଲର ପ୍ରାର୍ଥନା ସଭାର ସାମାନ୍ୟ ବିଳମ୍ବରେ ପହଞ୍ଚିଲେ, ତାହାର ପରିଣାମ ଦିନେ ବଢ଼ିବଢ଼ି ଭୟାବହ ହୋଇପାରେ ବୋଲି ସେ ସମସ୍ତଙ୍କୁ ଭୟ ଦେଖାନ୍ତି। ଏଥିପାଇଁ ଦିନେ ହେଡ୍‌ମାଷ୍ଟରଙ୍କୁ ଦାୟୀକରି ତାଙ୍କ ଚାକିରୀ ଉପରିସ୍ଥ ହାକିମ ଖାଇଦେଇପାରନ୍ତି ବୋଲି ସେ କଳ୍ପନା କରନ୍ତି। ଏମିତି ପ୍ରତି କଥାରେ କଳ୍ପନାପ୍ରବଣ ହୋଇ ସେ ଅଧିକ ଭୟାଳୁ ହୋଇଉଠନ୍ତି। ଏମିତି ବିଭିନ୍ନ ଆପଦବିପଦର ଭୟ ଥିବାରୁ ସେ ବିବାହ କରିବେ ନାହିଁ ବୋଲି ସ୍ଥିର କରିଥିଲେ। ହଠାତ୍ ଜଣେ ସହକର୍ମୀ ଶିକ୍ଷକଙ୍କ ସାନଭଉଣୀ ଭାରୟା ସହ ତାଙ୍କର ଏକ ଭୋଜିସଭାରେ ସାକ୍ଷାତ ହୁଏ ଏବଂ ତାଙ୍କ ପ୍ରେମରେ ସେ ପଡ଼ିଯାଆନ୍ତି। ପ୍ରେମଟି ବିବାହବନ୍ଧନରେ ରୂପାନ୍ତରିତ ହେବ ବୋଲି ସ୍ଥିରୀକୃତ ହୁଏ। ମାତ୍ର ଥରେ ଭାରୟା ସାଇକେଲ ଚଢ଼ିବାର ଦେଖି ଝିଅଟିର ଔଦ୍ଧତ୍ୟ ବଢ଼ିଯିବାର ପ୍ରମାଦ ଗଣିଲେ। ଝିଅଙ୍କ ସାଇକେଲ ଚଢ଼ା ସମାଜର ନୈତିକତାର ପରିପନ୍ଥୀ ବୋଲି ସେ ବିଚାରନ୍ତି।

ସେ ଭାରୟାକୁ ସାଇକେଲ ନଚଢ଼ିବାର ପରାମର୍ଶ ଦେବା ନିମନ୍ତେ ତାଙ୍କ ଘରକୁ ଯାଆନ୍ତି। ମାତ୍ର ତାଙ୍କ ବଡ଼ଭାଇ ହାତରୁ ମାଡ଼ଖାଇ ସେ ଅପମାନିତ ହୋଇ ଫେରନ୍ତି। ସେ ରୋଗଗ୍ରସ୍ତ ହୁଅନ୍ତି ଓ ତାଙ୍କର ମୃତ୍ୟୁ ହୁଏ। ସଂକୀର୍ଣ୍ଣ ମାନସିକତା ଓ ଆଇନ୍‌ର ଅନ୍ଧସ୍ତାବକତାର ଖୋସା ଭିତରେ ଏମିତି ଅସଂଖ୍ୟ ରୁଷୀୟ ବାସକରୁଥିବାରୁ ଗାଳ୍ପିକ ଚେକ୍‌ଭ ସେମାନଙ୍କୁ ଏ ଗଳ୍ପରେ ବ୍ୟଙ୍ଗ କରିଛନ୍ତି। ସେ ଗଳ୍ପକଥକ ଇଭାନ୍ ଇଭାନିଚ୍‌ଙ୍କ କଣ୍ଠରେ କହିଛନ୍ତି - Though we have burried Bilikov, there are still plenty of men who live in a shell, and there are plenty as yet unborn." ଏତାଦୃଶ ଅସ୍ୱାଭାବିକ ସଂକୀର୍ଣ୍ଣ ଚିନ୍ତନ ବ୍ୟକ୍ତିକୁ ସ୍ଥାଣୁ କରିବା ସଙ୍ଗେ ସଙ୍ଗେ ଜାତିକୁ ଅନଗ୍ରସର କରିଦିଏ ବୋଲି ଏ ଗଳ୍ପରେ ଲେଖକ ଦର୍ଶାଇଛନ୍ତି। ସାଧାରଣ ନାଗରିକ ଯଦି ବେଲିକଭ୍ ପରି ସଂକୀର୍ଣ୍ଣମନା ଓ ଅଦୂରଦର୍ଶୀ ପାଲଟିଯାଆନ୍ତା, ତେବେ ରାଜତନ୍ତ୍ରର ନାଗପାଶରେ ଆବଦ୍ଧ ରୁଷୀୟ ଜାତିର ଜାଗରଣ ଓ ଉତ୍‌ଥାନ କେବେ ହେବ ନାହିଁ ବୋଲି ଲେଖକ ସତର୍କ କରାଇଦେଇଛନ୍ତି।

ପଶୁଡାକ୍ତର ଇଭାନ୍ ଇଭାନିଚ୍ ତାଙ୍କର ବନ୍ଧୁ ସ୍କୁଲ ଶିକ୍ଷକ ବର୍କିନଙ୍କୁ "The man who lives in shell" ଗପରେ ବେଲିକୋଭ୍‌ଙ୍କ ବିଷୟରେ ଯେମିତି ଆମୋଦଦାୟକ ପ୍ରସଙ୍ଗଟି କହିଥିଲେ, ସେମିତି "ଗୋସ୍‌ବେରିଜ୍" ଗଳ୍ପଟି ଅନ୍ୟ ଏକ ପରିବେଶରେ ଓ ଭିନ୍ନ ଏକ ପ୍ରସଙ୍ଗକୁ ନେଇ କହିଛନ୍ତି। ଦୁଇଟିଯାକ ଗଳ୍ପ ଆମ ଭାଷାରେ 'ଅବୋଲକରା କାହାଣୀ' ଢ଼ାଞ୍ଚାରେ ଗଠିତ। ଇଭାନ୍ ଇଭାନିଚ୍ ଯଦି ପରିବ୍ରାଜକ ଓ ଗୁରୁ ହୁଅନ୍ତି, ବର୍କିନ୍ ହେଉଛନ୍ତି ଅଜ୍ଞ ଓ ଜିଜ୍ଞାସୁ ଶିଷ୍ୟ ଅବୋଲକରା। 'ଗୋସ୍‌ବେରିଜ୍' ଗପଟିରେ ପଶୁଡାକ୍ତର ତାଙ୍କ ନିଜ ସାନଭାଇ ନିକୋଲାଇ ଇଭାନିଚ୍‌ଙ୍କ ସମ୍ପର୍କରେ କହିଛନ୍ତି। ସାଧାରଣ ଏକ କିରାଣୀ ଚାକିରିରୁ ଜୀବନ ଆରମ୍ଭ କରି ସେ ବୁଦ୍ଧି ଓ ଚଞ୍ଚକତା ବଳରେ କିପରି ଜଣେ ଅସାଧାରଣ ଜମିଜମା ଓ ଇଷ୍ଟେଟ୍‌ର ମାଲିକ ହୋଇପାରିଲେ, ତାହାହିଁ ଏ ଗପର କ୍ୟାନ୍‌ଭାସ। ଧନୀ ହେବା ମାର୍ଗରେ ଯାତ୍ରା କଲାବେଳେ ସେ ବିବାହକୁ ଏକ ପବିତ୍ର ବନ୍ଧନ ନଭାବି ଧରିନେଇଛନ୍ତି ଏକ ବେପାର ରୂପେ। ଜଣେ ବୟସ୍କା ଅସୁନ୍ଦରୀ ତଥା ଧନୀ ମହିଳାଙ୍କୁ ବିବାହ କରି ସେ କରାୟତ୍ତ କରିଥିଲେ କୋଟିକୋଟି ରୁବଲ୍। ନିକୋଲାଇ ଏକ ନଦୀ ପାର୍ଶ୍ୱରେ ଏବଂ ଗ୍ରାମ୍ୟ ପରିବେଶରେ ଯେଉଁ ଇଷ୍ଟେଟ୍ କ୍ରୟ କଲେ, ସେଥିରେ ସେ ଲଗାଇଥିଲେ କେତେ ମନ୍ଦା ଗୋସ୍‌ବେରୀ ଗଛ। ଅନେକ ଦିନରୁ ଇଷ୍ଟେଟ୍ ସହ ଏଇ ଗଛଗୁଡ଼ିକୁ ପାଇବାକୁ ସେ ସ୍ୱପ୍ନ ଦେଖିଥିଲେ। ଗୋସ୍‌ବେରୀ ଫଳର ପ୍ରଥମ ଅମଳ ଦିନ ବଡ଼ଭାଇ ଇଭାନ୍ ମଧ ଘଟଣାକ୍ରମେ ଆସି ପହଞ୍ଚିଲେ ସାନଭାଇଙ୍କ ଫାର୍ମ ହାଉସ୍‌ରେ। ଗୋସ୍‌ବେରୀଗୁଡ଼ିକ ଖଟା ହେଲେ ମଧ ସାନଭାଇ ତାକୁ ସ୍ୱାଦିଷ୍ଟ ଓ ମିଷ୍ଟ କହି ପୁଳାପୁଳା ଗିଳିଚାଲିଥିଲେ। ଏଇ ଗଳ୍ପରେ ଦିଓଟି ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ ଲେଖକ ଚେକ୍‌ଭ ଉଠାଇଛନ୍ତି। ପ୍ରଥମଟି ହେଲା, ଯେଉଁମାନେ ସୁଖୀ ଓ ଆନନ୍ଦିତ ବୋଲି ମନେକରନ୍ତି, ସେମାନେ ସେଇ ସମୟର ଅନ୍ତରାଳରେ ଅନେକ ପଡ଼ୋଶୀଙ୍କ ଅସୁଖ ଓ ବେଦନା ଜର୍ଜରିତଙ୍କ ମୁହଁ ଦେଖିବାକୁ ସମର୍ଥ ହୁଅନ୍ତି ନାହିଁ। Apparently those who are happy can only enjoy themselves because the unhappy bear their burdens in silence and but for this silence happiness would be impossible."

ଦୁଃଖୀ ଜନଗଣ ସମାଜର ପିଲିସଜକୁ ତୃଷ୍ଣା ଓ କ୍ଷୁଧାତୁର ପରି ମୁଣ୍ଡାଇଛନ୍ତି, ତାହାର ଅଲୋକିତ ଦୀପଧାରରେ ବସି ସୁଖୀ ଲୋକେ ଅଯସ କରିଚାଲିଛନ୍ତି। ଗୋଟାଏ ଜାଗାରେ ଖାଲ ହେଲେ, ଜଗତରେ ଅନ୍ୟ ଗୋଟିଏ ଜାଗା ଉଞ୍ଚ ହୁଏ। ସମାଜରେ ଦାରିଦ୍ର୍ୟ ସଂଞ୍ଚାରିତ ହୁଏ ସେତେବେଳେ, ଯେତେବେଳେ କେତେକ ଚତୁର ଲୋକ ବୁଦ୍ଧିବଳରେ ବିପୁଳ ଜମିଜମା ଓ ଧନସମ୍ପତ୍ତି ନିଜ ହାତରେ ଠୁଳ କରନ୍ତି। ଲେନିନ୍ ଏହାକୁ ମୁଷ୍ଟିମେୟଙ୍କ ହାତରେ ଧନର ମହଜୁଦିକରଣ ବୋଲି କହିଛନ୍ତି। ସ୍ୱାର୍ଥପର ଦୁନିଆରେ ସମ୍ପତ୍ତି ଠୁଳିକରଣ ଯୋଗୁଁ ମଣିଷ ଧନୀ ହୋଇପାରେ, କିନ୍ତୁ ମହାକାଳ ଏହା ସହ୍ୟ କରିପାରେନା। ସେ ସେହି ଧନାଢ୍ୟ ବ୍ୟକ୍ତିକୁ ରୋଗ, ଶୋକ, ବାର୍ଦ୍ଧକ୍ୟ, ଦାରିଦ୍ର୍ୟ ଓ କ୍ଷୟକ୍ଷତି ରୂପରେ ଗ୍ରାସ କରେ। ଧନ ସଞ୍ଚୟ କରି ସୁଖୀ ବୋଲାଇବାବେଳେ ସେ ଯେପରି ଗରିବ ତଥା ଆର୍ତ୍ତର ଆର୍ତ୍ତିକୁ କର୍ଣ୍ଣପାତ କରିନଥିଲା, ସେମିତି

କାଳଗ୍ରାସରେ ପଡ଼ିବା ବେଳେ ତାହାର ଆର୍ତ୍ତ ଚିତ୍କାର ଶୁଣି ମଧ୍ୟ କେହି ଶୁଣିପାରନ୍ତି ନାହିଁ। ତେଣୁ ଏକ ସମତାଭିତ୍ତିକ ସମାଜ ଆଡ଼କୁ ଲେଖକ ପ୍ରକାରାନ୍ତରେ ଅଙ୍ଗୁଳି ନିର୍ଦ୍ଦେଶ କରି ସେଥିରେ ମଣିଷର ଜାଗତିକ ସୁଖ ଚିରଦିନ ଉପଲବ୍ଧ ହୋଇପାରିବ ବୋଲି ଇଙ୍ଗିତ କରିଛନ୍ତି।

ଦ୍ୱିତୀୟ ପ୍ରସଙ୍ଗଟି ହେଲା, ଚିରନ୍ତନ ସୁଖଶାନ୍ତି। ଏହା ଆକାଶ-କୁସୁମ ପରି। ଆଜି ଉଲ୍‌କା ପରି ହାତରେ ଆସି ପଡ଼େ ତ ପୁଣି ଉଭାନ୍ ହୋଇଯାଏ। ତେଣୁ ସୁଖ ଉପଭୋଗ କରିଚାଲିଥିବା ଲୋକଟିକୁ ସ୍ଥିତପ୍ରଜ୍ଞ ହେବାକୁ ପଡ଼ିବ, ବିବେକୀ ହେବାକୁ ହେବ, ବିଚାରବନ୍ତ ହେବାକୁ ପଡ଼ିବ। ଏକ ଅସମ ସମାଜ (Uneven Society) ରେ ମଣିଷ ବିଚାରବନ୍ତ ହେବାକୁ ହେଲେ, ତାକୁ ବିପ୍ଳବୀ ହେବାକୁ ପଡ଼ିବ। ବିପ୍ଳବକୁ ଜୀବନର ଏକମାତ୍ର ମିଶନ ବା ତପସ୍ୟା ରୂପେ ଘୋଷଣା କରିବାକୁ ପଡ଼ିବ। ଉପସ୍ଥିତ ଆର୍ଥ-ସାମାଜିକ ବ୍ୟବସ୍ଥାର ଆମୂଳଚୂଳ ପରିବର୍ତ୍ତନ କରିପାରିଲେ ସେଇ ବିଚାରବନ୍ତ ଜଣକ ନିଶ୍ଚୟ ସୁଖୀ ହେବ ଏବଂ ତା'ସହ ସୁଖୀ ହେବେ କୋଟିକୋଟି ମଣିଷ। ଗୋସ୍‌ବେରୀ କୋଳି ସେଦିନ ପ୍ରତ୍ୟେକଙ୍କ ବାଡ଼ିରେ ଫଳିବ ଓ ସମସ୍ତେ ନିଜ ପିଣ୍ଡାରେ ବସି ସେଇ ସାମ୍ୟ ଫଳର ସ୍ୱାଦୁ ଚାଖିବେ। ଗୋସ୍‌ବେରୀ କୋଳିକୁ ଉପଲକ୍ଷ୍ୟ କରି ଗାଲ୍ଫିକ ବାସ୍ତବରେ ଏଇ କେତେପଦ ମର୍ମବାଣୀ ଶୁଣାଇବାକୁ ଚାହିଁଛନ୍ତି।

ଉପସ୍ଥିତ ସମାଜ ବ୍ୟବସ୍ଥାରେ ଅନେକ ଘୁଣ ପୋକର ସଂଚାର ଘଟିଥାଏ। ଏକ ଦଦରା ଲୁଗା ପରି ଏହା ଗୋଟିଏ ଗୋଟିଏ ଅଂଶ ଫାଟିଯାଇପାରେ। ସମୟର ଅନେକ ମୋଡ଼ରେ ସଂସ୍କାରପନ୍ଥୀମାନେ ଆବିର୍ଭୂତ ହୋଇ ସାମାଜିକ ସ୍ଖଳନକୁ ରୋକିଥାନ୍ତି ଓ ସେବା ମାଧ୍ୟମରେ ସମାଜକୁ ସଂସ୍କାର କରି ଠିକ୍ ବାଟକୁ ଆଣିଥାନ୍ତି। ଗାଲ୍ଫିକ ଚେକଭ୍ ଏହି ସଂସ୍କାର ବା reformation କୁ ନାପସନ୍ଦ କରିଛନ୍ତି। ଏହି ତାଳିପକା କାମ ସର୍ବାଦୌ ପରିହାର କରିବାକୁ ସେ ଆହ୍ୱାନ ଦେଇଛନ୍ତି ତାଙ୍କ "The House with Mansord" ଗଳ୍ପରେ।

ଭୋଲ୍‌ଚାନିଭୋଦ୍ ପରିବାରର ଦୁଇ ଝିଅ ଲେଡ଼୍ୟା ଓ ଚୈନ୍ୟା (Zhenya)ଙ୍କ ସାହଚର୍ଯ୍ୟ ଲାଭ କରିବାପାଇଁ ଏଇ ଗଳ୍ପର ନାୟକ ନିତିପ୍ରତି ସେଇ ପରିବାରକୁ ଯାତାୟାତ କରୁଥିଲେ। ଲେଡ଼୍ୟା ପରିବାରର ବଡ଼ଝିଅ ଭାରି କର୍ମନିଷ୍ଠା ଓ ସଂସ୍କୃତିସମ୍ପନ୍ନା। ଋଷିଆର ଏକ ଲୋକାଲ୍ ବୋର୍ଡ଼ର ଦୁର୍ନୀତିଗ୍ରସ୍ତ ମ୍ୟାନେଜ୍‌ମେଣ୍ଟର ମୁଖା ଖୋଲିବାକୁ ଯାଇ ଅତିଥିଙ୍କ ଆଗରେ ତା' ଶାସନମୁଖ୍ୟଙ୍କ ଅପକର୍ମ ବିଷୟରେ ସେ ବୟାନ କରିଛି ଏହିପରି- "Our whole district is in the hands of Balagin. He is the chairman of the local board and has put his nephews and sons-in-law into all the district posts and does whatever he likes. We must resist." (Selected Works, Chekhov-PPH, Moscow, P.70)

ସେହି ଗଳ୍ପରେ ଲେଡ଼୍ୟା ଓ ଅତିଥିଙ୍କ ମଧ୍ୟରେ ସେହି ଜିଲ୍ଲାରେ ଡାକ୍ତରଖାନା ଖୋଲିବା ବା ସ୍କୁଲ ପ୍ରତିଷ୍ଠିତ ହେବାପରି କେତୋଟି ବିକାଶମୂଳକ ପ୍ରସଙ୍ଗ ଉପରେ ଆଲୋଚନା ମଧ୍ୟ ହୋଇଛି।

ଅତିଥି ଏସବୁକୁ ବିରାଲୁଗାରେ କେବଳ ତାଳିପକା କାମ ବୋଲି କହିଛନ୍ତି। ସମସ୍ୟାଗୁଡ଼ିକ ପରିପକ୍ୱ, ତୀବ୍ର ଓ କଷ୍ଟପ୍ରଦ ହେଲେ ଯାଇ ସମାଜ ବ୍ୟବସ୍ଥାର ପରିବର୍ତ୍ତନ ହେବ ବୋଲି ଅତିଥି କହିଛନ୍ତି। ସେ କହିଛନ୍ତି- "In my opinion medical aid posts, schools, libraries, dispensaries only serve the cause of enslavement under existing circumstances. The people are fettered by rowdy chains, and you do nothing to breake them as under, only add new links there you have my convictions." (Selected Works-P.78)

ସମାଜ ସଂସ୍କାର ଅନେକ କ୍ଷେତ୍ରରେ ଅନେକ ସାମାଜିକ ସମସ୍ୟାର ମରାମତି କରିଥିବା ପରି ପ୍ରତୀତ ହେଲେ ବି ପରବର୍ତ୍ତୀ ସମୟରେ ସମାଜ ସେହି ପୂର୍ବତନ ରୀତିରେ ଚାଲୁଥିବାର ଦେଖାଯାଏ। ଅର୍ଥାତ୍, ସଂସ୍କାରର ନିଗଡ଼ ବନ୍ଧନ ଭିତରେ ସମାଜ ଟିକେହେଲେ ସଂଶୋଧିତ ହୋଇନଥିବା ଜଣାପଡ଼େ। ପୁରୁଣା ସମାଜ ତାହାର ଦୋଷଦୁର୍ବଳତା ଓ ବଦଭ୍ୟାସକୁ ନେଇ ଧୀର ମନ୍ଥର ଗତିରେ ଚାଲୁଥାଏ। ଯଥାପୂର୍ବଂ ତଥା ପରମ୍। ସ୍ୱାମୀଙ୍କ ମୃତ୍ୟୁବାର୍ଷିକର ଭୋଜିରେ ମଦ୍ୟ ସେବନର ବ୍ୟବସ୍ଥା ନକରି ପେଟ୍ରୋଗାଡ଼୍ ଜିଲ୍ଲାର ମାର୍ଶାଲ ଟ୍ରିଫନ୍ ଲୋଭିଚ୍‌ଙ୍କ ବିଧବାପତ୍ନୀ ଲ୍ୟୁବଭ୍ ପେଟ୍ରୋଭାନ୍ ଆମନ୍ତ୍ରିତ ଅତିଥିଙ୍କୁ ସୁଶୃଙ୍ଖଳିତ କରିବେ ବୋଲି ଯୋଜନା କଲେ। ନିଜ ସ୍ୱାମୀ ଅତିରିକ୍ତ ମଦ୍ୟପାନ କରି ମୃତ୍ୟୁମୁଖରେ ପଡ଼ିଥିବାର ପେଟ୍ରୋଭାନ୍ ଏ ଭୋଜିକୁ ମଦ୍ୟରହିତ କରିଥିଲେ। ଏପରି ନିରାମିଷାଶୀ ଭୋଜିର ବ୍ୟବସ୍ଥା ଦେଖି ଆଗନ୍ତୁକମାନଙ୍କ ମନ ଫିକା ପଡ଼ିଯାଏ। ସେମାନେ ବିଭିନ୍ନ ଆଳରେ ଜଣଜଣ କରି ପାଖଘୋଡ଼ାଶାଳାକୁ ଚାଲିଯାଆନ୍ତି। ସେଠାରେ ରଖିଆସିଥିବା ବ୍ରିଫକେଶ୍‌ରୁ ବା କୋଟ୍‌ପକେଟରୁ ମଦବୋତଲ ବାହାର କରି ସେ ସେଠାରେ ତତ୍‌କ୍ଷଣାତ୍ ତାହାର ସଦ୍‌ବ୍ୟବହାର କରି ଫେରିଆସନ୍ତି। ବିଦାୟ ସମ୍ଭାଷଣ ବେଳେ ମିସେସ୍. ପେଟ୍ରୋଭାନ୍ ପ୍ରତ୍ୟେକଙ୍କ ପାଟିରୁ ମଦଗନ୍ଧ ବାରିପାରନ୍ତି। ଭୋଜିସଭାରେ ମଦ୍ୟ ପିଇ ଜିଲ୍ଲାର ମୁଖ୍ୟ ବିଚାରପତି ଅଲାଲ୍‌କିନ୍ ନିଶାରେ ଟଳିପଡ଼ନ୍ତି। 'ତାଙ୍କୁ ମୂର୍ଚ୍ଛାବ୍ୟାଧି ଗ୍ରାସ କଲା' କହି ଡକ୍ଟର ଡୋରୟାମିନ୍ ତତ୍‌କ୍ଷଣାତ୍ ତାଙ୍କ ଚିକିତ୍ସା ଆରମ୍ଭ କରନ୍ତି। ନିଜ କୋଟ୍ ପକେଟ୍‌ରେ ରଖିଥିବା ବ୍ରାଣ୍ଡି ବୋତଲରୁ କିଛି ଢ଼ାଳି ତାଙ୍କ ମୁହଁରେ ସିଞ୍ଚିବାରୁ ଓ କପାଳରେ ଘଷିବାରୁ ସେ ଚେତା ଫେରିପାଆନ୍ତି। ଭୋଜିର ଆୟୋଜିକା ଏ ବିଷୟରେ ଜାଣିବାବେଳକୁ ଭୋଜିଟି ସମ୍ପୂର୍ଣ୍ଣଭାବେ ମଦ୍ୟପଙ୍କ ମହାମେଳାରେ ପରିଣତ ହୋଇଥିଲା। ରୁଷୀୟ ସମାଜର ପ୍ରତି ଘଟଣାରେ ଏହିପରି ସଂସ୍କାର ନାମରେ ପ୍ରହସନ, ନୀତିନାମରେ ହିପୋକ୍ରାସୀ ବା ଛଳନା, ସଂହତି ନାମରେ ବିରୋଧାଭାସ ଲାଗିରହିଥାଏ - ତାହାର ଏକ ଜୀବନ୍ତ ଚିତ୍ର ଟେକିଧରେ ଏହି ଗଳ୍ପ - "The Marbhal's Widow", ବିଶୁଦ୍ଧ ବ୍ୟଙ୍ଗ ଓ ହାସ୍ୟ ଏ ଗଳ୍ପର କେବଳ ପ୍ରାଣ ନୁହେଁ, ଏ ବ୍ୟଙ୍ଗରେ ଅଛି ମଣିଷକୁ ଚେତେଇ ଦେବାର ତାକତ୍, ମଣିଷ ନିଜକୁ ସଂଶୋଧନ କରିବାର ପ୍ରେରଣା। ତେଣୁ ଏ ଗଳ୍ପରେ ବ୍ୟଙ୍ଗ ହେଉଛି ଉଦ୍ଦେଶ୍ୟମୂଳକ ଏକ ହେତୁବାଦୀ ଅଥଚ କଳାତ୍ମକ ବ୍ୟଙ୍ଗ।

ବ୍ୟକ୍ତିଗତ ଦୁଃଖକୁ କଳାର ପୁଟ ଦେଇ ଗାଳ୍ପିକ ଚେକଭ୍ ସଫଳ ଭାବରେ ସାର୍ବଜନୀନ ଦୁଃଖରେ ରୂପାନ୍ତରିତ କରିଦେଇପାରନ୍ତି। ଦୁଃଖ ପାଇଥିବା ମଣିଷଟିର ଅନ୍ତର୍ବେଦନା ସହିତ ପାଠକର ଅନ୍ତର୍ବେଦନା ସମତ୍ୱ ଲଭିଲେ ପାଠକମନରେ ଜାତହୁଏ ସମ୍ବେଦନା। ଏହି ସମ୍ବେଦନା ସୃଷ୍ଟିକରି ସମାଜର ଅନ୍ତର୍ନିହିତ ଦୁଃଖ ଓ ଶୋକକୁ ଅଙ୍ଗୁଳି ନିର୍ଦ୍ଦେଶ କରି ଚିହ୍ନାଇଦେଲେ ଦିନେନା ଦିନେ ତା'ର ପ୍ରତିଷେଧକ ତିଆରି ହେବ ବୋଲି ଚେକ୍ଭ ଭାବୁଥିଲେ। ତାଙ୍କ ଜୀବନାବସାନ ପରେ ରୁଷିଆରେ ଆସିଥିବା ମହାନ୍ ଅକ୍ଟୋବର କ୍ରାନ୍ତି ଓ ତାହାର ପ୍ରଭାବରେ ଗଢ଼ିଉଠିଥିବା ଏକ ସୁସ୍ଥ, ସୁଷମ ସମାଜକୁ ଦେଖିଲେ, ଚେକଭ୍‌ଙ୍କ କଲମ ଯେ, ଏହି ସୁଖଦ ସମୟର ସ୍ୱପ୍ନ ଦେଖିଥିଲା, ତାହା ସ୍ପଷ୍ଟ ହୁଏ। "ଦୁଃଖ" ଗଳ୍ପର ନାୟକ ୧୯୧୭ ପରବର୍ତ୍ତୀ ରୁଷିଆରେ ବଞ୍ଚିଥିଲେ ହୁଏତ ତା'ପିଠି ଥାପୁଡ଼ାଇ କୌଣସି ଦରଦୀ ବନ୍ଧୁ ତାକୁ ସାନ୍ତ୍ୱନା ଦେଇଥାନ୍ତେ ବା ପୁତ୍ରହରା ଏ ପିତାକୁ ସମବେଦନା ଜଣାଇଥାନ୍ତେ 'Communism is the best form of humanism- ଯାହା ଲେନିନ୍ କହିଥିଲେ, ସମବେଦନା ପାଇ ଏ କଥାକୁ ପୁତ୍ରହରା ପିତା ତଥା କଚୁଆନ୍ ୟୋନା ଅନ୍ତରେ ଅନ୍ତରେ ଅନୁଭବ କରିଥାନ୍ତା। ୧୯୧୭ ମସିହା ପରେ ତିଆରି ହୋଇଥିବା ସମାଜବାଦୀ ସମାଜ ବାସ୍ତବରେ ମଣିଷକୁ ମୁଣ୍ଡ ଟେକି ମଣିଷ ହିସାବରେ ବଞ୍ଚିବାକୁ ପ୍ରେରଣା ଯୋଗାଇଥିଲା।

ଉପସ୍ଥିତ ଗଳ୍ପ 'ଦୁଃଖ' (The Grief) ରେ ବୃଦ୍ଧ କଚୁଆନ୍ ୟୋନାର ଏକମାତ୍ର ପୁତ୍ର ବାରିନ୍ ରୋଗରେ ପଡ଼ି ଆରପାରିକୁ ଚାଲିଯାଇଛି। ୟୋନା କାହାପାଖରେ ପୁତ୍ରବିୟୋଗର ମର୍ମଭେଦୀ ଦୁଃଖ ବର୍ଣ୍ଣନା କରିବାକୁ ଓ ପ୍ରତିବଦଳରେ ସମ୍ବେଦନା ଟିକିଏ ପାଇବାକୁ ଦରଦୀ ମଣିଷଟିଏ ଖୋଜି ପାଇନାହିଁ। ସେ ନିଜ ଟାଙ୍ଗାରେ ସେଦିନ ଶୀତରାତିରେ ନେଉଥିବା ସାହେବଙ୍କୁ ନିଜ ମନର ଦୁଃଖ ଖୋଲି କହିବାକୁ ସୁଯୋଗ ଖୋଜିଛି। ମାତ୍ର ସ୍ୱାର୍ଥପର ଓ ଆତ୍ମକୈନ୍ଦ୍ରିକ ବ୍ୟକ୍ତିଟି ତା' କଥାକୁ ଏଡ଼େଇଯାଇଛି। ତା'ପରେ ସେ ଏକଥା କହିବାକୁ ସୁଯୋଗ ଖୋଜିଛି ପରବର୍ତ୍ତୀ ସବାର୍, ତା'ପୁଅର ସମବୟସ୍କ ତିନିଜଣ ମଦ୍ୟପ ଟୋକାଙ୍କୁ, କିନ୍ତୁ ସେମାନେ ତା' କଥା ଶୁଣି ନାହାନ୍ତି। ଘୋଡ଼ା ଶାଳରେ ନିଆଁ ପୁଉଁ ଥିବା ଓ ମଦ ନିଶାରେ ମଜଗୁଲ୍ ହୋଇଥିବା ଅନ୍ୟ ଏକ ସାଥୀ କଚୁଆନ୍‌କୁ ସେ କହିବାକୁ ଚେଷ୍ଟା କରି ବିଫଳ ହୋଇଛି। ପରିଶେଷରେ ନିଜ ଗାଡ଼ିର ଘୋଡ଼ା କାନରେ ସେ ମନର ଦୁଃଖ କହିଛି। ସେଇ ଛୋଟ ଘୋଡ଼ାଟି କିନ୍ତୁ ଜଣେ ଦରଦୀ ବନ୍ଧୁପରି ବୁଢ଼ାର ସବୁକଥା ଶୁଣିଛି ଓ ତା'ମାଲିକର ହାତ ଉପରେ ଦୀର୍ଘଶ୍ୱାସ ଛାଡ଼ିଛି। ରୁଷୀୟ ଥିଲାବାଲା ସମାଜରେ ବ୍ୟକ୍ତି ଓ ବ୍ୟକ୍ତି ମଧ୍ୟରେ ବଢ଼ିଚାଲିଥିବା ସ୍ୱାର୍ଥପର ବ୍ୟକ୍ତିକୈନ୍ଦ୍ରିକତା ଓ ସେଥିପାଇଁ ବଢ଼ିଉଠୁଥିବା ବ୍ୟକ୍ତିବାଦୀ ଆନ୍ତରିକତା ପ୍ରତି ଗାଳ୍ପିକ ଚେକ୍ଭ ଏ ଗଳ୍ପରେ ଇଙ୍ଗିତ କରି ଏକ ସମତା ଭିତ୍ତିକ ସମାଜ ଗଠିତ ହେଲେ ବ୍ୟକ୍ତିତ୍ୱର ଏ ସ୍ଖଳନ ଯେ ରୋକାଯାଇ ପାରିବ, ତାହାହିଁ ସୂଚାଇ ଦେଇଛନ୍ତି।

ପେଟ୍ରୋଗାଡ଼ ସହରରେ କଚୁଆନ୍‌ଟିଏ ଯେତେବେଳେ ତା' ମର୍ମର ଦୁଃଖ କହିବା ପାଇଁ ଦରଦୀ ବନ୍ଧୁଟିଏ ପାଉନାହିଁ, ସେତେବେଳେ ଗୋଟାଏ ବିକଶିତ ଗ୍ରାମ୍ୟଭିତ୍ତିକ ସହରରେ ଜଣେ

ଭିକ୍ଷୁକକୁ ଦରଦୀ, ସମ୍ବେଦନଶୀଳ ତଥା ଉଦାରବାଦୀ ବନ୍ଧୁଟିଏ ଜୁଟିଯାଉଛି। ଚେକଭ୍‌ଙ୍କ 'ଭିକ୍ଷୁକ' ଗଳ୍ପରେ ଏ ଆଲେଖ୍ୟ ଅଙ୍କିତ ହୋଇଛି। ଜଣେ ଅସହାୟ ସର୍ବହରାକୁ ସମବେଦନା ଜଣାଇ ଅନ୍ୟ ଜଣେ ଦରିଦ୍ର ମଣିଷ କିପରି ସହାୟତାର ହାତ ବଢ଼ାଇଦେଇପାରେ, ଏହି ଗଳ୍ପଟି ତାହାର ଏକ ଉଦାହାରଣ। ତଦାନୀନ୍ତନ ରୁଷିଆରେ ଜାର୍ ଶାସନର ଶୋଷଣକଷଣରୁ ଜନଗଣଙ୍କୁ ମୁକ୍ତି ଦେବାପାଇଁ ଶ୍ରମିକ ଶ୍ରେଣୀର ସଂଗ୍ରାମକୁ ରୁଷିଆର କୃଷକସମାଜ ସର୍ବାନ୍ତକରଣରେ ସାହାଯ୍ୟ କରିଥିଲା ଓ ସମର୍ଥନ କରିଥିଲା। 'ଭିକ୍ଷୁକ' ଗଳ୍ପରେ ଦଳିତଙ୍କୁ ଦଳିତର ନୈତିକ ସମର୍ଥନର ମର୍ମବାଣୀ ପ୍ରକାରାନ୍ତରେ ରାଜନୀତିକ, ଆର୍ଥନୀତିକ ଓ ସାଂସ୍କୃତିକ କ୍ଷେତ୍ରରେ ବିଭିନ୍ନ ଶୋଷିତ ଶ୍ରେଣୀର ପାରସ୍ପରିକ ସହଯୋଗିତାର ମର୍ମବାଣୀ, ଯାହାକି ଚେକ୍‌ଭ ତୋଳିଧରିଛନ୍ତି। ଗଳ୍ପରେ ଧନୀକ ଓକିଲବାବୁ ସ୍କଭରଟସଫ୍‌ଙ୍କ ଅଗଣାର ଲୁଗ୍‌କଫ୍ ନାମକ ଜଣେ ଦଳିତ ଲୋକ କିଛି ଖାଦ୍ୟ ମାଗିବାକୁ ଆସି ପହଞ୍ଚେ। ପ୍ରଚଣ୍ଡ ଶୀତରେ ଲୋକଟିର ଭୋକିଲା ମୁହଁକୁ ଦେଖି ବି ତରଳେନା ଓକିଲବାବୁଙ୍କ ହୃଦୟ। ସେ ଅଗଣାରେ ପଡ଼ିଥିବା କେତୋଟି କାଠଗଡ଼କୁ ଚିରି ଫାଳ କରିଦେଲେ, ସେଇ ଶ୍ରମ ବିନିମୟରେ କିଛି ରୁବଲ୍ ଦେବେ ବୋଲି ସର୍ତ୍ତ କରନ୍ତି। ଲୁଗ୍‌କଫ୍ ଯେତିକି ଦୁର୍ବଳ ଥିଲା କାଠଗୁଡ଼ିକୁ ଚିରି ପାରିନଥାନ୍ତା, ଯଦି ତାକୁ ଆବୁଆଳକୁ ଗଡ଼ାଇନେଇ ଓକିଲଙ୍କ ଗୃହ ଚାକର ଓଲଗା ସାହାଯ୍ୟ କରିନଥାନ୍ତା ! ଓଲଗା କାଠ ଚିରି ଦେଇ ଲୋକଟିକୁ ଖାଦ୍ୟ ଓ ମଜୁରୀ ପାଇବାରେ ସାହାଯ୍ୟ କରିଥିଲା ସତ୍ୟ, କିନ୍ତୁ ସେ ଦରିଦ୍ର ଲୁଗ୍‌କଫ୍‌ର ମଦ୍ୟପାନ ଅଭ୍ୟାସକୁ ନାପସନ୍ଦ କରି ତାକୁ ଗାଳି ଦେଇଥିଲା। ପରବର୍ତ୍ତୀ ସମୟରେ ଲୁଗ୍‌କଫ୍ ନିଜେ ନିଜର ଚରିତ୍ରକୁ ସଂଶୋଧନ କରିଛି ଓ ସମାଜରେ ପ୍ରତିଷ୍ଠିତ ହୋଇପାରିଛି। ଓଲ୍‌ଗାର ଚେତାବନୀ ତାହାର ଜୀବନରେ ପରିବର୍ତ୍ତନ ଆଣିଥିବାର କଥା ସେ ସ୍ୱୀକାର କରିଛି। ଲୁଗ୍‌କଫ୍ ସ୍ୱୀକାର କରିଛି- "ଓଲଗା ସେଦିନ ମୋ' ଦୁର୍ଦ୍ଦଶା ଦେଖି କାନ୍ଦିବାକୁ ଲାଗିଲା ଓ ମୋତେ ହୁସିଆର କରିଦେଇ କହିଲା, ଏଇଭଳି ମିଛ କହି ଦିନ କାଟିଲେ ଅନବରତ ମଦ ଗିଳିଲେ ଈଶ୍ୱର ତୁମକୁ ଅଭିଶାପ ଦେବେ... ତୁମର ସର୍ବନାଶ ହେବ। ସେଦିନ ଓଲ୍‌ଗାର ଆଖିର ଅଶ୍ରୁ, ସ୍ନେହ, ସତ୍ ପରାମର୍ଶ ମୋତେ ନୂଆ ଜୀବନ ଦେଇଛି। ମୋତେ ମୃତ୍ୟୁମୁହଁରୁ ଫେରାଇ ଆଣିଛି। ମୁଁ ମଦ ପିଆଛାଡ଼ି ଦେଇଛି। ଭୋଡ୍‌କା ଦେଖିବାମାତ୍ରେ ତା' ମୁହଁଟା ମନେ ପଡ଼ିଯାଏ।" (ସମାରୋହ-ଗଳ୍ପ- ଭିକ୍ଷୁକ, ଅନୁସୃଜନ ପ୍ରକାଶ ଦାସ - ମେ-ଜୁନ-୨୦୦୫)। ଓଲଗା ଚରିତ୍ରର ଏହା କ୍ୟାଥଲିକ୍ ଧର୍ମୀୟ ଦାନଶୀଳତା ବା କରୁଣାମୟ ବିଭାବ ହୋଇପାରେ, କିନ୍ତୁ ତତ୍‌କାଳୀନ ରୁଷିଆରେ କ୍ୟାଥଲିକ୍ ଏକେଶ୍ୱରବାଦୀ ଦୃଢ଼ ପରମ୍ପରା ହିଁ ସାଧାରଣ ଲୋକଙ୍କ ଦାରିଦ୍ର୍ୟ ଓ ଶୋଷିତ ହେବାର ଦେଖି ବିଚଳିତ ହୋଇଛି ଓ ସାଧାରଣ ଭକ୍ତଙ୍କୁ ତାହା ବିରୋଧରେ ବିପ୍ଳବୀ କରି ଠିଆକରାଇଦେଇଛି। ସୁପ୍ତ ଅଚେତନ ଲୋକଙ୍କୁ ଜାଗ୍ରତ କରିବାରେ, ସଂଶୋଧିତ କରିବାରେ ଓ ସେମାନଙ୍କ ଚରିତ୍ରରେ ଏକ ବୈପ୍ଳବିକ ପରିବର୍ତ୍ତନ ଆଣିବାରେ ଓଲଗାମାନଙ୍କର ଭୂମିକା କିଛି କମ୍ ଗୁରୁତ୍ୱପୂର୍ଣ୍ଣ ନଥିଲା ତତ୍‌କାଳୀନ୍ ରୁଷିଆରେ।

ଜାର୍ ଶାସିତ ରୁଷିଆର ଅମଲାତାନ୍ତ୍ରିକ ବ୍ୟବସ୍ଥାର ମଜ୍ଜକୁ ତୋଷାମଦୀ ତୁଚ୍ଛ ପ୍ରଶଂସା, ତୁଷ୍ଟିକରଣାଦି ଘୁଣପୋକ ଚରି ଯାଇଥିଲା। ତଳିଆଶ୍ରେଣୀର କର୍ମଚାରୀ ଏ ବ୍ୟବସ୍ଥାରେ

ତୋଷାମଦକାରୀ ସ୍ତରକୁ ଖସି ଯାଇଥିଲା। ବଡ଼ ହାକିମଙ୍କୁ ତୁଷ୍ଟ କରିବା ବା ତାଙ୍କ ପ୍ରିୟଭାଜନ ହୋଇ ରହିବା ସେତେବେଳର ତଳଶ୍ରେଣୀର କର୍ମଚାରୀଙ୍କ ଏକମାତ୍ର ମୁକ୍ତିର ମାର୍ଗ ଥିଲା। 'ଜଣେ ସରକାରୀ କିରାଣୀର ମୃତ୍ୟୁ' ଗଳ୍ପରେ ଏକ ପ୍ରେକ୍ଷାଳୟରେ ଅଧସ୍ତନ କିରାଣୀ ଚେରିକୋଭ ଜଣେ ପଦସ୍ଥ ଅଫିସର ବ୍ରିଜ୍‌ଲଭ୍‌ଙ୍କ ଉପରେ ଛିଙ୍କିଦେଇ ଭାବିଛି-ମୁଁ ଏତେବଡ କର୍ମଚାରୀଙ୍କ ଉପରେ ଛିଙ୍କି ଦେଲି! ଅବଶ୍ୟ ସେ ମୋ' ବିଭାଗର କର୍ତ୍ତା ନୁହନ୍ତି, ତଥାପି ଏତେ ବଡ଼ ଲୋକଙ୍କ ଉପରେ ଛିଙ୍କିଦେବା ମୋ' ପକ୍ଷରେ ଘୋର ଅନ୍ୟାୟ। ତାଙ୍କୁ କ୍ଷମା ମାଗିବା ମୋ'ର ଉଚିତ ହେଉଛି।" ବ୍ରିଜ୍‌ଲଭ୍ ପ୍ରେକ୍ଷାଳୟରେ ଏ ଛିଙ୍କ ବିଷୟରେ ଭୁଲିଯାଇଥିଲେ ବି ଚେରିକୋଭ୍ ବାରମ୍ବାର ତାଙ୍କୁ ଦେଖାକରି କ୍ଷମାପ୍ରାର୍ଥନା କରିଛି। ପରିଶେଷରେ କିରାଣୀ ଉପରେ ବ୍ରିଜ୍‌ଲଭ୍ ବିରକ୍ତ ହୋଇଛନ୍ତି। କିନ୍ତୁ ତୋଷାମଦକାରୀର ଅପରାଧପ୍ରବଣତାର ଅନ୍ତ ହୋଇନାହିଁ। ଦୁଶ୍ଚିନ୍ତା ଜନିତ ମାନସିକ ଅଶାନ୍ତିରେ କିରାଣୀଟି ମୃତ୍ୟୁ ବରଣ କରିଛି। ଏ ଗଳ୍ପରେ ତତ୍କାଳୀନ ଅମଲାତନ୍ତ୍ରର ଜଣେ ସଦସ୍ୟଙ୍କ ହୀନମନ୍ୟତା ତଥା ତାହାର ଚରିତ୍ରର ଦୁର୍ବଳତମ ଦିଗ ଉପରେ ଚେକ୍‌ଭ ଅଲୋକପାତ କରିଛନ୍ତି। ଏପ୍ରକାର ଚରିତ୍ର ବହନ କରୁଥିବା ଅମଲାତନ୍ତ୍ରର ଯେ ସଂସ୍କାର ଓ ବିପ୍ଳବର ଏକାନ୍ତ ପରିପନ୍ଥୀ ଏହା ଗାଳ୍ପିକ ଦର୍ଶାଇ ଦେଇଛନ୍ତି।

ତତ୍କାଳୀନ ଅମଲାତନ୍ତ୍ରର ଦ୍ୱୈତ ମନୋଭାବ (dualism), ଦ୍ୱିଧାଗ୍ରସ୍ତ କର୍ମତତ୍ପରତା ଓ ସିଦ୍ଧାନ୍ତ ନେବାର ଦୋଦୁଲ୍ୟମାନତାକୁ ଚେକ୍‌ଭ ବ୍ୟଙ୍ଗାତ୍ମକ ରୀତିରେ ଚିତ୍ରଣ କରିଛନ୍ତି, ତାଙ୍କ ପ୍ରସିଦ୍ଧ ଗଳ୍ପ 'ବହୁରୂପୀ'ରେ। ଯଦିଓ ଆଇନ୍ ଆଗରେ ସମସ୍ତେ ସମାନ ଓ କୁକୁର କାମୁଡ଼ିଲେ ତାହାର ମାଲିକ ଆଇନାନୁସାରେ ଦଣ୍ଡିତ ହେବାର ନିୟମ ଅଛି, ତଥାପି ସ୍ଥାନ-କାଳ-ପାତ୍ର ଭେଦରେ ସେ ଆଇନ୍ ବଦଳିଯାଇଥିଲା। ଜେନେରାଲ୍‌ଙ୍କ କୁକୁର କାମୁଡ଼ିଲେ କୁକୁରଟିର ଅପରାଧ ମାର୍ଜନୀୟ, ସାଧାରଣ ଲୋକର କୁକୁର କାମୁଡ଼ିଲେ ସେଇଟି ବଧଯୋଗ୍ୟ- ଏଇ ପ୍ରକାର ପକ୍ଷପାତୀ ବିଚାର କରିବାରେ ସିଦ୍ଧହସ୍ତ ଥିଲେ 'ବହୁରୂପୀ' ଗଳ୍ପର ନାୟକ ଅକୁମେଲେଭ୍। କାମୁଡ଼ିଥିବା କୁକୁରଟି ସାଧାରଣ ଲୋକର କୁକୁର କିଏ ଜଣେ କହିବାରୁ ସେଇଟିକୁ ଗୁଳି କରିବାକୁ ଇନ୍‌ସପେକ୍ଟର ଅକୁମେଲଭ୍ କହିଥିଲେ। ଯେତେବେଳେ ଭିଡ଼ ଭିତରୁ କେହି ଜଣେ କହିଲା ଯେ ତାହା ଜେନେରାଲ୍‌ଙ୍କ କୁକୁର, ଇନ୍‌ସପେକ୍ଟର ନିଜର ସ୍ୱର ପରିବର୍ତ୍ତନ କରି ବା ଓଲଟିପଡ଼ି ଆହତ ପଥଚାରୀ ଖୁକିନ୍‌ଙ୍କୁ ପଚାରିଛି- "ମୁଁ ଗୋଟାଏ କଥା ବୁଝିପାରୁନାହିଁ। କୁକୁରଟି ଆସି ତୋତେ କିପରି କାମୁଡ଼ିଲା ? ଆଉ କାହାକୁ କାମୁଡ଼ିଲା ନାହିଁ କାହିଁକି ? ତୋ ହାତର ଆଙ୍ଗୁଳିକୁ ତା'ର ମୁହଁ ପାଇଲା କିପରି, କୁକୁରଟା ତ ଏତେ ସାନ, ଆଉ ତୁ ହେଉଛୁ ଡେଙ୍ଗା। ତୁ ବୋଧହୁଏ ଗୋଟାଏ ଲୁହାକଣ୍ଟାରେ ଆଙ୍ଗୁଳିଟି ଖଣ୍ଡିଆ କରି କ୍ଷତିପୂରଣ ପାଇବାକୁ ଫନ୍ଦି କରୁଛୁ।"

ଏହିପରି ବିଭିନ୍ନ ଲୋକଙ୍କ କଥାକୁ ବିବେଚନା ନେଇ ଇନ୍‌ସପେକ୍ଟର କୁକୁର ସମ୍ପର୍କରେ ତାଙ୍କର ସ୍ୱର ଓ ସିଦ୍ଧାନ୍ତ ବାରମ୍ବାର ବଦଳାଇଛନ୍ତି। ଆଇନ୍ ଓ ଶୃଙ୍ଖଳାରକ୍ଷାକାରୀ ଇନ୍‌ସପେକ୍ଟରଙ୍କର ଗୋଟାଏ ନିର୍ଦ୍ଦିଷ୍ଟ ବିଷୟରେ ଏହିପରି ରଙ୍ଗ ପରିବର୍ତ୍ତନକୁ ଗାଳ୍ପିକ ଚେକ୍‌ଭ ଶାଣିତ ବ୍ୟଙ୍ଗ କରିଛନ୍ତି।

ଅମଲାତନ୍ତ୍ରର ଉଚ୍ଚବର୍ଗ ଓ ସଂଭ୍ରାନ୍ତବର୍ଗର ଲୋକଙ୍କ ପ୍ରତି ଏହିପରି ତୋଷାମଦୀ ମନୋଭାବ ସମାଜରେ ସାମାଜିକ ନ୍ୟାୟପ୍ରତିଷ୍ଠା କ୍ଷେତ୍ରରେ ପ୍ରଧାନ ବାଧକ ବୋଲି ଲେଖକ ସୂଚନା ଦେଇଛନ୍ତି ।

ଗାଳ୍ପିକ ଚେକ୍‌ଭ କଥାସାହିତ୍ୟରେ, ବିଶେଷତଃ ତାଙ୍କ ଗଳ୍ପରେ ଅଛି ଏକ ବେଗବାନ୍ ଅନ୍ତଃସ୍ରୋତ । ପାଠକ ଥରେ ଗଳ୍ପଟି ପଢ଼ିବାକୁ ଆରମ୍ଭ କଲେ, ତାହାକୁ ଶେଷ ନକରି ରହିପାରେନା ।

ଗଳ୍ପଭିତରେ ବର୍ଣ୍ଣନାର ବେଗ ଏତେ ତୀବ୍ର ଯେ ତାହା ପାଠକରି ମନକୁ ଖୁବ୍ ଶୀଘ୍ର ପରିବର୍ତ୍ତନମୁଖୀ କରାଏ । ଋଷିଆର ଲୋକେ ରାଜତନ୍ତ୍ରର ଅତ୍ୟାଚାରରେ ଦରମଲା ହୋଇଥିବାବେଳେ ଚେକ୍‌ଭ ସେମାନଙ୍କ କାନରେ କଥାସାହିତ୍ୟର ସଂଜୀବନୀ ମନ୍ତ୍ର ପାଠ କରିଛନ୍ତି ବୋଲି ତାଙ୍କ ସମୟର ଅନ୍ୟତମ ଶ୍ରେଷ୍ଠ କଥାକାର ମାକ୍ସିମ୍ ଗର୍କୀ ୧୯୦୦ ମସିହା ଜାନୁଆରୀ ୧୭ ତାରିଖରେ ଚେକଭ୍‌ଙ୍କୁ ଲେଖିଥିବା ପତ୍ରରେ ଉଲ୍ଲେଖ କରିଛନ୍ତି । ମୋଟଉପରେ ଚେକ୍‌ଭଙ୍କ ଗଳ୍ପରେ ଅଛି, ଲୋକଙ୍କୁ କୌଣସି ସମସ୍ୟା ବିଷୟରେ ମତେଇଦେବା ଓ ତତେଇଦେବାର ଶକ୍ତି । ତାଙ୍କର ଭଦ୍ରମହିଳା (Lady) ଗଳ୍ପରେ ଗଳ୍ପରନାୟିକାର ଚରିତ୍ରକୁ ଏତେ କ୍ରୂରତାର ସହ ଚିତ୍ରଣ କରାଯାଇଛି ଯେ ଗର୍କୀ ଲେଖିଛନ୍ତି- "I immediately felt like being unfaithful,to my wife, suffering, cursing and so on. But I was not unfaithful to my wife- no chance I merely had a terrific quarrel with her and with her sister's husband, my bosom friend. I vow you did not reckon on such an effect, did you? (M. Gorkey, Collected works-Vol. 10.P.352)

ଚେକ୍‌ଭଙ୍କ ଶାଣିତ ବ୍ୟଙ୍ଗରେ ଅଛି ମଣିଷକୁ ଆମୂଳଚୂଳ ସଂଶୋଧନ ବା ପୁର୍ନଗଠନ କରିଦେବାର ଶକ୍ତି । ସମଗ୍ର ଋଷିଆରେ ପରିବର୍ତ୍ତନର ଆବାହନକାରୀ ମଧ୍ୟବିତ୍ତ ଶ୍ରେଣୀର ଗତିପ୍ରକୃତି ଓ ଦୋଦୋପାଞ୍ଚ ରୀତି ଦେଖି ଚେକଭ୍ ଦେଶଟା ପାଗଳା ରୋଗୀର ଏକ ୱାର୍ଡ଼ରେ ପରିଣତ ହୋଇଯାଇଛି ବୋଲି କଟାକ୍ଷ କରିଥିଲେ, ତାଙ୍କ ପ୍ରସିଦ୍ଧ ଗଳ୍ପ 'ଛ ନମ୍ବର ୱାର୍ଡ଼'ରେ । ଦେଶରେ ଏମିତି ଖରାପ ପରିସ୍ଥିତି ଆସିଛି ଯେ ଗ୍ରୋମୋଭ୍ ନାମକ ଲୋକଟି ସେଠାରେ କାହାର ଧନଜୀବନ ସୁରକ୍ଷିତ ନୁହେଁ ବୋଲି ଆତଙ୍କିତ ହୋଇଛି । ଯେକୌଣସି ଲୋକ ଯେକୌଣସି ପରିସ୍ଥିତିରେ ଆରେଷ୍ଟ୍ ହୋଇଯିବାର ସମ୍ଭାବନା ଅଛି । ଏଇକଥା ସଦାସର୍ବଦା ଭାବି ଗ୍ରୋମୋଭ୍ ନିଜ ମଧ୍ୟରେ ବଢ଼ାଇଦେଲେ ଏକ ଅପରାଧପ୍ରବଣତା । ସେ ପାଗଳ ବୋଲି ଘୋଷିତ ହେଲେ । ତାଙ୍କୁ ଡାକ୍ତରଖାନାର ଛ'ନମ୍ବର ୱାର୍ଡ଼ରେ ଗୋଟେ ଖଟିଆରେ ବାନ୍ଧିରଖି ଚିକିତ୍ସା କରାଗଲା । ମାନସିକ ରୋଗୀଙ୍କ ପ୍ରତି ବିଶେଷ ଦରଦୀପ୍ରାଣ ଡକ୍ଟର ରାଗିନ୍ ଏଇ ରୋଗୀଟିର ଚିକିତ୍ସା ଦାୟିତ୍ୱରେ ରହିଲେ । ରୋଗୀଟି ସହିତ ବନ୍ଧୁବାର କଥାବାର୍ତ୍ତା କରି ରୋଗୀର ଅନେକ ଦୃଷ୍ଟିଭଙ୍ଗୀ ଓ ଯୁକ୍ତି ଜଣେ ବିଚାରବନ୍ତ ଲୋକର ଯୁକ୍ତି ବୋଲି ଡାକ୍ତର ଭାବିଲେ । ଲୋକଟି ପାଗଳ ନୁହେଁ, ବରଂ ସମଗ୍ର ଋଷୀୟ ସମାଜ ମାନସିକ ଭାବେ ରୋଗଗ୍ରସ୍ତ ଓ ଚିନ୍ତାର ଦାରିଦ୍ର୍ୟରେ ସଢ଼ୁଛି ବୋଲି ସେ ଭାବିଲେ । ରୋଗୀଟି

ସହ ମାନସିକ ଚିନ୍ତନ କ୍ଷେତ୍ରରେ ଡାକ୍ତର ଏତେ ସମତା ଲଭିଲେ ଯେ' ଡାକ୍ତର ରାଗିନ୍‌ଙ୍କୁ ସହକର୍ମୀଗଣ ପାଗଳ ଆଖ୍ୟାଦେଲେ। ଗଳ୍ପର ଶେଷଭାଗରେ ଡକ୍ଟର ରାଗିନ୍ ସେଇ ଛ'ନମ୍ବର ୱାର୍ଡ଼ରେ ଚିକିତ୍ସା ନିମନ୍ତେ ଭର୍ତ୍ତି ହେଲେ। ଏଇ ନୂଆପାଗଳ ରୋଗୀଟି ଶେଷରେ ୱାର୍ଡ଼ର ଦାୟିତ୍ୱରେ ଥିବା ଜଗୁଆଳିର ହାତରୁ ମାଡ଼ ଖାଇ ମୃତ୍ୟୁବରଣ କଲେ। ଗଳ୍ପଟିର ଅନ୍ତର୍ନିହିତ ବ୍ୟଙ୍ଗର ତଳେତଳେ ଶୋକୋଚ୍ଛ୍ୱାସ ଏତେ ଅନ୍ତଃସଲୀଳା ଯେ, ତାହାର ପ୍ରଭାବଶାଳୀ ଶକ୍ତିକୁ ସ୍ୱୀକାର କରି କଥାକାର ଗର୍କୀ ଲେଖିଛନ୍ତି- "everything appears crude, as if written not by a pen, but by a cudgel , ଛ' ନମ୍ବର ୱାର୍ଡ଼ର ଚଳମାନ୍ ବର୍ଣ୍ଣନା ଭିତରେ କଥାକାର ଚେକ୍‌ଭ ଚେତନାହତ ହୋଇ ଶୋଇଥିବା ଗୁଷ୍ଠୀୟମାନଙ୍କ ପ୍ରତି ମଧୁର ଭର୍ତ୍ସନା କରି ସେମାନଙ୍କୁ ନିଦରୁ ଉଠିବାକୁ ଡାକରା ଦେଇଛନ୍ତି। ସେ କହିଛନ୍ତି- "ଉଠ, ବେଗି ବେଗି। ଦେଖ, ତମ ନିଜ ଭିଟାମାଟି ଆସି ପରିଣତ ହେଲାଣି ଏକ ପାଗଳଗାରଦରେ" ଗପଟିକୁ ତୀବ୍ରତା ଦେବାପାଇଁ ବା ଗପଟିର ଆଘାତକାରୀ ଶକ୍ତି ବଢ଼ାଇବାପାଇଁ ଲେଖକ ଚେକ୍‌ଭ କଲମ ନୁହେଁ, ସତେ ଯେପରି ଏକ ଠେଙ୍ଗାର ଉପଯୋଗ କରିଛନ୍ତି। ସମାଜ ପ୍ରତି ଏଇ ପ୍ରକାର ପ୍ରତିବଦ୍ଧତା ହେତୁ, ଲେଖକ ଚେକ୍‌ଭ ବିଶ୍ୱର କଥାସାହିତ୍ୟରେ ଜଣେ ମହାନ୍ ସ୍ରଷ୍ଟା ରୂପେ ବାରିହୋଇପଡ଼ନ୍ତି।



# ରେନେସାଁ ଓ କବିବର ରାଧାନାଥ

## ୟୁରୋପୀୟ ରେନେସାଁ

ରେନେସାଁକୁ ବାଖ୍ୟା କରି ଇଂରାଜୀ ସାହିତ୍ୟର ଇତିହାସକାର ଡ. ଆର୍.ଏମ୍.ଲଭେଟ୍ ମତ ଦିଅନ୍ତି- "The Renaissance was in essence an intellectual rebirth. It showed itself in the effort of the individual to free himself from rigid institutions of the Middle Ages, feudalism and the Church, and to assert his right to live, to think and to express himself in accordance with a more flexible secular code." (A History of English Literature P.62, 1963 London Edn.) ୟୁରୋପରେ ରେନେସାଁର ଆବିର୍ଭାବ ଘଟେ ପଞ୍ଚଦଶ ଶତାବ୍ଦୀରେ। ଏଇ ସମୟ ଖଣ୍ଡରେ ରାଜନ୍ୟବର୍ଗ ସହରବାସୀ ନାଗରିକକୁ ହାତ କରି ସାମନ୍ତ ଓ ଅଭିଜାତବର୍ଗର ଶକ୍ତିକୁ ଚୂର୍ଣ୍ଣ କରି ଦିଅନ୍ତି। ଜାତି (nationality) ସତ୍ତା ଭିତ୍ତିରେ ଦେଶେ ଦେଶେ ରାଜତନ୍ତ୍ର ପ୍ରତିଷ୍ଠିତ ହୁଏ ଓ ସେଥିରୁ ଆଧୁନିକ ୟୁରୋପୀୟ ଜାତି ସମୂହ ତଥା ୟୁରୋପୀୟ ଥିଲାବାଲା ସମାଜ ବିକାଶ ଲାଭ କରେ।

ରେନେସାଁର ଆଗମନରେ ଇଟାଲୀୟ ଶିଳ୍ପକଳାର ବିକାଶ ଆଶାତୀତ ରୂପେ ସଂଘଟିତ ହୁଏ। ଶିଳ୍ପକଳାରେ ଚିରାୟତରୀତି ପ୍ରକଟିତ ହୁଏ। ଇଟାଲୀ, ଫ୍ରାନ୍ସ ଓ ଜର୍ମାନରେ ଏକ ନୂଆ ସାହିତ୍ୟର ଉଦ୍‌ଭବ ହୁଏ। ଏଥିରେ କ୍ଲାସିକାଲ୍ ରୀତି ହିଁ ପ୍ରକଟିତ ହୁଏ। ରେନେସାଁର ଲକ୍ଷଣ ହେଲା – ପ୍ରାଚୀନର ବିଲୟୀକରଣ ଓ ନୂତନର ଆବାହନା। ନୂତନକୁ ଜାଣିବାର ଉତ୍‌କଣ୍ଠା ଯୋଗୁଁ ଜଗତର ଅନାବିଷ୍କୃତ ଭୂଖଣ୍ଡମାନ ରେନେସାଁ କାଳରେ ଆବିଷ୍କୃତ ହେଲା। ୧୯୪୨ ମସିହାରେ ନରୱେର ବିଖ୍ୟାତ ନାବିକ କଲମ୍ବସ୍ ପୃଥିବୀର କେତେକ ଭୂଖଣ୍ଡ ଆବିଷ୍କାର କରିବା ପାଇଁ ରାଣୀ ଇସାବେଲାଙ୍କ ସନନ୍ଦ ଲାଭ କରି ପଶ୍ଚିମ ଦିଗକୁ ଜଳଯାତ୍ରା କଲେ। ସେ ୱେଷ୍ଟଇଣ୍ଡିଜ୍ ଓ ଆମେରିକା ଆବିଷ୍କାର କଲେ। ଅନ୍ୟ ଏକ ଜଳଯାତ୍ରା କାଳରେ ସେ ଆଫ୍ରିକାର ଉତ୍ତମାଶା ଅନ୍ତରୀପ ଯାଏ ଆସିଲେ। ୱାଲଟର୍ ରାଲେ, ସ୍କଟ୍ ଓ ଭାସ୍କୋଡ଼ାଗାମାଙ୍କ ଜଳଯାତ୍ରା ୟୁରୋପ୍ ବାହାରେ ଏକ ମ୍ୟାଜିକ୍ ବିଶ୍ୱର ଉପସ୍ଥିତି ବିଷୟରେ ସୂଚନା ଦେଲା ଓ ନାଟ୍ୟକାର ସେକ୍‌ସପିଅର୍‌ଙ୍କ କଳ୍ପନାକୁ ଉଦ୍ଦୀପିତ କଲା। ବରମୁଡ଼ା ଦ୍ୱୀପରେ ଏକ ଜାହାଜ ଦୁର୍ଘଟଣାଗ୍ରସ୍ତ ହେବାର ଖବରରୁ ଜନ୍ମ ନେଲା "The Tempest" ନାଟକ। ନବୀନ ଶିଳ୍ପ ସମୃଦ୍ଧି ଦେଶ - ବ୍ରିଟେନ୍ ମଧ ନୌବାଣିଜ୍ୟ

ପ୍ରତିଯୋଗିତାରେ ଅଗ୍ରରଥୀ ହେଲା ଓ ୟୁରୋପୀୟ ରେନେଁସାର ସଂଦେଶକୁ ବାଣିଜ୍ୟ ସହିତ ଦୂର ଦେଶକୁ ବୋହି ନେଇଯିବାରେ ସାହାଯ୍ୟ କଲା।

ରେନେଁସା ପୂର୍ବ ଯୁଗକୁ ଐତିହାସିକମାନେ ମଧ୍ୟଯୁଗ କହନ୍ତି। ମଧ୍ୟଯୁଗର ବୈଜ୍ଞାନିକ ଟଲେମିଙ୍କ ମତାନୁସାରେ ପୃଥିବୀ ସ୍ଥିର ଓ ତା' ଚାରିପାଖେ ସୂର୍ଯ୍ୟ ଚନ୍ଦ୍ର ଆଦି ବୁଲୁଥିଲା। ଉର୍ଦ୍ଧ୍ୱ ଆକାଶରେ ସ୍ୱର୍ଗ ଓ ମାଟିତଳେ ନର୍କ (ଦାନ୍ତେଙ୍କ 'ଡିଭାଇନ୍ କମେଡ଼ି'ର ଇନ୍‌ଫାର୍‌ନୋ) ଥିବାର ବିଶ୍ୱାସ କରାଯାଉଥିଲା। ୧୫୪୩ ମସିହାରେ କୋପରନିକସ୍ ସୂର୍ଯ୍ୟକୁ ବିଶ୍ୱ ବ୍ୟବସ୍ଥାରେ କେନ୍ଦ୍ରବିନ୍ଦୁ ଓ ସ୍ଥିର ଏକ ନକ୍ଷତ୍ର ବୋଲି ଆବିଷ୍କାର କଲେ। ଗ୍ରହଗୁଡ଼ିକ ପୃଥିବୀର ମାଟିପିଣ୍ଡ ପରି ଗୋଟିଏ ଗୋଟିଏ ଶିଳା, ଧାତୁ ଓ ମାଟିର ବୃହତ୍‌ପିଣ୍ଡ ବୋଲି ସେ କହିଲେ। ପୃଥିବୀ ଆମର ବିଶ୍ୱ ବ୍ୟବସ୍ଥାରେ ଏକ ଗ୍ରହ ମାତ୍ର। କବି ମିଲଟନ୍ "ପାରାଡାଇଜ୍ ଲଷ୍ଟ"ରେ ଟଲେମୀ ଓ କୋପରନିକସ୍‌ଙ୍କ ଚିନ୍ତନର ମଧ୍ୟସ୍ଥଳରେ ଠିଆ ହୋଇ ପାରମ୍ପରିକ ଟଲେମୀୟ ଚିନ୍ତନର ଜୟଗାନ କଲେ। ଷୋଡ଼ଶ ଶତାବ୍ଦୀର ହେତୁବାଦୀ ଦାର୍ଶନିକ ଡେକାର୍ଟେ ବିଜ୍ଞାନର ଜୟଯାତ୍ରାକୁ ଲକ୍ଷ୍ୟ କରି କହିଲେ- "Give me extension and motion, I will construct the universe."

ରେନେଁସାର ଅନ୍ୟ ଏକ ମୁଖ୍ୟ ସ୍ରୋତ ହେଲା ରିଫର୍‌ମେସନ୍ ଆନ୍ଦୋଳନ। ରୋମାନ୍ କ୍ୟାଥଲିକ୍ ଚର୍ଚ୍ଚର ବିଶ୍ୱାସ ପ୍ରବଣ ଦର୍ଶନର ଶିରୋପରେ ଏ ଆନ୍ଦୋଳନର ମୁଖ୍ୟ ମାର୍ଟିନ ଲୁଥର କଲେ ବଜ୍ର ମୁଷ୍ଟିରେ ଆଘାତ। ଜଣେ ଲୋକ ନିଜର ଆତ୍ମିକ ଆହ୍ୱାନରେ ନିଜ ମଧ୍ୟରେ ଅଖଣ୍ଡ ଶାନ୍ତି ଓ ପ୍ରୀତିର ସନ୍ଧାନ କରିପାରେ। ସେଥିପାଇଁ ଗୀର୍ଜାର ଅହୋରାତ୍ର ନିର୍ଦ୍ଦେଶର ଆବଶ୍ୟକତା ନାହିଁ। ଏହି ପ୍ରଟେଷ୍ଟାଣ୍ଟ୍‌ବାଦକୁ ସେ ରେନେଁସାର ବ୍ୟକ୍ତିବାଦୀ ଆତ୍ମ-ଅନ୍ୱେଷଣ ବୋଲି କହିଲେ। ଇଂଲଣ୍ଡ ଓ ଜର୍ମାନୀ ଭଳି ପ୍ରଗତିଶୀଳ ଦେଶ ପ୍ରଟେଷ୍ଟାଣ୍ଟିଜିମ୍‌କୁ ଗ୍ରହଣ କଲେ ଓ ଧର୍ମୀୟ ସଂସ୍କାର କ୍ଷେତ୍ରରେ ରେନେଁସାର ମହାନ୍ ପ୍ରବକ୍ତା ସାଜିଲେ।

ରେନେଁସାର ଆବାହକ ଥିଲେ ୟୁରୋପ୍‌ର ତିନିଜଣ ପ୍ରତିଭାଧର ବ୍ୟକ୍ତି। ସେମାନେ ହେଲେ - ଫ୍ରାନ୍‌ସର ଜୁଲୁ ମିସେଲ୍, ଜର୍ମାନୀର କଥାକାର ବୋକାଡ଼ୋ ଓ ଇଂଲଣ୍ଡର ଏଡ଼ିସନ୍ ସାଇମଣ୍ଡ। କଳା କ୍ଷେତ୍ରରୁ ପ୍ଲାଟୋନିକ୍ ବା ଏରିଷ୍ଟୋଟଲୀୟ ଚିନ୍ତାଧାରାର ଅନ୍ତ କରିବା କାର୍ଯ୍ୟକ୍ରମରୁ ଏ ଯୁଗର ଆରମ୍ଭ ହୋଇଥିଲା ଓ ବିଶ୍ୱକୁ ଏକ ଶିଳ୍ପବିପ୍ଳବର ଆହ୍ୱାନ କରିବାରେ ଏ ଯୁଗର ଶେଷ ହୋଇଥିଲା। ରେନେଁସାର ମହାନ୍ ପ୍ରବକ୍ତାମାନଙ୍କ ମଧ୍ୟରୁ ଖୁବ୍ କମ୍ ଲୋକ ଥିଲେ, ଯେଉଁମାନେ ବହୁ ଦେଶ ଭ୍ରମଣ କରି ନାହାନ୍ତି - ଯାହାଙ୍କର ଚାରି ପାଞ୍ଚଟି ଭାଷାରେ ଦଖଲ ନଥିଲା ବା ଯେଉଁମାନେ ବିଭିନ୍ନ କ୍ଷେତ୍ରରେ ଉତ୍କର୍ଷ ଲାଭ କରିନଥିଲେ। ଲିଓନାର୍ଡୋ ଦା ଭିନ୍‌ସୀ କେବଳ ଜଣେ ଚିତ୍ରଶିଳ୍ପୀ ନଥିଲେ - ସେ ଏକାଧାରରେ ଥିଲେ ଜଣେ ବଡ଼ ଗଣିତଜ୍ଞ। ଯନ୍ତ୍ର ବିଜ୍ଞାନୀ ଓ ଇଂଜିନିୟର୍। ନାନା ଗୁରୁତ୍ୱପୂର୍ଣ୍ଣ ଆବିଷ୍କାର ଯୋଗୁଁ ପଦାର୍ଥ ବିଜ୍ଞାନ ମଧ୍ୟ ତାଙ୍କଠାରେ ଋଣୀ। ଆଲ୍‌ବ୍ରେଟ୍ ଡୁରେଷ୍ଟାର ମଧ୍ୟ ଥିଲେ ଜଣେ ଚିତ୍ରଶିଳ୍ପୀ, ଭାସ୍କର ଓ ସ୍ଥପତି। ତା'ଛଡ଼ା ସେ ସାମରିକ

ସୁରକ୍ଷା ବ୍ୟବସ୍ଥା ଦୃଢ଼ କରିବା ସକାଶେ ଏପରି ଏକ ପଦ୍ଧତି ଉଦ୍‌ଭାବନ କରିଥିଲେ, ଯେଉଁ ପଦ୍ଧତିର ଅନେକାଂଶ ପରବର୍ତ୍ତୀ କାଳରେ ମଣ୍ଟଲେଂବାର୍ଟ୍ ଏବଂ ଆଧୁନିକ ଜର୍ମାନ ପ୍ରତିରକ୍ଷା ବିଜ୍ଞାନୀମାନେ ଗ୍ରହଣ କରିଥିଲେ । ମେକିଆଭେଲି ଥିଲେ ଜଣେ ରାଜନୀତିବିଦ୍, ଐତିହାସିକ ଓ କବି ଏବଂ ସଙ୍ଗେ ସଙ୍ଗେ ଆଧୁନିକ ଯୁଗର ପ୍ରଥମ ପ୍ରଖ୍ୟାତ ସାମରିକ ବିଦ୍ୟାର ଗ୍ରନ୍ଥକାର। ମାର୍ଟିନ୍‌ଲୁଥର କେବଳ ଖ୍ରୀଷ୍ଟିୟ ଧର୍ମ ପ୍ରତିଷ୍ଠାନର ବହୁଦିନର ଜମା ହୋଇଥିବା ଆବର୍ଜନା ଦୂର କରିନଥିଲେ, ତା ସହିତ ଜର୍ମାନ ଭାଷାର ଅପରିଚ୍ଛନ୍ନତା ମଧ ଦୂର କରିଥିଲେ ।

ରେନେଁସାର ମାନସପୁତ୍ର ହେଲା ଶିଳ୍ପବିପ୍ଳବ। ଯେଉଁ ଭୂଖଣ୍ଡରେ ନବ ଜାଗରଣର ହାଓ୍ୱା ବହିଛି, ସେଇ ଭୂଖଣ୍ଡରେ ଏହାର ପ୍ରଭାବରେ ହେତୁବାଦୀ ଚିନ୍ତନ, ରାଷ୍ଟ୍ରବ୍ୟବସ୍ଥାର ବିକାଶ ଫଳରେ ସୃଷ୍ଟି ହୋଇଛି ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟାର ବିପ୍ଳବ ବା ଶିଳ୍ପ ବିପ୍ଳବ। ରେନେଁସା କ୍ଲାସିକ୍ ସାହିତ୍ୟର ବିକାଶରେ ସହାୟତା କଲାବେଳେ ଶିଳ୍ପ ବିପ୍ଳବ ରୋମାଣ୍ଟିକ୍ ସାହିତ୍ୟର ଜନକ ସାଜିଛି ।

## ଭାରତୀୟ ରେନେଁସା ବା ନବ ଜାଗରଣ ପର୍ବ

ଅଷ୍ଟାଦଶ ଶତାବ୍ଦୀର ମଧଭାଗରେ ଭାରତରେ ଆସେ ଯେଉଁ ଜାତୀୟ ଜାଗରଣ ଆମେ ତାହାକୁ ରେନେଁସାର ଭାରତୀୟ ଅଧ୍ୟାୟ ବୋଲି ନାମିତ କରୁଁ। ତୁର୍କ, ମଧ - ଏସିଆର ପଠାଣ ଓ ମୋଗଲମାନେ ଦ୍ୱାଦଶ ଶତାବ୍ଦୀରେ ଭାରତକୁ ଦଖଲ କଲାବେଳେ ଭାରତ ସାମାଜିକ ଓ ସାଂସ୍କୃତିକ ଚେତନାସ୍ତରରେ ଥିଲା ମଧ୍ୟଯୁଗୀୟ ଭାରତ ଯେଉଁଠି କାବ୍ୟ କହିଲେ ମାଘ, ଭାରବୀ, କାଳିଦାସଙ୍କ ମହାକାବ୍ୟକୁ ବୁଝାଉଥିଲା, ଯେଉଁଠି ବିଜ୍ଞାନ କହିଲେ ଦ୍ରୁତ ଧାବମାନ ଅଶ୍ୱଯୋଚିତ ରଥକୁ ବୁଝାଉଥିଲା, ଯେଉଁଠି ଆକାଶତତ୍ତ୍ୱ କହିଲେ ଜ୍ୟୋତିଷ ଶାସ୍ତ୍ରକୁ ବୁଝାଉଥିଲା। ଚିକିତ୍ସା ବିଜ୍ଞାନ କ୍ଷେତ୍ରରେ ଭାରତରେ ରାଜତ୍ୱ କରୁଥିଲା ଆୟୁର୍ବେଦ ଓ ଶଲ୍ୟ ଚିକିତ୍ସା। ମୁସଲମାନୀୟ ସଂସ୍କୃତି ଓ ଚେତନାର ସଙ୍ଗମ ଫଳରେ ଏବଂ ମଧ୍ୟଯୁଗୀୟ ନାନକ, ମୀରାବାଈ, ଚୈତନ୍ୟ, ତୁଳସୀ ଦାସ ଓ ସନ୍ଥ ସାଲବେଗଙ୍କ ଭକ୍ତି ରସର ପ୍ରଚାର ଫଳରେ ମହାଭାରତୀୟ ଚେତନାର ବିକାଶ ଘଟିଥିଲା। ଭାରତୀୟ ଚିନ୍ତନର ବିଜ୍ଞାନ, ପ୍ରଯୁକ୍ତି ବିଦ୍ୟାର ଉଲ୍ଲେଖନୀୟ ବିକାଶ ଘଟିନଥିବାରୁ ଏହାର ସଂସ୍କୃତି ଓ ସଭ୍ୟତା ଥିଲା ଏକ ମାଟି ଶଗଡ଼ ପରି।

ଇଂରେଜମାନଙ୍କ ଆଗମନ ଓ ଶାସନ ବିସ୍ତାର ଫଳରେ ପାଶ୍ଚାତ୍ୟଜଗତକୁ ଆମର ଚେତନାର ଗବାକ୍ଷ ଖୋଲିଗଲା। ଭାରତକୁ ପଶି ଆସିଲା (ନେହରୁଙ୍କ ଭାଷାରେ କହିଲେ ଠିକ୍ ହେବ) - Two Englands ଗୋଟିଏ ହେଲା କୁଟକ୍ରୀ ରର୍ବଟ କ୍ଲାଇବ୍‌ଙ୍କ ଚକ୍ରକତା, ଶଠତାପୂର୍ଣ୍ଣ ପାଶବିକ ଇଂଲଣ୍ଡ ଯାହା ସରଳମତି ଅଥଚ ପାରସ୍ପରିକ ବାଦବିବାଦରେ ବହୁଧା ବିଭକ୍ତ ଦେଶର ରାଜନ୍ୟବର୍ଗ ଓ ଶେଷତଃ ଜନସାଧାରଣଙ୍କୁ ବିଦେଶୀ ଶାସନ ଆଗରେ ପଦାନତ କରିଥିଲା। ଅନ୍ୟଟି ଥିଲା- ବାଇରନ୍, ସେକ୍‌ସପିଅର, ସେଲୀ ଅଡେନ୍ ପ୍ରଭୃତିଙ୍କ ଜ୍ଞାନରେ ଝଲସୁଥିବା ଇଂଲଣ୍ଡ- ଯାହା ଭାରତୀୟ ମାନସକୁ ମଧ୍ୟଯୁଗୀୟ ସ୍ଥିତାବସ୍ଥାରୁ ମୁକ୍ତ କଲା ଓ ନବ ଚେତନା ନବ ଚିନ୍ତନର ଦ୍ୱାର ମୁକୁଳା କଲା।

ରେନେଁସା ଦ୍ୱାରା ଭାରତୀୟ ଦର୍ଶନ ଓ ଧର୍ମ ବିଶେଷ ଉଦ୍‌ବେଳିତ ହେଲା। ରେନେଁସାର ପ୍ରଥମ ପ୍ରବକ୍ତା ହେଲେ ରାଜା ରାମମୋହନ ରାୟ ଯିଏ ମଣିଷକୁ ସମାଜ ଓ ଦେଶର ମୂଳ 'ଏକକ' ବୋଲି ପ୍ରଚାର କଲେ। "The basic unity of mankind is my first goal of research on the intellectual plane and the welfare of society as the dominant consideration and ultimate goal of my moral endeavour." ବୋଲି ରାଜା ରାମମୋହନ ତାଙ୍କ ଉଦ୍ଦେଶ୍ୟ ବିଧେୟ ବିଷୟରେ କହିଲେ। (ଦ୍ରଷ୍ଟବ୍ୟ-The Cultural Heritage of India, Vol-IV, P 616, Edited by H.D. Bhattacharjee, R.K. Mission). ବ୍ରିଟିଶ୍ ଶାସକଙ୍କୁ ପ୍ରଭାବିତ କରି ସତୀଦାହ ପ୍ରଥା ଉଚ୍ଛେଦ କରିବା ରାଜା ରାମମୋହନଙ୍କ ପ୍ରଥମ କାର୍ଯ୍ୟକ୍ରମ ଥିଲା। ପାଶ୍ଚାତ୍ୟ ଶିକ୍ଷା ପ୍ରସାର ପାଇଁ ସେ ଡେଭିଡ୍ ହାରେ, ଆଲେକ୍‌ଜାଣ୍ଡାର ଡଫ୍ ଆଦିଙ୍କ ସାହାଯ୍ୟରେ କଲିକତାରେ ୧୮୨୩ ମସିହାରେ ହିନ୍ଦୁ କଲେଜ ପ୍ରତିଷ୍ଠା କଲେ। ଭାରତର ଏଇ ପ୍ରଥମ ଆଧୁନିକ ଶିକ୍ଷାୟତନରେ ପାଶ୍ଚାତ୍ୟ ରୀତିରେ ଲର୍ଡ୍ ଆମହର୍ଷ୍ଟଙ୍କ ନେତୃତ୍ୱରେ ଆଧୁନିକ ଗଣିତ, ଦର୍ଶନ, ରସାୟନତତ୍ତ୍ୱ, ଶରୀରତତ୍ତ୍ୱ, ମହାକାଶ ବିଜ୍ଞାନ ଇଂରାଜୀ ଭାଷାରେ ପଠିତ ହେଲା।

ସମଗ୍ର ବିଶ୍ୱର ମାନବ ସମାଜ ଏକ ବୃହତ୍ ପରିବାର। ତେଣୁ ମାନବିକ ଜ୍ଞାନ ଓ ମୂଲ୍ୟବୋଧରେ ପ୍ରବେଶ କରିବାକୁ ଭାରତୀୟଙ୍କ ଅଖଣ୍ଡ ଅଧିକାର ଅଛି ବୋଲି ରାମମୋହନ କହିଲେ। ତାଙ୍କ ସମାଜ ସଂସ୍କାରକ ଭାବନା, ପାଶ୍ଚାତ୍ୟ ଶିକ୍ଷାର ଆଦର, ଧର୍ମନିରପେକ୍ଷ ମନୋଭାବକୁ ଲକ୍ଷ୍ୟ କରି ତତ୍‌କାଳୀନ ଇଂରେଜ ଦାର୍ଶନିକ ଜେରେମି ବେନ୍‌ଥାମ୍ ୧୮୩୧ରେ ତାଙ୍କୁ ଲଣ୍ଡନ୍ ମହାନଗରୀକୁ ସ୍ୱାଗତ କରି କହିଥିଲେ – My intensly admired and dearly beloved collaborator in the service of mankind has now arrived". ମାନବିକ ଚିନ୍ତାର ସମନ୍ୱୟ ଆଣିବା ପାଇଁ ମହର୍ଷି ଦେବେନ୍ଦ୍ରନାଥ ଠାକୁରଙ୍କ ସହ ମିଶି ରାମମୋହନ ବ୍ରାହ୍ମ ଆନ୍ଦୋଳନ ସୃଷ୍ଟି କରିଥିଲେ। ବ୍ରାହ୍ମସମାଜ ତାହାର ପ୍ରଚାର ମାଧମରେ ଭାରତୀୟ ଭୂଖଣ୍ଡର ଚେତନାଗତ ଏକତା ଉପରେ ଗୁରୁତ୍ୱ ଆରୋପ କରିଥିଲା। ଯେଉଁ ଭାରତୀୟ ସମାଜ ଧର୍ମୀୟ, ସାମାଜିକ ଓ ଅର୍ଥନୀତିକ ଚାପ, ଅପସଂସ୍କୃତିର ସଂକ୍ରମଣ ଓ ଯୁଗଯୁଗର ଅବିବେକିତା, କୁସଂସ୍କାର ଫଳରେ ଅଧୋପତିତ ହୋଇଥିଲା। ତାହାକୁ ସୁସ୍ଥ ଓ ସମୃଦ୍ଧ କରିବା ପାଇଁ ଏ ଆନ୍ଦୋଳନର ସୂତ୍ରପାତ ହୋଇଥିଲା। ଆମ ଉପମହାଦେଶର ଅଞ୍ଚଳ ଓ ଅଞ୍ଚଳ ଭିତରେ କିପରି ଜାତୀୟ ସମନ୍ୱୟ ସ୍ଥାପନ କରାଯାଇପାରିବ, ଧର୍ମ, ଜାତି, ଉପଜାତି, ଜନଜାତି ଓ ବିଭିନ୍ନ ପରମ୍ପରା ମଧ୍ୟରେ କିପରି ସୌହାର୍ଦ୍ଦ୍ୟ ଅଣାଯାଇପାରିବ, ଏ ଦିଗରେ ବିଶେଷ ସାଂଗଠନିକ ଉଦ୍ୟମ କରିଥିଲା ବ୍ରାହ୍ମସମାଜ।

ଏହିପରି ମହାଭାରତୀୟ ଚେତନାର ଐକ୍ୟ ପ୍ରତିଷ୍ଠା ଆନ୍ଦୋଳନର ଆଗ ଧାଡ଼ିରେ ଥିଲେ ମହର୍ଷି ଦେବେନ୍ଦ୍ରନାଥ ଠାକୁର, କେଶବ ଚନ୍ଦ୍ର ସେନ୍, ଈଶ୍ୱର ଚନ୍ଦ୍ର ବିଦ୍ୟାସାଗର, ରବୀନ୍ଦ୍ରନାଥ, ବଙ୍କିମଚନ୍ଦ୍ର, ଶରତଚନ୍ଦ୍ର, ହେନେରି ଡିରୋଜିଓ, ଗୋପବନ୍ଧୁ ପ୍ରମୁଖ। ଯଦିଓ ସମସ୍ତ ଶ୍ରେଣୀର

ଭାରତୀୟ ଜ୍ଞାନର ଉତ୍ସ ବେଦ ଓ ବେଦାନ୍ତ ବୋଲି ଦେବେନ୍ଦ୍ରନାଥ ଠାକୁର ବିଶ୍ୱାସ କରୁଥିଲେ, ତଥାପି ବୃହତ୍ତର ଚିନ୍ତନ କ୍ଷେତ୍ରରେ ସେ ଥିଲେ ହେତୁବାଦୀ। ବହୁ ପତ୍ନୀ ଗ୍ରହଣ ଉପରେ ସେ ପ୍ରଥମେ ଆଲୋଚନା ଆରମ୍ଭ କରି ତାହାକୁ ବିରୋଧ କରିଥିଲେ। ବିଧବା ବିବାହ ଓ ନାରୀ ଶିକ୍ଷା ପ୍ରଚଳନ ସପକ୍ଷରେ ସେ ମଧ୍ୟ ପ୍ରଥମେ ପ୍ରଚାର ଅଭିଯାନ ଆରମ୍ଭ କରିଥିଲେ। ଆମ ଦେଶଜ ଜ୍ଞାନ ଓ ସାଂସ୍କୃତିକ ପରମ୍ପରାକୁ ବିସ୍ମୃତି ଗର୍ଭରୁ ଉଦ୍ଧାର କରି ଲୋକଲୋଚନରେ ପୁନଶ୍ଚ ପ୍ରତିଷ୍ଠିତ କରିବା ପାଇଁ ସେ କଲିକତାରେ ଆରମ୍ଭ କଲେ 'Asiatic Society of Bengal'.

ମହର୍ଷି ଦେବେନ୍ଦ୍ରନାଥଙ୍କ ସହ ବ୍ରାହ୍ମସମାଜର ଯୁଗ୍ମ ସମ୍ପାଦକ ରୂପେ ୧୮୫୯ ମସିହାରେ ଯୋଗ ଦେଲେ ସୁସଂଗଠକ କେଶବ ଚନ୍ଦ୍ର ସେନ୍। ଈଶ୍ୱର ଚନ୍ଦ୍ର ବିଦ୍ୟାସାଗରଙ୍କ ବିଧବା ବିବାହ ଆନ୍ଦୋଳନ ସେତେବେଳକୁ ତାହାର ମଧ୍ୟାହ୍ନରେ ଉପନୀତ। ବ୍ରାହ୍ମସମାଜ ମଞ୍ଚରେ ବିଧବା ବିବାହନୁଷ୍ଠାନ କରାଇବା ପାଇଁ ସେ ପ୍ରଥମେ ସାଂଗଠନିକ ପଦକ୍ଷେପ ନେଲେ। ହିନ୍ଦୁତ୍ୱର ବିଶ୍ୱାସ ସହିତ ଅନ୍ୟ ଧର୍ମୀୟ ବିଶ୍ୱାସର କିପରି ଅପୂର୍ବ ମେଳ ଓ ସମାନତା ଅଛି, ତାହା ପ୍ରମାଣ କରିବା ପାଇଁ ସେ କଲିକତାରେ ବ୍ରହ୍ମ ମଞ୍ଚରେ ସେ ସମୟର ପଣ୍ଡିତ ଥିଓଡର ପାର୍‌କାର, ହାମିଲଟନ୍, ଭିକ୍ଟର କଜିନ୍, ପ୍ରଫେସର ଏଫ.ଡବ୍ଲୁ.ନିଓମେନ୍‌ଙ୍କୁ ବିଭିନ୍ନ ସମୟରେ ଭାଷଣ ଦେବାକୁ ଆମନ୍ତ୍ରଣ କଲେ। ୧୮୬୦ ମସିହାରେ ଲଣ୍ଡନ୍ ବିଶ୍ୱବିଦ୍ୟାଳୟର ଏହି ପ୍ରଫେସର ନିଓମେନ୍ "An appeal to the British Nation" ଶୀର୍ଷକ ଏକ ଖୋଲାପତ୍ରରେ କେଶବ ଚନ୍ଦ୍ର ସେନ୍‌ଙ୍କ ଆନ୍ଦୋଳନର ଉଚ୍ଛ୍ୱସିତ ପ୍ରଶଂସା କରି ଲେଖିଲେ- Such a progressive programme was more remarkable, as it came within three years from the foundation of universities in India (1858)" (Source-The Brahmo Samaj- The Cultural Heritage of India. P 628)

ବ୍ରାହ୍ମ ସମାଜର ଜାତୀୟ ସମନ୍ୱୟ, ଐକ୍ୟ ପ୍ରତିଷ୍ଠା ଆନ୍ଦୋଳନ ମାନ୍ଦ୍ରାଜ, ବାଙ୍ଗାଲୋର, ମୁମ୍ବେଇ, କରାଚୀ, କ୍ୱେଟା, ଲାହୋର, ଗ୍ୱାଲିଅର, ଦିଲ୍ଲୀ, ପାଟଣା ଆଦି ସହରରେ 'ପ୍ରାର୍ଥନା ସମାଜ' ପ୍ରତିଷ୍ଠା କାର୍ଯ୍ୟକ୍ରମ ମାଧ୍ୟମରେ ପ୍ରସାରିତ ହେଲା। ୧୮୬୬ ମସିହାରେ ମହାଭାରତୀୟ ଚେତନାର ସମନ୍ୱୟ ଉଦ୍ଦେଶ୍ୟରେ ବୋଲପୁରଠାରେ ମହର୍ଷି ଦେବେନ୍ଦ୍ରନାଥ 'ଶାନ୍ତିନିକେତନ' ନାମକ ଏକ ସାଧନାର ପୀଠ ସ୍ଥାପନ କଲେ, ଯାହା ପରବର୍ତ୍ତୀ କାଳରେ ବିଶ୍ୱକବି ରବୀନ୍ଦ୍ରନାଥଙ୍କ କର୍ମଭୂମିରେ ପରିଣତ ହେଲା।

ଈଶ୍ୱରଚନ୍ଦ୍ର ବିଦ୍ୟାସାଗର (୧୮୨୦-୧୮୯୧) ଭାରତୀୟ ନବଜାଗରଣ ପର୍ବର ଅନ୍ୟତମ ମହାନାୟକ। ବଡ଼ କବି ବା ଲେଖକଟିଏ ହେବା ପାଇଁ ବିଦ୍ୟାସାଗର କଲମ ଚାଳନା କରିନଥିଲେ। ସମାଜସେବୀ, ସମାଜ ସଂସ୍କାର କରିବା ସାହିତ୍ୟିକ ଆନ୍ଦୋଳନର ମୁଖ୍ୟ ଉଦ୍ଦେଶ୍ୟଥିଲା। ବିଜ୍ଞାନଭିତ୍ତିକ ଶିକ୍ଷା କିପରି ଦେଶର ଗାଁଗହଳିରେ ପ୍ରସାରିତ ହୋଇପାରେ ସେଥିପାଇଁ ବିଦ୍ୟାସାଗର କଲମ ଧରିଥିଲେ। ତାଙ୍କ ଉଜ୍ୱଳ ବ୍ୟକ୍ତିତ୍ୱ, ପ୍ରେରଣାଦାୟୀ ସଂଭାଷଣ

ଓ ଜନଗଣଙ୍କ ମଧରେ ଗ୍ରହଣୀୟତା ତାଙ୍କୁ ପୂର୍ବ ଭାରତରେ ଅଧିକ ଜନପ୍ରିୟ କରିଥିଲା। ସମାଜରେ ଅନ୍ଧବିଶ୍ୱାସ, ଅସ୍ପୃଶ୍ୟତା ଓ କୁସଂସ୍କାର ସେତେବେଳେ ମହାବ୍ୟାଧି ପରି ବ୍ୟାପି ଥିଲା। ସଂଗଠିତ ଉପାୟରେ ଈଶ୍ୱର ଚନ୍ଦ୍ର 'ତତ୍ତ୍ୱବୋଧିନୀ ସଭା'କୁ ସକ୍ରିୟ କରି ତା'ବିରୋଧରେ ସେ ପ୍ରାଣପଣେ ଲଢ଼ିଥିଲେ। ବିଧବା ବିବାହ ସପକ୍ଷରେ ସେ ଯୁକ୍ତି କଲାବେଳେ, ବଙ୍ଗଳା ବ୍ୟାପୀ ପ୍ରଚାରାଭିଯାନ କଲାବେଳେ ବେଦ, ବେଦାନ୍ତ ଓ ଦର୍ଶନରୁ ସଂଦେଶ ଓ ନିର୍ଯ୍ୟାସ ସଂଗ୍ରହ କରୁଥିଲେ ଓ ତାହା ସାହାଯ୍ୟରେ ନିଜର ବକ୍ତବ୍ୟର ଯୌକ୍ତିକତା ପ୍ରତିପାଦନ କରୁଥିଲେ। ବଙ୍ଗଳା ଭାଷାର ବିକାଶ ଆନ୍ଦୋଳନ ମଞ୍ଚରେ ସେ କବି ମାଇକେଲ୍ ମଧୁସୂଦନ ଦତ୍ତ, ବଙ୍କିମଚନ୍ଦ୍ରଙ୍କ ପରି ଲେଖକମାନଙ୍କୁ ସାମିଲ କରି ଗାଁଗହଳିରେ ଲେଖକଙ୍କୁ ଉତ୍ସାହ ପ୍ରଦାନ କରିଥିଲେ। ସେ ଲେଖିଥିଲେ କେତୋଟି ଉଲ୍ଲେଖନୀୟ ପୁସ୍ତକ - ଶକୁନ୍ତଳା, ସୀତା ବନବାସ, ବୋଧଦୟ, ଆଖ୍ୟାନ ମଞ୍ଜରୀ, ବୁଦ୍ଧ ଚରିତ।

ବ୍ରାହ୍ମସମାଜ ସହିତ ତାଳ ଦେଇ ଉତ୍ତର ଭାରତରେ ସ୍ୱାମୀ ଦୟାନନ୍ଦ ସରସ୍ୱତୀ ଆରମ୍ଭ କରିଥିଲେ ଆର୍ଯ୍ୟ ସମାଜ, ବମ୍ବେରେ ମାଡାମ୍ ବ୍ଲାଭସ୍କି ଆରମ୍ଭ କଲେ ଥିଓସୋଫିକାଲ୍ ସୋସାଇଟି। କଲିକତାର ଦକ୍ଷିଣେଶ୍ୱରରେ ସନ୍ଥ ଶ୍ରୀରାମକୃଷ୍ଣ ପରମହଂସ ଆରମ୍ଭ କରିଥିଲେ 'ଯତମତ:ତତପଥ' ମର୍ମରେ ଏକ ସମନ୍ୱୟବାଦୀ ଚେତନାର ଆନ୍ଦୋଳନ। ତାଙ୍କ ଶିଷ୍ୟ ବିବେକାନନ୍ଦ ଭାରତୀୟଙ୍କ ମନରେ ଜାତୀୟ ଚେତନା ଉଦ୍ରେକ କରିବା ପାଇଁ ଭାରତକୁ ପ୍ରଥମେ 'ମା'ର ଆଖ୍ୟା ଦେଇଥିଲେ। ହିନ୍ଦୁ କଲେଜର ପ୍ରଫେସର ହେନେରୀ ଡିରେଜିଓ ପରବର୍ତ୍ତୀ ସମୟରେ ଭାରତକୁ ଜନନୀ ବୋଲି ସଂବୋଧନ କରି ଇଂରାଜୀ କବିତା ରଚନା କଲେ। ଭାରତୀୟ ଜାତୀୟତାବୋଧ ଉପରେ ଅଧ୍ୟାପକ ଡିରେଜିଓ ହିନ୍ଦୁ କଲେଜର ବାରଣ୍ଡାରେ ସାପ୍ତାହିକ ବକ୍ତୃତାମାଳା ସୁରୁ କରିଥିଲେ। ଦାର୍ଶନିକତା ସୁଲଭ ଏ ବକ୍ତୃତା ମାଧ୍ୟମରେ ସେ ପ୍ରଚାର କଲେ ହେତୁବାଦ। ଘଟଣାଚକ୍ରରେ ଡିରେଜିଓଙ୍କ ଚାକିରି କଲେଜର ପରିଚାଳନା ସଂସ୍ଥା ଖାଇଦେଲା ଓ ପାଗଳ ହୋଇ ଏହି ଜାତୀୟବାଦୀ କବି ମୃତ୍ୟୁବରଣ କଲେ ମାତ୍ର ୨୨ ବର୍ଷ ବୟସରେ। ବ୍ରାହ୍ମସମାଜ, ପ୍ରାର୍ଥନାସମାଜ, ଥିଓସଫିକାଲ୍ ସୋସାଇଟି ଓ ଦକ୍ଷିଣେଶ୍ୱର ଚେତନାର ଆନ୍ଦୋଳନ- ଏସବୁ ମିଶି ଦେଶରେ ଏକ ଆଧ୍ୟାତ୍ମିକ ନବଜାଗରଣର ସୂତ୍ରପାତ କଲା। ସ୍ୱାମୀ ଦୟାନନ୍ଦ ଯଦିଓ ବେଦକୁ ନୂତନ ଭାରତ ଗଠନରେ ଏକ ଗାଇଡ୍ ପୁସ୍ତକ ରୂପେ ଗ୍ରହଣ କରିଥିଲେ, ତଥାପି ଆର୍ଯ୍ୟ ସମାଜ ପ୍ରଚାର ମାଧ୍ୟମରେ ଜାତିପ୍ରଥାର ବିଲୋପ, ହିନ୍ଦୁ ଧର୍ମର ପୂଜା ଅନୁଷ୍ଠାନର ଉଚ୍ଛେଦ ସାଧନା, ସମାଜରୁ ବ୍ରାହ୍ମଣମାନଙ୍କ ଆଧିପତ୍ୟ ବିଲୋପ ଆଦି କାର୍ଯ୍ୟକ୍ରମ ସେ ଚାଲୁ କରିଥିଲେ। ନାରୀଙ୍କୁ ଯାବତୀୟ ଶୋଷଣରୁ ମୁକ୍ତ କରି ତାଙ୍କୁ ବେଦପାଠରେ ସ୍ୱାଧୀନତା ପ୍ରଦାନ କରିବା ଆର୍ଯ୍ୟସମାଜର ବିଶେଷ କର୍ମସୂଚୀ ଥିଲା। ଆମୂଳଚୂଳ ପରିବର୍ତ୍ତନ ଆଣିବା ନିମନ୍ତେ ଆର୍ଯ୍ୟ ସମାଜ ଲଢ଼େଇ କରିଥିଲା।

ଚେତନାର ବିକାଶ ଫଳରେ ଲୋକଙ୍କ ମନରେ ଜାତୀୟ ଭାବନା ବୃଦ୍ଧିପାଇଲା। ଏ ଭାବନାକୁ ଜନଗଣଙ୍କ ମଧରେ ପୁଣି ବୃଦ୍ଧି କଲେ ସିପାହୀ ବିଦ୍ରୋହ, ଅନୁଶୀଳନ ସମିତି, ବଙ୍ଗଭଙ୍ଗ

ବିରୋଧୀ ଆନ୍ଦୋଳନ, ଜାତୀୟ କଂଗ୍ରେସ ଗଠନ ଇତ୍ୟାଦି। ଜାତୀୟତାବାଦୀ ଆନ୍ଦୋଳନ ହେଉଛି ନବଜାଗରଣର ଅର୍ଥ - ସାମାଜିକ ସ୍ଫୁରଣ। ବିଶ୍ୱକବି ରବୀନ୍ଦ୍ରନାଥ, ବଙ୍କିମଚନ୍ଦ୍ର, ଶରତଚନ୍ଦ୍ରଙ୍କ ରଚନା ଏ ଆନ୍ଦୋଳନର ଦିଶାରୀ ହେଲା ଓ କହିଲା ଏ ଆନ୍ଦୋଳନର ଆରମ୍ଭ ଓ ଅଭିବୃଦ୍ଧିର କାହାଣୀ। ରବୀନ୍ଦ୍ରନାଥ ପ୍ରାଚ୍ୟ-ପାଶ୍ଚାତ୍ୟ ଜ୍ଞାନ ଓ ବିଭିନ୍ନ କିସମର ଚେତନାର ସମନ୍ୱୟ ଦିଗରେ ଶାନ୍ତିନିକେତନରେ ବିଶ୍ୱସ୍ତରୀୟ ସମୀକରଣର ଆନ୍ଦୋଳନ ସୁରୁ କଲେ। ରବୀନ୍ଦ୍ରନାଥ କହିଲେ- Nationalism should not be carried too far ଅର୍ଥାତ୍ କେବଳ ଜାତୀୟତାବାଦ ମାନବକୁ ଏକ ବିଶେଷ ଦୂରତ୍ୱକୁ ନେଇ ଯାଇପାରିବ ନାହିଁ। ରାଜନୈତିକ ସାଧୀନତା ହାସଲ ଆମର ଏକମାତ୍ର କାର୍ଯ୍ୟ ନୁହେଁ। ଭାରତ ବାହାରୁ ଜ୍ଞାନ ଓ ଅଭିନବ ତତ୍ତ୍ୱ ସବୁ ଆସୁଥିବାରୁ କେବଳ ଜାତିର ଖାତିର୍‌ରେ ଆମେ ସେସବୁକୁ ଘୃଣା କରିପାରିବୁ ନାହିଁ କି ତ୍ୟାଗ କରିପାରିବୁ ନାହିଁ। ଜାତୀୟତାବାଦ ପାଶ୍ଚାତ୍ୟ ବିଜ୍ଞାନ ଓ ସାହିତ୍ୟ ଆଜି ଯେଉଁ ଉଚ୍ଚତା ଆହରଣ କରିଛି, ସେଇ ଉଚ୍ଚତା ସ୍ପର୍ଶ କରି ଆଧୁନିକ ମାନବ ସମାଜ ବିଶେଷତଃ ଆମ୍ଭେ ଭାରତବାସୀ ଆଧୁନିକ ହେବା ପାଇଁ ସ୍ୱପ୍ନ ଦେଖୁ - ତେଣୁ ଆମକୁ ତତ୍ତୁଲ୍ୟ ଉଚ୍ଚତା ଆରୋହଣ କରିବାକୁ ହେବ। ଦେଶଜ ଭାବନା ଓ ଦେଶଜ ସାହିତ୍ୟ ନାମରେ ଆମ୍ଭେ ମଧ୍ୟଯୁଗୀୟ ତତ୍ତ୍ୱ,ଆଦର୍ଶ ଓ ଆଦବକାଇଦାକୁ ଆଉ ଆବୋରି ବସିପାରିବୁ ନାହିଁ। ଆମକୁ ପାଶ୍ଚାତ୍ୟ ଦେଶର ବିଜ୍ଞାନୀ ଓ ସାହିତ୍ୟିକଙ୍କ ସମକକ୍ଷ ହେବାକୁ ପଡ଼ିବ। ତେଣୁ ଆମକୁ ଅନ୍ଧ ଜାତୀୟତାବୋଧ ପରିତ୍ୟାଗ କରିବାକୁ ହେବ। ଆମେ ଏ ଦେଶର ନାଗରିକ ହେବା ସଙ୍ଗେ ସଙ୍ଗେ ଏ ଶତାବ୍ଦୀର ନାଗରିକ ହୋଇପାରିବୁ - ଆମର ଶତତ ଏଇ ଚେଷ୍ଟା ଜାରି ରହିବା ଉଚିତ।

ଭାରତୀୟ ରେନେସାଁ କାଳରେ ଆମ ସ୍ୱଦେଶୀ ଅର୍ଥନୈତିକ ଚିନ୍ତନ ଆମ ସାଭିମାନର ଏକ ବିଶେଷ ସୂଚକାଙ୍କ ହୋଇଉଠିଲା। ୧୮୭୦ ମସିହାରେ ଆମ ଦେଶର ବିଖ୍ୟାତ ନେତା ତଥା ଅର୍ଥନୀତିବିଦ୍ ଦାଦାଭାଇ ନାରୋଜୀ କୃଷିର ଉତ୍ପାଦନ ବିଷୟରେ ଅନୁଧ୍ୟାନ କରି ଜାତୀୟ ଆୟ ସ୍ଥିର କରାଯାଇପାରେ ବୋଲି କହିଲେ। ୧୮୭୭ ମସିହାରେ ଦେଶରେ ଗୋଟିଏ ବର୍ଷରେ ମୋଟ୍ କେତେ ଏକର ଚାଷ ଜମିରେ ଚାଷ ହୋଇଛି - ଏ ତଥ୍ୟ ସେ ସଂଗ୍ରହ କଲେ। ଏକର ପ୍ରତି ସାଧାରଣତଃ କେତେ ମହଣ ଧାନ କୃଷକ ପାଏ - ସେ ତଥ୍ୟ ମଧ୍ୟ ସେ ସଂଗ୍ରହ କଲେ। ମୋଟ୍ ଚାଷରୁ ମୋଟ୍ ପରିମାଣର ଶସ୍ୟ ଉତ୍ପାଦନ ବିଷୟରେ ଏହି ରୂପେ ସେ ଜାଣିଗଲେ। ମଞ୍ଜି ଓ ଭୂରାଜସ୍ୱ ବାବଦକୁ ସିଧାସଳଖ ଶତକଡ଼ା ଛ' ବାଦ୍ କରି ସେ ମୋଟ୍ ଜାତୀୟ ଆୟର ପରିମାଣ ନିର୍ଣ୍ଣୟ କଲେ। ଏହା ନିର୍ଣ୍ଣୟ କରି ଅର୍ଥନୀତିରେ ପଣ୍ଡିତ ବୋଲାଇବା ନାରୋଜୀଙ୍କ ଉଦ୍ଦେଶ୍ୟ ନଥିଲା। ଅସଲ ଉଦ୍ଦେଶ୍ୟ ଥିଲା ଲୋକଙ୍କ ଦାରିଦ୍ର୍ୟ ସୀମାରେଖା ନିର୍ଣ୍ଣୟ କରିବା। ମଥା ପିଛା ଆୟର ସୂତ୍ରଧରି ସେ ଭାରତୀୟ ଓ ଇଂଲିଶ୍ ଲୋକଙ୍କ ମଧ୍ୟରେ ତୁଳନା କରି ଆମକୁ ଇଚ୍ଛାକୃତ ଭାବେ ଯେ ଅନଗ୍ରସର ରଖାଯାଇଛି - ତାହା ମଧ୍ୟ ପ୍ରତିପାଦନ କଲେ। "Poverty and British Rule in India" ବହିରେ ଜଣେ ଭାରତୀୟର ବାର୍ଷିକ ଆୟ ମାତ୍ର କୋଡ଼ିଏ ଟଙ୍କା ବୋଲି ସେ

ପ୍ରତିପାଦନ କଲେ। କେବଳ ସ୍ୱାଧୀନତା ପାଇଲେ ଆମେ ଏ ଦୈନ୍ୟରୁ ରକ୍ଷାପାଇବୁ ବୋଲି ସେ ମତ ଦେଲେ।

ଦାଦାଭାଇ ନାରୋଜୀଙ୍କ ମୃତ୍ୟୁ ପରେ ବଙ୍ଗଳାର ଜଣେ ସାହସୀ ଆଇ.ସି.ଏସ୍. ଅଫିସର ରମେଶ ଚନ୍ଦ୍ର ଦତ୍ତ 'ଦି ଇକୋନମିକ୍ ହିଷ୍ଟ୍ରୀ ଅଫ୍ ଇଣ୍ଡିଆ" ବହି ରଚନା କରି ତହିଁରେ ଦୁଇଟି ଅର୍ଥନୈତିକ ଥିଓରୀର ଅବତାରଣା କରିଥିଲେ। ସେ ଦୁଇଟି ଥିଓରୀ ହେଲା - ଡ୍ରେନ୍ ଥିଓରୀ ଓ ହୋମ୍‌ଚାର୍ଯ୍ୟ ଥିଓରୀ। ଭାରତରୁ ସଂଗୃହୀତ କରକୁ ବିଦେଶୀ ଶାସକ ଅପହରଣ କରି ନେଉଛି ଓ ନିଜ ଦେଶର ଅର୍ଥନୀତିରେ ସ୍ୱଚ୍ଛଳତା ଭରି ଦେଉଛି। ଆର.ସି. ଦତ୍ତ ଏହାକୁ 'ଡ୍ରେନ୍ ଥିଓରୀ' ନାମରେ ପ୍ରଚାର କରିଥିଲେ। 'ରାମ ଚରିତ ମାନସ'ର କବି ସନ୍ଥ ତୁଳସୀ ଦାସଙ୍କୁ ଉଦ୍ଧାର କରି ସେ ଲେଖିଥିଲେ - "ସୂର୍ଯ୍ୟ ପୃଥିବୀରୁ ଜଳକଣାକୁ ବାଷ୍ପ ଆକାରରେ ଶୋଷି ନେଇ ପୁଣି ମେଘ ଆକାରରେ ତାକୁ ଫେରାଇ ଦିଏ ପୃଥିବୀକୁ।" ବ୍ରିଟିଶ୍ ଶାସକ ଏଥିରୁ କିଛି ଶିଖିବା ଦରକାର ବୋଲି ଆର.ସି,ଦତ୍ତ ଏ ଥିଓରୀରେ ଉଲ୍ଲେଖ କରିଥିଲେ। ଅନ୍ୟପକ୍ଷରେ, ହୋମ୍‌ଚାର୍ଯ୍ୟ ଥିଓରୀରେ ବ୍ରିଟିଶ ଶୋଷଣର ମାରାତ୍ମକ ଦିଗ ପ୍ରତି ସେ ସଭିଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ। ଭାରତରେ ବ୍ରିଟିଶ୍ ରେଳଲାଇନ୍ ବିଛାଇଥିଲା ଦେଶର ଭିତର ଇଲାକାରୁ ବନ୍ଦର ରପ୍ତାନୀଯୋଗ୍ୟ ପଣ୍ୟଦ୍ରବ୍ୟ ବୋହିବାପାଇଁ ଓ ବିପ୍ଲବ ଦମନ ନିମନ୍ତେ ଗୋଟିଏ ସହରରୁ ଅନ୍ୟ ସ୍ଥାନକୁ ଫଉଜ ଯୋଗାଣ ପାଇଁ। ରେଳଲାଇନ୍ ନିର୍ମାଣ ନିମନ୍ତେ ବିଦେଶୀ ବ୍ୟାଙ୍କ୍‌ରୁ କରିଥିବା ଋଣ ଓ ତା'ର ସୁଧ କିନ୍ତୁ ସୁଝା ଯାଉଥିଲା ଭାରତୀୟଙ୍କଠାରୁ ଆଦାୟ କରାଯାଉଥିବା କରରୁ। ଭାରତର ଶାସନରୁ ଅବସର ଗ୍ରହଣ କରୁଥିବା ବ୍ରିଟିଶ୍ ଅଫିସରଙ୍କୁ ମୋଟା ଅଙ୍କର ଅବସରକାଳୀନ ଅର୍ଥ ଓ ପେନ୍‌ସନ୍ ଆମ ଦେଶର ପ୍ରଜାଙ୍କ କରରୁ ଦିଆଯାଉଥିଲା। ଏଇ ସୂତ୍ରେ ବାର୍ଷିକ ଯେତେ ଅର୍ଥ ଖର୍ଚ୍ଚ ହେଉଥିଲା, ତାହାର ପରିମାଣ ଫ୍ରାନ୍‌ସ ଦେଶର ବାର୍ଷିକ ବଜେଟ୍‌ର ପରିମାଣ ସହିତ ସମାନ। ଏଇସବୁ ଅର୍ଥନୈତିକ ଚିନ୍ତନ ଭାରତୀୟଙ୍କ ଚିନ୍ତା ଓ ଚେତନାକୁ ଦୀପ୍ତ ଓ ଶାଣିତ କଲା।

## ଓଡ଼ିଶୀ ରେନେଁସା

ଭାରତୀୟ ରେନେଁସା ଆରମ୍ଭର ବହୁବର୍ଷ ପୂର୍ବରୁ ଓଡ଼ିଶାରେ ନବଯୁଗ ଆରମ୍ଭ ହୋଇଥିଲା। ୧୮୧୭ ମସିହାରେ - ଖୋର୍ଦ୍ଧା ରାଜାଙ୍କ ସେନାପତି ବକ୍‌ସି ଜଗବନ୍ଧୁ ବିଦ୍ୟାଧର ମହାପାତ୍ରଙ୍କ ବ୍ରିଟିଶ ବିରୋଧୀ ରଣହୁଂକାରରେ। ବଙ୍ଗାଳୀ ଅମଲାମାନେ ବ୍ରିଟିଶ୍ ଶାସକଙ୍କ ଦଲାଲୀ କରି ଓଡ଼ିଶାରେ ଅନ୍ୟାୟୋଚିତ ଉପାୟରେ ଓଡ଼ିଆଙ୍କ ଜମିଦାରୀ ଦଖଲ କରୁଥିଲେ। ତାପଙ୍ଗଗଡ଼ର ଜମିଦାରୀକୁ ସେହିପରି ଚକ୍ରାନ୍ତକରି କୃଷ୍ଣ ସିଂହ ନାମକ ଜଣେ ଅସାଧୁ ବଙ୍ଗାଳୀ ଅମଲା ଦଖଲ କଲେ। ବକ୍‌ସିଙ୍କ ତୀର ଓ ବର୍ଚ୍ଛା, ବଙ୍ଗାଳୀ ଓ ବିଦେଶୀ ବ୍ରିଟିଶ୍ ଶାସକର ପରସ୍ୱ ଅପହରଣର ମଧୁଚନ୍ଦ୍ରିକା ବିରୋଧରେ ଏଇଥିଯୋଗୁଁ ଗର୍ଜି ଉଠିଲା। ଆରମ୍ଭ ହୋଇଗଲା ପାଇକ ବିଦ୍ରୋହ। ଏହା ଓଡ଼ିଶୀ ରେନେଁସା ନିମନ୍ତେ ପଥ ପରିଷ୍କାର କଲା। ୧୮୫୭ର ଭାରତର ପ୍ରଥମ ସ୍ୱାଧୀନତା

ସଂଗ୍ରାମ ବା ସିପାହୀ ବିଦ୍ରୋହରେ ପୁରୀର ପଣ୍ଡା ଚଖି ଖୁଣ୍ଟିଆ ସଦର୍ପେ ଅଂଶ ଗ୍ରହଣ କଲେ। ସମ୍ବଲପୁରର ବୀର ସୁରେନ୍ଦ୍ର ସାଏ ଓ ଗଞ୍ଜାମ କନ୍ଧମାଳରେ ଆଦିବାସୀ ବୀର ଦୋହରା ବିଶୋୟୀ ମଧ୍ୟ ସାମ୍ରାଜ୍ୟ ବିରୋଧୀ ରକ୍ତାକ୍ତ ସଂଗ୍ରାମ ଚଲୁ କଲେ। ୧୮୬୬ ମସିହାରେ ପୁରୀର ଠାକୁର ରାଜା ଦିବ୍ୟସିଂହ ଦେବଙ୍କ ଶାସନର ନବମ ଅଙ୍କରେ ପଡ଼େ ଓଡ଼ିଶା ତମାମ୍ ଭୀଷଣ ଦୁର୍ଭିକ୍ଷ। ଏଥିରେ ଅନାହାର, ମଡ଼କରେ ମରନ୍ତି ତିନି ଲକ୍ଷ ଲୋକ। ସେ ବର୍ଷ କୃଷି ଉତ୍ପାଦନର ସଳ୍ପତା ସାଙ୍ଗକୁ ଓଡ଼ିଶା ଶାସନ ଦାୟିତ୍ୱରେ ଥିବା କେତେକ ତୁଙ୍ଗ ବ୍ରିଟିଶ୍ ଅଫିସରଙ୍କ ଦାୟିତ୍ୱହୀନତା ଓ ଖାମଖିଆଲି ନୀତି ଯୋଗୁଁ ଏ ଦୁର୍ଭିକ୍ଷର ଭୟାବହତା ଓ ମୃତ୍ୟୁ ସଂଖ୍ୟା ସୀମାତୀତ ହେଲା। ଲଣ୍ଡନରେ ଭାରତର ପ୍ରଶାସନ ଦାୟିତ୍ୱରେ ଥିବା ଷ୍ଟାଫୋର୍ଡ଼ ନର୍ଥ୍ କୋଟ୍ ତତ୍କାଳୀନ ବ୍ରିଟିଶ୍ ଶାସକଙ୍କ ଏଥିପ୍ରତି ଅବହେଳା ଦେଖି ସେତେବେଳର ରେଭିନିଉ ଡିଭିଜନାଲ କମିଶନର ରେଭେନ୍‌ସାଙ୍କୁ ବ୍ୟସ୍ତ ହୋଇ ଲେଖିଲେ- "This catastrophe must always remain a monument of our failure, a humiliation to the people of this country and to those of our Indian officials of whom we had been perhaps a little too proud." ଏ ଦୁର୍ଭିକ୍ଷ ପରେ ଓଡ଼ିଶାର ଶିକ୍ଷା ଓ ସାସ୍ଥ୍ୟ ବ୍ୟବସ୍ଥା ପ୍ରତି ତତ୍କାଳୀନ କେତେକ ସଦାଶୟ ବ୍ରିଟିଶ୍ ଅଫିସରଙ୍କ ସୁଦୃଷ୍ଟି ପଡ଼ିଲା। ଫଳରେ ଓଡ଼ିଆ ସମାଜରେ ଏକ ଶିକ୍ଷିତ ମଧ୍ୟବିତ୍ତ ଶ୍ରେଣୀର ଆବିର୍ଭାବ ହେଲା।

ଭାରତୀୟ ବ୍ରାହ୍ମ ଆନ୍ଦୋଳନର ଶାଖା ୧୮୮୧ ମସିହାରେ "ଉତ୍କଳ ବ୍ରାହ୍ମ ସମାଜ" ନାମରେ କଟକରେ ଗଠିତ ହେଲା। ସେଇ ବର୍ଷ ଏହାର ଶାଖା ପୁରୀ, ବାଲେଶ୍ୱର ଓ ସମ୍ବଲପୁରରେ ଖୋଲିଲା। ବ୍ରାହ୍ମମାନେ ଖ୍ରୀଷ୍ଟିୟାନ୍ ମିଶନାରୀ ପରି ଓଡ଼ିଶାରେ ନୂତନ ଶିକ୍ଷାନୁଷ୍ଠାନ ପ୍ରତିଷ୍ଠା କଲେ, ନୂତନ ନୂତନ ପୁସ୍ତକ ରଚନା ଓ ପ୍ରକାଶନ କଲେ ଓ ପତ୍ରପତ୍ରିକା ପ୍ରକାଶନ କଲେ। ବ୍ରାହ୍ମ ସମାଜର ଜଣେ ଅଗ୍ରଣୀ କର୍ମକର୍ତ୍ତା ପ୍ୟାରୀମୋହନ ଆଚାର୍ଯ୍ୟ ୧୮୮୫ ମସିହା କଟକଠାରେ ପ୍ରତିଷ୍ଠା କଲେ କଟକ ଏକାଡେମୀ ନାମକ ଉଚ୍ଚ ବିଦ୍ୟାଳୟ। ୧୮୮୩ ମସିହାରେ ସୁଯୋଗ୍ୟ ସମ୍ପାଦକ ବିଶ୍ୱନାଥ କରଙ୍କ ସମ୍ପାଦନାରେ ପ୍ରକାଶ ପାଇଲା ସାହିତ୍ୟ ପତ୍ରିକା 'ଉତ୍କଳ ଦୀପିକା'। ୧୮୮୯ ମସିହାରେ ଫକୀର ମୋହନଙ୍କ ସମ୍ପାଦନାରେ ପ୍ରକାଶ ପାଏ 'ସମ୍ବାଦ ବାହିକା'। ଓଡ଼ିଶାରେ ନବଶିକ୍ଷା ଆନ୍ଦୋଳନ ପ୍ରଭାବରେ ନାଟକ, ଉପନ୍ୟାସ, ଭ୍ରମଣ କାହାଣୀର ଲିଖନ ହେଲା। ନାଟ୍ୟକାର ରାମଶଙ୍କର ରାୟ, ଔପନ୍ୟାସିକ ଫକୀରମୋହନ ଓ କବି ରାଧାନାଥ ରାୟ ଏ ଯୁଗର ଚେତନା ପ୍ରବାହର ଅଗ୍ରସାରଥୀ ହେଲେ।

ସର୍ବଭାରତୀୟ ଆନ୍ଦୋଳନରେ ୧୮୧୭ ମସିହାରୁ ଓଡ଼ିଶା ଅଗ୍ରଣୀ ଭୂମିକା ବାଛି ନେଇଥିଲା। ଭାରତ ରୂପକ ପଙ୍କଜର ପାଖୁଡ଼ା ରୂପେ ଓଡ଼ିଶା ରହିଛି ବୋଲି କବିବର ରାଧାନାଥ ଅଭିହିତ କଲେ ତାଙ୍କ ରଚିତ 'ଭାରତ ଗୀତିକା'ରେ। ଉତ୍କଳକୁ ଏହିପରି ଭାରତର ଅଖଣ୍ଡ ଅଙ୍ଗରୂପେ ସେ ପ୍ରତିପାଦନ କଲେ। 'ଉତ୍କଳ ସମ୍ମିଳନୀ' ସିନା ବିଚ୍ଛିନ୍ନ ଓଡ଼ିଶାର ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ

ଏକତ୍ରୀକରଣ ପାଇଁ ଲଢୁଥିଲା, କିନ୍ତୁ ତାହା ଥିଲା ବାସ୍ତବରେ ଜାତୀୟତାବାଦୀ ଚେତନା ଜାଗରଣର ଏକମାତ୍ର ରାଜ୍ୟସ୍ତରୀୟ ରାଜନୀତିକ ଅନୁଷ୍ଠାନ। ନବଗଠିତ ମଧ୍ୟବିତ୍ତ ଶ୍ରେଣୀ ଏ ସଙ୍ଗଠନକୁ ଗଠନ କରିଥିଲେ ମଧ୍ୟ ଓଡ଼ିଶାର କେତେକ ଜାତୀୟ ଥିଲାବାଲା, ଜମିଦାର, ରାଜା ମହାରାଜା ଉତ୍କଳ ସମ୍ମିଳନୀର ନେତୃତ୍ୱରେ ଥିଲେ। ସେମାନଙ୍କ ମଧ୍ୟରେ ଦେବଗଡ଼ର ରାଜା ବାସୁଦେବ ସୁଢ଼ଳ ଦେବ, ମୟୂରଭଞ୍ଜର ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜ ଦେବ, ବାରିଷ୍ଟର ମଧୁସୂଦନ ଦାସ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ।

କବିବର ରାଧାନାଥଙ୍କ କାବ୍ୟ କବିତା ତାଙ୍କ ପୂର୍ବରୁ ଲେଖା ଯାଇଥିବା ରୀତିଯୁଗର ଭଞ୍ଜ, ଅଭିମନ୍ୟୁ ସାମନ୍ତସିଂହାର, ଦୀନକୃଷ୍ଣଙ୍କ କାବ୍ୟ ତୁଳନାରେ ଆଗୁଆ ଥିଲା ବା ଆଧୁନିକ ଥିଲା ମାତ୍ର ତାଙ୍କ ସମସାମୟିକ ବିଶ୍ୱ ଷ୍ଟାଣ୍ଡାର୍ଡ଼ର କବିତା ସହ ତୁଳନା କଲେ ତାହା ସମକାଳୀନ W.B. Yeats, ଏଜରା ପାଉଣ୍ଡ୍ ବା ଅଡେନ୍‌ଙ୍କ କବିତା ସହ ସମକକ୍ଷ ନଥିଲା। ତାହା ବରଂ ଥିଲା ଉନବିଂଶ ଶତକର ୱାର୍ଡ଼ସ୍ ୱାର୍ଥ, ସେଲୀ, କିଟ୍‌ସ, ବାଇରନ୍, ଟେନିସନ୍‌ଙ୍କ ପରି କେତେକ ଇଂରାଜୀ ରୋମାଣ୍ଟିକ କବିଙ୍କ ଦ୍ୱାରା ଅନୁପ୍ରାଣିତ ରଚନା। ତାଙ୍କ କବିତା ଯେହେତୁ ଭଞ୍ଜ ଅଭିମନ୍ୟୁଙ୍କର ଚିରାଚରିତ ପ୍ରାଚ୍ୟ କାବ୍ୟଧାରାକୁ ଛାଡ଼ି ନୂଆ ଏକ ପାଠକୀୟ ସ୍ୱାଦ ସୃଷ୍ଟି କଲା, ତାହା ଆମକୁ ଜଣାଗଲା ସ୍ୱତନ୍ତ୍ର। କହିବା ବାହୁଲ୍ୟ, ଏଇ ସ୍ୱାତନ୍ତ୍ର୍ୟ ଆସିଥିଲା ଉତ୍କଳୀୟ ରେନେଁସାର ପ୍ରଭାବ ଯୋଗୁଁ।

ଉତ୍କଳ ସମ୍ମିଳନୀ ତାହାର ପ୍ରଥମ ଅଧିବେଶନ ୧୯୦୩ରେ କଟକ ସହରରେ ଆରମ୍ଭ କଲା। ରାଧାନାଥ ସେହି ସମୟରେ ଓଡ଼ିଶା ଶିକ୍ଷା ଡିଭିଜନ୍‌ର ସ୍କୁଲ ଇନିସପେକ୍ଟର୍। ଅଫିସିଆଲ୍ କର୍ତ୍ତବ୍ୟ ପାଳନ ପାଇଁ ସେ ଓଡ଼ିଶାର ଏ ପ୍ରାନ୍ତରୁ ସେ ପ୍ରାନ୍ତ ସେତେବେଳେ ଭ୍ରମଣ କରିଛନ୍ତି, ଯଦିଓ ସେ ସମୟରେ ଯୋଗାଯୋଗର ବ୍ୟବସ୍ଥା ଆଜି ପରି ଉନ୍ନତ ତଥା ଦ୍ରୁତ ନଥିଲା। ଓଡ଼ିଶାର ପ୍ରାଚୀନ କାଳର ରାଜାରାଣୀ, ସାହସୀ ଐତିହାସିକ ବୀରଙ୍କୁ ନେଇ ଲିଖିତ ଦୀର୍ଘାକୃତି କାବ୍ୟରେ ବର୍ଣ୍ଣନାକୁ ଭୌଗଳିକ ଭିତ୍ତି ଯୋଗାଇବା ପାଇଁ ସେ ବହୁବାର ଓଡ଼ିଶାର ପ୍ରାକୃତିକ ଭୂଗୋଳକୁ ରସମୟ ଭାଷାରେ ବର୍ଣ୍ଣନା କରିଛନ୍ତି। ନିଜ ମାତୃଭୂମି ପ୍ରତି ନିଜର ଅଙ୍ଗୀକାର ଓ ଦରଦ ଏଇଥିରୁ ହିଁ ଜଣାପଡ଼େ। ରାଧାନାଥଙ୍କ ଜାତୀୟବାଦୀ ଭାବନାର ବାସ୍ତବରେ ଦୁଇଟି ଦିଗ ଥିଲା। ପ୍ରଥମତଃ ତାଙ୍କ ଲେଖନୀ ଓଡ଼ିଶାର ବିଭିନ୍ନ ଦର୍ଶନୀୟ ସ୍ଥଳର ଗୌରବଗାଥା ଗାନ କରିଛି। ଦ୍ୱିତୀୟରେ ପ୍ରତି ବର୍ଣ୍ଣନାରେ ସେ ଓଡ଼ିଶାର ଗୌରବମୟ ଅତୀତକୁ ଅଙ୍ଗୁଳି ନିର୍ଦ୍ଦେଶ କରି ତାହାର ମହିମା ଗାନ କରିଛନ୍ତି। ଅତୀତର ପ୍ରଶସ୍ତି ବାଢ଼ି ତାଙ୍କ କଲମ ଅଟକି ଯାଇ ନାହିଁ ବରଂ ଆଜିର ବାସ୍ତବତା ସହିତ ତାହାକୁ ତୁଳନା କରିଛି। 'ଦରବାର' କବିତାର ସମ୍ମୁଖଭାବରେ କେତୋଟି ସମଭାବାପନ୍ନ ଉକ୍ତିକୁ ଏ ପରିପ୍ରେକ୍ଷୀରେ ଲକ୍ଷ୍ୟ କରାଯାଉ:

'କାଞ୍ଚି ଅଭିଯାନେ ଯେ ଦୁର୍ଗ ପ୍ରାଚୀର
ବାଦ୍ୟ ନାଦେ ଦେଇଥିଲା ପ୍ରତିଗିର
ଜରାଜୀର୍ଣ୍ଣ ବେଶେ ଦେଖାଇ ସେ ଆଜ

ନବ୍ୟ ଉତ୍କଳର ଏ ସଭ୍ୟ ସମାଜ ।'
କିମ୍ବା 'ଏହି ଶିଳାବନ୍ଧ ଯା'ଙ୍କର କୀରତି
ପୁଣ୍ୟଶ୍ଳୋକ ମରକତ ମହୀପତି
ଦେଖୁ ନାହାନ୍ତି କି ମନେବହି ଲାଜ
କି ଥଲା ଏ ରାଜ୍ୟ, କି ହୋଇଛି ଆଜ ।'

ଏ ତୁଳନାରେ ଅର୍ଥ ହେଉଛି ବିଦେଶୀ ଶାସକଙ୍କ ବିରୋଧରେ ପାଠକଙ୍କୁ ପ୍ରଭାବିତ କରିବା ତଥା ତାଙ୍କ ମନରେ ସ୍ୱାଧୀନତାର ଆକାଂକ୍ଷା ଜାଗ୍ରତ କରାଇବା । ବିଦେଶୀ ଶାସନକୁ ଲକ୍ଷ୍ୟକରି ଓ ନିଜ ଅସହାୟତାକୁ ନାପସନ୍ଦ କରି କବି ଜାତିକୁ ଧିକ୍କାରିଛନ୍ତି :

'ଦୁରଂତ ଯବନ ହେଲା ଏକେଶ୍ୱର
କ୍ଷତ୍ରୀୟ ପ୍ରଭାବ ହେଲା ଅଳୀକ
ଆମ୍ଭର ସ୍ୱଦେଶ ନୁହେଁ ଏ ଆମ୍ଭର
ଧିକ ଧିକ ଆମ୍ଭ ବାହୁକୁ ଧିକ ।' (ଶିବାଜୀଙ୍କର ଉତ୍ସାହ ବାକ୍ୟ)

କବିଙ୍କର ତେଣୁ ଦେଶପ୍ରେମୀଗଣଙ୍କ ପ୍ରତି ଜାଗିବାର ବଜ୍ର ଆହ୍ୱାନ:

'ଯାବତ ଦେହରେ ବହେ ପ୍ରାଣବାୟୁ
ଶୂରେ ! ନ ବିମୁଖ ହୁଅ ସମରେ
ମାର ଅବା ମର ଏଥୁ ଅନ୍ୟ ଆଉ
ନଘଟୁ ଯେମନ୍ତ ତୁମ୍ଭ ଭାଗ୍ୟରେ ।' (ଶିବାଜୀଙ୍କର ଉତ୍ସାହ ବାକ୍ୟ)

ଯେଉଁଠି ବା ଯେଉଁ ପରିପ୍ରେକ୍ଷୀରେ ଓଡ଼ିଶାର ଗୁଣକୀର୍ତ୍ତନ କରିବାର ସୁଯୋଗ ପାଇଛନ୍ତି, ସେ ନିଜର ଭାବାବେଗର ସଦୁପଯୋଗ କରିଛନ୍ତି । ଅଗ୍ନି ମୁଖରେ 'ମହାଯାତ୍ରା' କାବ୍ୟରେ ଉତ୍କଳ ପ୍ରଶସ୍ତି ଗାନ କରିଛନ୍ତି କବି ଏହିପରି :

'ପର୍ଣ୍ଣ ଦଳେ ଶ୍ରେଷ୍ଠ ଯେହ୍ନେ ପ୍ରସୂନ ଲଳିତ
ଶ୍ରେଷ୍ଠ ଏ ଉତ୍କଳଭୂମି ଗୁଣେ ଗରିୟସୀ
ଯାମ୍ୟେ ଯା'ର ଋଷିକୁଲ୍ୟା, କପିଶା ଉତ୍ତରେ
ପଶ୍ଚିମେ ଭାର୍ଗବାଶ୍ରମ, ମହେନ୍ଦ୍ର ଶିଖରୀ
ଚିର କୋଳାହଳମୟ ପୂର୍ବେ ପୟୋନିଧି
ପୁଷ୍ପକୁଣ୍ଡେ ଶ୍ରେଷ୍ଠ ତା'ର କେଶର ଯେସନ
ଶ୍ରେଷ୍ଠ ଏ ନୀଳାଦ୍ରି ଧାମ ସମଗ୍ର ଉତ୍କଳେ ।' (ମହାଯାତ୍ରା-ଦ୍ୱିତୀୟ ସର୍ଗ)

ସେହିପରି ଶ୍ରେଷ୍ଠ ଭୂମି ଓ ତା'ର ବିଭୂତିମୟ କୋଳରେ ବସି ଆମେ ଦୁର୍ଭାଗ୍ୟପୂର୍ଣ୍ଣ ଜୀବନଯାପନ କରିବା ଅତ୍ୟନ୍ତ ଦୁଃଖଦ । ନିଜକୁ ସ୍ୱାଧୀନ ରଖି ନ ପାରିବାର ଗ୍ଲାନି କବିଙ୍କୁ ଚିରତର ଘାରିଅଛି । ଆତ୍ମସମୀକ୍ଷା ନିମନ୍ତେ ସେ ଅମର୍ଷ କଣ୍ଠରେ ଆହ୍ୱାନ ଦେଇଛନ୍ତି :

'କଳ୍ପଲତା ମୂଳେ ବସି ଚିର ଉପବାସୀ !
ତୃଷାର୍ତ୍ତ ନିରତେ ରହି ସୁରଧୁନୀ ତୀରେ
ଦିଗ୍‌ବିଜୟୀ ଆର୍ଯ୍ୟ ସିଂହ ଔରସେ ଜନମି
ହେଲେ କି ଅକ୍ଷମ, ଆହା, ନିଜସ୍ୱ ରକ୍ଷଣେ ?' (ମହାଯାତ୍ରା-ସପ୍ତମ ସର୍ଗ)

'ମହାଯାତ୍ରା' କାବ୍ୟ ଉତ୍ସର୍ଗୀକୃତ ସେ ସମୟର ବିଶିଷ୍ଟ ଅର୍ଥନୀତିଜ୍ଞ, ତଥା ଆଇ.ସି.ଏସ୍ ଏବଂ ଓଡ଼ିଶାର ଆର.ଡି.ସି. ରମେଶ ଚନ୍ଦ୍ର ଦତ୍ତଙ୍କ ସମ୍ମାନରେ ।

ଓଡ଼ିଶାରେ ଶିକ୍ଷାର ବିକାଶ, ସାଂସ୍କୃତିକ ଜାଗରଣର ଯଦିଓ ରାଧାନାଥ ଥିଲେ ପଥିକୃତ, ତଥାପି ଏ ଆନ୍ଦୋଳନ ସର୍ବବ୍ୟାପୀ ହୋଇ ସମ୍ପୂର୍ଣ୍ଣଭାବେ ଓଡ଼ିଶାକୁ ଗ୍ରାସୀ ଯିବା ଦରକାର ବୋଲି କବି ଭାବୁଥିଲେ । କବି 'ଚିଲିକା' କାବ୍ୟରେ ଉତ୍କଳବାସୀଙ୍କୁ ବୀଣାପାଣିଙ୍କ କରୁଣା ନିମନ୍ତେ ପ୍ରାର୍ଥନା କରିଛନ୍ତି । ତାଙ୍କ ଆଶୀର୍ବାଦ ଫଳରେ ଓଡ଼ିଶା ଶିକ୍ଷିତ ରାଜ୍ୟ ହେବ ଓ ତେବେ ଯାଇ କଟିବ ତା'ର ଅରଣ୍ୟ ପ୍ରସୂନର ଦଶା । ରେନେସାଁ ଓ ଜାତୀୟ ମଞ୍ଚ ଉତ୍କଳ ସମ୍ମିଳନୀର ସାରଥୀତ୍ୱ କରିବା ନିମନ୍ତେ ଶ୍ରୀରାମଚନ୍ଦ୍ର ଭଞ୍ଜ, ସୁଦ୍ଧଳ ଦେବ ପରି ନରପତି ଆଗେଇ ଆସିବାର ଦେଖି କବି ପ୍ରବଳ ଆଶାବାଦର ଗୁଣ କୀର୍ତ୍ତନ କରିଛନ୍ତି :

'ପାହିଲାଣି ଘୋର ତାମସ ଯାମିନୀ
ଫୁଟିବ ଉତ୍କଳ ଭାଷା କମଳିନୀ ।' (ଚିଲିକା)

କେବଳ ସାଂସ୍କୃତିକ ଜାଗରଣରେ କାହିଁକି, ଓଡ଼ିଶାର ସର୍ବାଙ୍ଗୀନ ବିକାଶ ରାଧାନାଥ ପ୍ରତିଭାର ଆଭିମୁଖ୍ୟ ଥିଲା । ବାମଣ୍ଡା ପରିଦର୍ଶନ କାଳରେ ରାଜ୍ୟରେ ଉନ୍ନତ ପ୍ରଣାଳୀର କୃଷିକର୍ମ ଦେଖି କବି ଆନନ୍ଦିତ ହୋଇଥଲେ । ରାଜା ସୁଦ୍ଧଳ ଦେବଙ୍କ ସର୍ବାଙ୍ଗୀନ ଉନ୍ନୟନଶୀଳ ପ୍ରତିଭାର ପ୍ରଶଂସା କରି ରାଧାନାଥ ଲେଖିଲେ - "ଗୁଡ଼ିଏ ମଫସଲର ପ୍ରଜା ଶସ୍ୟ ବିଶେଷର ବପନର ଉପଯୁକ୍ତ ସମୟ ସମ୍ବନ୍ଧରେ ସୁଦ୍ଧଳ ଦେବଙ୍କ ସହିତ ପରାମର୍ଶ କରିବା ନିମନ୍ତେ ଦୂରରୁ ଆସିଥିଲେ । ବାସ୍ତବରେ ଏହି ରାଜା ସେମାନଙ୍କ ମଧ୍ୟରେ ଥିଲେ ମହାଚଷା ।"

ପାଶ୍ଚାତ୍ୟ ରେନେସାଁର ସାହିତ୍ୟକୁ ମୁଖ୍ୟଦାନ ହେଲା ଟ୍ରାଜେଡ଼ି । ମଣିଷର ମନୋଜଗତରେ ଅନ୍ଧାରୀ ଓ ଆଲୋକିତ ଦିଗ ମିଶାମିଶି କରି ରହିଥାଏ । "Evil is a part of the man. It is not an external factor" (Substance of Tragedy, Bradley) ସେକ୍ସପିଅରଙ୍କ ଟ୍ରାଜିକ୍ ହିରୋ ମୁଖ୍ୟତଃ ନିଜର ଦୁର୍ଭାଗ୍ୟର କ୍ରୀଡ଼ନକ ହୋଇଥାଏ । ଦୁର୍ଘଟଣା,

ଅଘଟନକ ବିପତ୍ତି ଅନେକତ୍ର ଉଦାତ୍ତ ଚରିତ୍ରର ନାୟକର ଭାଗ୍ୟରେ ଟ୍ରାଜେଡ଼ି ଆଣିଥାଏ। ସେକ୍ସପିଅରୀୟ ଟ୍ରାଜିକ୍ ନାୟକର ହୃଦୟ ଭିତରପଟୁ ବହୁଧା ବିଭକ୍ତ ହୋଇଥାଏ। ଅନେକତ୍ର ଦୁଇ ପ୍ରତିଦ୍ୱନ୍ଦୀଙ୍କ ଦ୍ୱନ୍ଦରୁ ଟ୍ରାଜେଡ଼ିର ସୂତ୍ରପାତ ହୋଇଥାଏ। ଏହି ଦ୍ୱନ୍ଦଗୁଡ଼ିକ ସାଧାରଣତଃ ପେସନ୍ ଓ ଚିନ୍ତନର ବିଭିନ୍ନତାରୁ ଜାତ ହୋଇଥାଏ। ଦ୍ୱନ୍ଦ୍ୱରେ ନାୟକର ଶୋଚନୀୟ ପରାଜୟ ଟ୍ରାଜେଡ଼ିର ପୂର୍ଣ୍ଣ ପ୍ରକାଶକ ହୋଇଥାଏ। ସେକ୍ସପିଅରୀୟ ଟ୍ରାଜେଡ଼ିରେ ଭୂତ, ପ୍ରେତ, ଗଛ ଇତ୍ୟାଦି ଅନେକ କ୍ଷେତ୍ରରେ ଦୁଃଖର ସୂତ୍ରଧର ସାଜିଥାନ୍ତି। ମୋଟ୍ ଉପରେ ମଣିଷର ଯାବତୀୟ ଦୁଃଖ ଓ ଯନ୍ତ୍ରଣାକୁ cause ଏବଂ effect ତରାଜୁରେ ମାପି ସେକ୍ସପିଅର୍ ଟ୍ରାଜେଡ଼ିକୁ ମାନବର ମନୋବିଶ୍ଳେଷକ ରୂପେ ତାଙ୍କ ଦୁଃଖାନ୍ତ ନାଟକଗୁଡ଼ିକରେ ପ୍ରୟୋଗ କରିଥିଲେ। ରାଧାନାଥ ଟ୍ରାଜେଡ଼ିକୁ ନନ୍ଦିକେଶ୍ୱରୀ, ଚନ୍ଦ୍ରଭାଗା, ଉଷା, ପାର୍ବତୀ କାବ୍ୟମାନଙ୍କରେ ବେଶ୍ ସଫଳଭାବେ ପ୍ରୟୋଗ କରି କାବ୍ୟମୋଦୀ ଓଡ଼ିଆ ପାଠକଙ୍କ ରୁଚି ଓ କଳାଦୃଷ୍ଟିକୁ ସମୃଦ୍ଧ କରିଛନ୍ତି। ରାଧାନାଥଙ୍କ ଟ୍ରାଜେଡ଼ିରେ ଶୋକୋଚ୍ଛ୍ୱାସକୁ ଗଭୀର ଘନୀଭୂତ କରେ ଭାଗ୍ୟବାଦ।" ଭବିଷ୍ୟତ ଯାହା ଅବଶ୍ୟ ଘଟିବ, କେ ତାହା କରିବ ଆନ"-ପରି Prediterministic ଭାବନାରାଜି ବିୟୋଗାନ୍ତକ କାବ୍ୟକୁ ମର୍ମଭେଦୀ ଓ ରସସିକ୍ତ କରିଛି। ରାଧାନାଥଙ୍କ ଉପରୋକ୍ତ କାବ୍ୟର ପରିଣତିରେ ରେନେସାଁର ବିୟୋଗାନ୍ତକ ପରମ୍ପରା ଯେପରି ଅଭିବ୍ୟଂଜିତ, ଦଶରଥ ବିୟୋଗ ଓ ଦୁର୍ଯ୍ୟୋଧନର ରକ୍ତନଦୀ ସନ୍ତରଣ କବିତା ଦୁଇଟି ସେହିପରି କବିଙ୍କ କାରୁଣ୍ୟଭରା ହୃଦୟର ଅଶ୍ରୁଳ ଅଭିବ୍ୟକ୍ତି। ରାଧାନାଥଙ୍କ ଟ୍ରାଜିକ୍ କାବ୍ୟ ରଚନା ସମକାଳୀନ କବି ମଧୁସୂଦନଙ୍କ 'ସୀତା ବନବାସ' ବା ଗଙ୍ଗାଧରଙ୍କ 'ତପସ୍ୱିନୀ'କୁ ବିଶେଷଭାବେ ପ୍ରଭାବିତ କଲା ଓ ଓଡ଼ିଆ ସାହିତ୍ୟରେ ନବଜାଗରଣ ଧାରାକୁ ପୁଷ୍ଟଳ କଲା।

କବିବରଙ୍କୁ ଓଡ଼ିଶା ରେନେସାଁର ଶ୍ରେଷ୍ଠ ଆବାହକ ବୋଲି ଆମ୍ଭେ ମନେକରୁ। ରାଧାନାଥ ଓଡ଼ିଆ କବିତାକୁ ନୂତନ ଦିଶା ମୁଖରେ ଠିଆ କରାଇ ନଥିଲେ, ସତ୍ୟବାଦୀର ନୂତନ ଚିନ୍ତନ ସମ୍ଭବ ହୋଇପାରିନଥାନ୍ତା। ସତ୍ୟବାଦୀର ସମୃଦ୍ଧ ପରମ୍ପରା ପଞ୍ଚସଖାଙ୍କ ମହାନ୍ ଦେଶପ୍ରାଣତା ରାଧାନାଥଙ୍କ ସାଧନାର ଏକ ପ୍ରସାରିତ ଅଙ୍ଗ। ପୁଣି ରେନେସାଁ ପ୍ରଭାବରେ ପଡ଼ି ଉତ୍କଳ ସମ୍ମିଳନୀର ସ୍ୱତନ୍ତ୍ର ପ୍ରଦେଶ ଗଢ଼ିବାର ଏକାଗ୍ର ସଂଗ୍ରାମର ଧାରକ ହେଲେ ଗୋପବନ୍ଧୁଙ୍କ ପଞ୍ଚସଖାଗଣ। ରେନେସାଁର ପ୍ରଭାବରେ ଯେଉଁ ସ୍ରଷ୍ଟାଗଣ ଇଂରାଜୀ ସାହିତ୍ୟର ପ୍ରଭାବରେ ଆସି ଆଗକୁ ମାଡ଼ିଚାଲିଲେ, ସେମାନଙ୍କୁ ଆମ୍ଭେ 'ଆଧୁନିକତା'ର ପ୍ରବକ୍ତା ବୋଲି କହୁ। ଯେଉଁମାନେ ଆର୍ଯ୍ୟର ପ୍ରାଚୀନ ଗୌରବମୟ ପରମ୍ପରାକୁ ଗୁରୁତ୍ୱ ଦେଲେ ଓ ସେହି ପଶ୍ଚାତ୍‌ଦୃଷ୍ଟିରୁ ପ୍ରେରଣା ସଂଗ୍ରହ କଲେ, ସେମାନଙ୍କୁ ଆମ୍ଭେ ରିଭାଇଭେଲିଷ୍ଟ ବୋଲି କହୁଁ। ରାମମୋହନ, ଈଶ୍ୱରଚନ୍ଦ୍ର ଆର୍ଯ୍ୟର ପ୍ରାଚୀନ ପରମ୍ପରାକୁ ଆଦର କରୁଥିଲେ, ମାତ୍ର ଆଧୁନିକ ବଙ୍ଗଳା ଭାଷାର ସେବାରେ ତାକୁ ବ୍ୟବହାର କଲେ ଏବଂ ଇଂରାଜୀ ଭାଷା ସାହିତ୍ୟ ସେମାନଙ୍କୁ ଏଥିରେ ପ୍ରେରଣା ଯୋଗାଇଲା। ତେଣୁ ସେମାନଙ୍କୁ ଆମ୍ଭେ ଆଧୁନିକତାର ପ୍ରବକ୍ତା କହିପାରୁ। ସେହିପରି କବିବର ରାଧାନାଥ ଯଦିଓ ଓଡ଼ିଶାର ପ୍ରାଚୀନ ଗୌରବରାଜୀରୁ ପ୍ରେରଣା ସଂଗ୍ରହ କରିଥିଲେ ବା ତାକୁ ନୂତନ କବିଙ୍କ ଅଗ୍ରଦୃଷ୍ଟିକୁ ବିଶ୍ଳେଷଣ କରି ତାଙ୍କୁ ଆମ୍ଭେ 'ଆଧୁନିକ' ବୋଲି କହିପାରୁ।

# ବୀମସ୍‌ଙ୍କ ନୋଟ୍ ଖାତା : ଓଡ଼ିଶା ସମ୍ପର୍କରେ

୧୬୩୪ ମସିହା ଫେବୃଆରୀ ଦୁଇ ତାରିଖରେ ବାଉଟନ୍ ନାମକ ଜଣେ ଇଂରାଜୀ ଡାକ୍ତରଙ୍କ ଚିକିତ୍ସାରେ ସନ୍ତୁଷ୍ଟ ହୋଇ ଅଖଣ୍ଡ ଭାରତର ସାହେନ୍‌ଶାହ ସାହାଜାହାନ୍ ଇଂରେଜ ବଣିକମାନଙ୍କୁ କାରବାର ପାଇଁ ସୁବର୍ଣ୍ଣରେଖାର ମୁହାଣ ପିପିଲିଠାରେ ଅଫିସ ଓ ବାଣିଜ୍ୟ କୋଠୀ ଖୋଲିବା ପାଇଁ ଅନୁମତି ଦେଲେ। ଏହା ପୂର୍ବରୁ ଗଙ୍ଗା ନଦୀର ମୁହାଣ ଇଲାକାରେ ପର୍ତ୍ତୁଗୀଜ୍‌ମାନଙ୍କ ସହ ପ୍ରତିଯୋଗିତା ନିମନ୍ତେ ଇଂରେଜମାନେ ଅଫିସ୍ ଖୋଲିବା ପାଇଁ ଦରଖାସ୍ତ କରିଥିଲେ। ଗଣ୍ଡଗୋଳ ଆଶଙ୍କା କରି ବାଦ୍‌ଶାହ ଏଥିପାଇଁ ଅନୁମତି ଦେଇ ନଥିଲେ। ବାଲେଶ୍ୱର ସମେତ ହୁଗୁଳି ଅଞ୍ଚଳରେ ବାଣିଜ୍ୟକୋଠୀ ତୋଳିବା ନିମନ୍ତେ ଇଂରେଜମାନଙ୍କୁ ପ୍ରତ୍ୟେକ ସ୍ଥାନରେ ବାରବାଟି ପରିମାଣର ଜମି ଦିଆଗଲା। ବାଲେଶ୍ୱରର ବୁଢ଼ାବଳଙ୍ଗ କୂଳରେ ପ୍ରଥମ ବ୍ରିଟିଶ ବସତି ଯେଉଁଠି ଗଢ଼ି ଉଠିଥିଲା; ତାକୁ "ବାରବାଟୀ" ନାମରେ ନାମିତ କରାଗଲା।

ବଲେଶ୍ୱରରେ ,ଏଥିପୂର୍ବରୁ ଓଲନ୍ଦାଜ୍ ସାହିରେ ଓଲନ୍ଦାଜ୍‌ମାନେ ଦପ୍ତର ଖୋଲି ଓ ସାଥୀ ସମର୍ଥକ ଧରି ବସବାସ ଓ ବେପାର କରିବାକୁ ଲାଗିଯାଇଥିଲେ। ଏବେ ବି ଓଲନ୍ଦାଜ୍‌ସାହି, ଦିନାମାର୍ ଡିଙ୍ଗା ଓ ଫରାସୀ ଡିଙ୍ଗା ପରି ବସ୍ତିମାନ ବଲେଶ୍ୱର ସହରରେ ରହିଅଛି। ଓଲନ୍ଦାଜ ଓ ଫରାସୀମାନଙ୍କଠାରୁ ଇଂରେଜ ବଣିକମାନେ ଉନ୍ନତ ଯନ୍ତ୍ରଚାଳିତ ଜାହାଜ, ବନ୍ଧୁକ ଇତ୍ୟାଦିର ଅଧିକାରୀ ଥିଲେ। ୧୬୬୪ ମସିହା ବେଳକୁ ଓଲନ୍ଦାଜ୍ ଓ ଫରାସୀମାନଙ୍କ ସହିତ ଜମିଜମାର ସୀମା ସରହଦ୍ ଓ ବାଣିଜ୍ୟ କାରବାରର ପରିମାଣ ନେଇ ଇଂରେଜମାନଙ୍କର ପ୍ରବଳ ଗଣ୍ଡଗୋଳ ହେଲା। ଏହାର ସମାଧାନ ପାଇଁ ସାୟସ୍ତ ଖାଁ ଘଟଣାର ହସ୍ତକ୍ଷେପ କଲେ। ୟୁରୋପୀୟ ଜାତିମାନଙ୍କର ଜମିଜମାର ସୀମାରେଖା ଚିହ୍ନିତ ହେଲା। ନାନା ପ୍ରକାର ଗଛ ଓ ଗାଡ଼ିଆକୁ ନେଇ ନିର୍ଦ୍ଧାରିତ ସୀମାରେଖା ଅତି ତୁଚ୍ଛ ଓ ଅଳ୍ପ କ୍ଷଣସ୍ଥାୟୀ ସଭାବର ଥିଲା। କାଳକ୍ରମେ ସୀମାରେଖା ସବୁ ଲୁପ୍ତ ହେଲା ବାରବାଟୀ ଅଞ୍ଚଳରେ ଓଲନ୍ଦାଜ୍ ଓ ଫରାସୀଙ୍କର ଦୌରାତ୍ମ୍ୟ ବଢ଼ିଲା।

ଜନ୍ ବୀମସ୍ ୧୬୭୬ ମସିହା ପୂର୍ବରୁ ୟୁରୋପୀୟ ବ୍ୟବସାୟୀଙ୍କ କାରବାର ବାଲେଶ୍ୱର ଓ ସାର୍ଥାରେ ଥିଲା ବୋଲି ତାଙ୍କ ସଂଦର୍ଭରେ ଉଲ୍ଲେଖ କରିଛନ୍ତି। ବାରବାଟୀ ଅଞ୍ଚଳରେ ଓଲନ୍ଦାଜ୍ ସାହେବ କ୍ୟାପ୍ଟେନ୍ ଫ୍ରାନ୍‌ସିସ୍‌ଙ୍କ ପତ୍ନୀ ଆନ୍ନାଙ୍କ କବର ସ୍ମୃତି ଲେଖକୁ ପଢ଼ି ବୀମସ୍ ତାଙ୍କ ନୋଟ୍‌ରେ ଏହି ଅଭିମତ ଦେଇଛନ୍ତି। ସପ୍ତଦଶ ଶତାବ୍ଦୀରେ ସୋର ଓ ଭଦ୍ରକ ଅଞ୍ଚଳରେ ୟୁରୋପୀୟମାନେ ବାଣିଜ୍ୟ କରିବାକୁ ଆସି ବସତି ସ୍ଥାପନ କରିଥିବାର ପ୍ରମାଣ ଅଛି। ସେ ଅଞ୍ଚଳରୁ ସରୁ ତନ୍ତ ଲୁଗା ସେମାନେ ରପ୍ତାନୀ କରିବା ପାଇଁ ଆସି ବାଣିଜ୍ୟ ଆରମ୍ଭ କରିଥିଲେ।

ବୁଢ଼ାବଳଙ୍ଗ ନଦୀର ମୁହାଣ ପାଖରେ ବଳରାମଗଡ଼ି ମୌଜା ସେତେବେଳର ଏକ ଗୁରୁତ୍ୱପୂର୍ଣ୍ଣ ବାଣିଜ୍ୟ ପେଣ୍ଠ ଥିବାର ବିମସ୍ ଉଲ୍ଲେଖ କରିଛନ୍ତି। ୧୮୩୧ ମସିହାର ଏକ ସାମୁଦ୍ରିକ ଝଡ଼ରେ ଏଇ ବନ୍ଦର ଭିତିକ ଗ୍ରାମ ଭାସି ଯାଇଥିଲା। ସେଇଦିନୁ ବଳରାମଗଡ଼ି ଜନଶୂନ୍ୟ ହୋଇଯାଇଥିଲା। ଏବେ ଦେଖା ଯାଉଥିବା ଘରଗୁଡ଼ିକ ନୂତନ ବସତି ସ୍ଥାପୟିତାଙ୍କର।

୧୬୮୫ ମସିହାରେ ଓଡ଼ିଶାର ନବାବ୍ ସାୟସ୍ତ ଖାଁଙ୍କ ଦୌରାତ୍ମ୍ୟ ବହୁ ପରିମାଣରେ ବଢ଼ିଗଲା। ସେ ବାଲେଶ୍ୱରରେ ବ୍ରିଟିଶ୍ ଜାତିର ବାଣିଜ୍ୟ କୋଠୀକୁ ଭାଙ୍ଗିଦେଲେ ଏବଂ ତାଙ୍କ ବେପାରୀମାନଙ୍କୁ ମାରପିଟ୍ କଲେ। ଇଷ୍ଟ ଇଣ୍ଡିଆ କମ୍ପାନୀ ଇଂଲଣ୍ଡର ତତ୍କାଳୀନ ସମ୍ରାଟ ଦ୍ୱିତୀୟ ଜେମ୍ସଙ୍କ ଅନୁମତି କ୍ରମେ ଏଡ଼ମିରାଲ ନିକଲସନ୍‌ଙ୍କ ନେତୃତ୍ୱରେ ଦଶ ଗୋଟି ଅସ୍ତ୍ରଶସ୍ତ୍ର ସଜ୍ଜିତ ଜାହାଜ ନେଇ ବାଲେଶ୍ୱର ଅଭିମୁଖେ ଇଂଲଣ୍ଡରୁ ବାହାରି ପଡ଼ିଲେ। ନିକଲସନ୍ ଜାହାଜ ଗୁଡ଼ିକୁ ନେତୃତ୍ୱ ଦେଇ ପ୍ରଥମେ ଚିଟ୍ଟାଗଙ୍ଗରେ ପହଞ୍ଚିବାର ଯୋଜନା ଥିଲା। ସେଠାରେ ଏକ ଶକ୍ତିଶାଳୀ ଘାଟୀ ପ୍ରତିଷ୍ଠା କରି ବଙ୍ଗଳା ଓ ବିହାର ଦଖଲର ଉଦ୍ୟମ କରିବା ପାଇଁ ତାଙ୍କର ମସୁଧା ଥିଲା। ସେହିବର୍ଷ ଖରାପ ସାମୁଦ୍ରିକ ପାଗ ଯୋଗୁଁ ତାଙ୍କ ଜାହାଜ ଯାଇ ହୁଗୁଳିରେ ଲାଗିଲା। ସେଇଠାରେ କମ୍ପାନୀର ସୈନ୍ୟ ଓ ବେଙ୍ଗଲ ନବାବ୍‌ଙ୍କ ସୈନ୍ୟ ସାମନ୍ତଙ୍କ ମଧ୍ୟରେ ୧୬୮୭ ମସିହା ଯାଏ କ୍ରମାଗତ ଯୁଦ୍ଧ ଓ ବଳ କଷାକଷି ଲାଗି ରହିଲା। ନିକଲସନ୍‌ଙ୍କ ଉପରେ କମ୍ପାନୀ ରୁଷ୍ଟ ହେଲେ ଓ ୧୬୮୭ ମସିହାରେ ତାଙ୍କୁ ପ୍ରତ୍ୟାହାର କଲେ। ତାଙ୍କ ସ୍ଥାନରେ ଆସିଲେ କ୍ୟାପ୍‌ଟେନ୍ ହିଥ୍ - ସେ ସୂତାନଟୀ ଓ ହୁଗୁଳି ଅଞ୍ଚଳରେ ଥିବା କମ୍ପାନୀ କର୍ମଚାରୀ ଓ ଇଂଜିନିୟର୍ ଚାର୍ନକ୍‌ଙ୍କୁ ଧରି ବାଲେଶ୍ୱରରେ ପହଞ୍ଚିଲେ। ୧୬୮୮ ମସିହା ନଭେମ୍ବର ୨୯ ତାରିଖରେ ହିଥ୍ ତିରିଶଟି ବନ୍ଧୁକ ଓ ଦଳେ ସୈନ୍ୟ ଧରି ବାଲିଘାଟ ଠାରେ ଛୋଟ ଏକ ଡଙ୍ଗାରୁ ଓହ୍ଲାଇ ବାଲେଶ୍ୱର ଆକ୍ରମଣ କଲେ। ବାଲେଶ୍ୱର ଦଖଲ କରି ସେ ସ୍ଥଳଭାଗରେ ଜଳେଶ୍ୱର ନିକଟସ୍ଥ ମହମ୍ମଦନଗର ପାଟଣା ଯାଏ ଦଖଲ କରିଗଲେ। ଚିଟ୍ଟାଗଙ୍ଗ୍‌ରେ ଛାଡ଼ି ଆସିଥିବା ସୈନ୍ୟ ବାହିନୀ ଓ ମାଲମତା ଆଣିବା ପାଇଁ ହିଥ୍ ପୁଣି ଜଳପଥରେ ଚିଟ୍ଟାଗଙ୍ଗ୍ ଗଲେ। ସ୍ଥାନୀୟ ମୋଗଲ ଶାସକ ଏଇ ସୁଯୋଗରେ ବ୍ରିଟିଶ କବଳରୁ ବାଲେଶ୍ୱରକୁ ମୁକ୍ତ କରି ତାଙ୍କ ଗୋଦାମ ଘର ଓ କାରଖାନା ଭାଙ୍ଗିଦେଲେ।

୧୬୯୧ ମସିହାଯାଏ ବାଲେଶ୍ୱର ପୁଣି ମୁକ୍ତାବସ୍ଥାରେ ରହିଲା। ୧୬୯୧ ମସିହାରେ ବାଦ୍‌ଶାହ ଆଉରଙ୍ଗଜେବ୍ ବଙ୍ଗଳା ଓ ଓଡ଼ିଶାରେ ବାଣିଜ୍ୟ କାରବାର କରିବା ପାଇଁ ଇଂରେଜମାନଙ୍କୁ ଅନୁମତି ଦେଲେ। ଇଂରେଜମାନେ ବାଣିଜ୍ୟକୋଠୀ ପୁନଃସ୍ଥାପନ କରିବା ପରେ ତାଙ୍କ ଜାତିର ସ୍ମୃତିରାଜି ଓ ଐତିହ୍ୟକୁ ପୁଣି ସଗୌରବେ ସଂସ୍ଥାପନ କଲେ। ମିସେସ୍ ଓ୍ୱିସାଙ୍କର ସମାଧି ସ୍ତମ୍ଭ ଭଙ୍ଗା ହୋଇ ନଦୀ ଧାରରେ ପଡ଼ିଥିଲା। ତାକୁ ବୋହି ବାରବାଟୀର ଗୋରା କବରଖାନାରେ ସ୍ଥାପନ କଲେ। ୧୬୯୦ ମସିହାଯାଏ କୋଲକତା ନଗରୀ ସ୍ଥାପିତ ହୋଇନଥିଲା। ବଳଙ୍ଗ ନଦୀ ଧାରେ ଧାରେ ବାଲେଶ୍ୱର ସହରଟି ଗଢ଼ି ଉଠିଥିଲା ଏବଂ ଇଂରେଜ ଜାତିର ତାହା ଏକମାତ୍ର ବାଣିଜ୍ୟ କେନ୍ଦ୍ର ଥିଲା।

୧୭୪୮ ମସିହା ବେଳକୁ ଦଳେ ଇଂରେଜ ସୂତାନଟୀ, ଗୋବିନ୍ଦପୁର ଓ ହୁଗୁଳିରେ ବାଣିଜ୍ୟ କୋଠୀ ସ୍ଥାପନ କଲେ। ୧୭୫୬ ମସିହାରେ ସିରାଜୌଦଲ୍ଲାଙ୍କ ସୈନ୍ୟ ହୁଗୁଳିରେ ଇଂରେଜମାନଙ୍କ ଉପରେ ଆକ୍ରମଣ କରିବାରୁ କେତେକ ଇଂରେଜ ସୈନ୍ୟ ଓ କମ୍ପାନୀର ଅଫିସର୍ ପଳାଇ ଆସି ବଳରାମଗଡ଼ିରେ ଲୁଚିଥିଲେ। କ୍ୟାପ୍ଟେନ୍ ଡ୍ରେକ୍ ଫଲ୍ଟାଠାରେ ଜାହାଜର ନଙ୍ଗର ପକାଇ ସିରାଜୌଦଲ୍ଲାଙ୍କ କବଳରୁ ରକ୍ଷା ପାଇବା ପାଇଁ ମଝି ସମୁଦ୍ରରେ କାଳ କଟାଉଥିଲେ ଏବଂ ସେଇ ସମୟରେ କ୍ଲାଇବ୍ ଇଂଲଣ୍ଡରୁ ଆସି ତାଙ୍କୁ ସାକ୍ଷାତ କଲେ। ୧୭୬୩ ମସିହାରେ କେତେକ ଫରାସୀ ସୈନିକ ବାଲେଶ୍ୱର ରାଜରାସ୍ତାରେ ବ୍ରିଟିଶ୍ ସୈନ୍ୟମାନଙ୍କୁ ବନ୍ଦୀ କଲେ ଏବଂ ଏ ଖବର ସୂତାନଟୀ ଠାରେ ଚାଞ୍ଚଲ୍ୟ ସୃଷ୍ଟି କଲା। ବ୍ରିଟିଶମାନଙ୍କ ସାମୟିକ ପରାଜୟ କଲିକତା ଓ ବାଲେଶ୍ୱର ମଧ୍ୟରେ ଜାହାଜ ଚଳାଚଳ ଓ ବାଣିଜ୍ୟକୁ ନିରୁତ୍ସାହିତ କଲା। ବାଲେଶ୍ୱରକୁ ଜାହାଜରେ କେବଳ ଚାଉଳ ଓ ପଥର ବାସନ ଇତ୍ୟାଦି କଲିକତାକୁ ସରବରାହ ହେବାର ଦେଖାଗଲା।

ମାଡ୍ରାସ ରେଜିମେଣ୍ଟକୁ ଧରି ଜେନେରାଲ ୱେଲ୍ସଲି ଦକ୍ଷିଣରୁ ବା ଗଞ୍ଜାମ ପଟରୁ ଏବଂ ବେଙ୍ଗଲରୁ ତାଲିମପ୍ରାପ୍ତ ସୈନିକ ଧରି ଜେନେରାଲ ଲେକ୍ ମରହଟ୍ଟା ଶାସିତ ଓଡ଼ିଶାକୁ ଆକ୍ରମଣ କଲେ। ୧୮୦୩ ମସିହାର ଅକ୍ଟୋବର ପ୍ରାରମ୍ଭରେ ଲେଫଟ୍‌ନାଣ୍ଟ କର୍ଣ୍ଣେଲ୍ ଜର୍ଜ ହାର୍‌କୋର୍ଟ ଅକ୍ଟୋବର ଦଶ ତାରିଖ ଦିନ ଗଞ୍ଜାମରୁ ସଦଳବଳେ ମାଡ଼ି ଆସି କଟକ ସହର ଦଖଲ କଲେ। କ୍ୟାପ୍ଟେନ୍ ମୋର୍ଗାନ୍ ଓ ଲେଫଟନାଣ୍ଟ ବାଉଟନ୍‌ଙ୍କ ନେତୃତ୍ୱରେ ଏକ ହଜାର ସୈନ୍ୟ ବାଲେଶ୍ୱର ସହର ଦଖଲ କରିବା ପାଇଁ ଚନ୍ଦବାଲି ବନ୍ଦର ନିକଟରେ ପହଞ୍ଚିଲେ। କଲିକତାରୁ ଜେନେରାଲ ଫର୍ଗୁସନ୍ ଜଳେଶ୍ୱର ଯାଏ ମାଡ଼ି ଆସି ସୁବର୍ଣ୍ଣରେଖା ତୀରରେ କ୍ୟାମ୍ପ୍ ପକାଇ ରହିଲେ। ଚନ୍ଦବାଲି ଦେଇ ଆସୁଥିବା ସୈନ୍ୟମାନେ ଗବ ଗାଁ ଓ ଜାମ୍‌ପଦାଠାରେ ଛାଉଣୀ ପକାଇ ରହିଲେ। ତାଙ୍କ ପାଇଁ ଖାଦ୍ୟ ସରବରାହ କଲେ ପୁରୁଣା ବାଲେଶ୍ୱରର ଜମିଦାର ପ୍ରହଲ୍ଲାଦ ନାୟକ। ସମୁଦ୍ର ଧାରେ ଧାରେ ଫଉଜ ମାର୍ଚ୍ଚ କରି ବାଲିଘାଟ ଯାଏ ଆସିଲେ। ବାରବାଟୀ ଇଲାକାରୁ କେତେକ ମରହଟ୍ଟା ସୈନ୍ୟ ସେମାନଙ୍କୁ ଅତର୍କିତ ଭାବେ ଆକ୍ରମଣ କଲେ। ବ୍ରିଟିଶ୍ ସୈନ୍ୟ ଦଳ ସେମାନଙ୍କୁ ତଡ଼ି ନିଅନ୍ତେ ସେମାନେ ଭୟରେ ସହର ଛାଡ଼ି ମିତ୍ରପୁର ପାହାଡ଼ ଓ ଜଙ୍ଗଲ ଭିତରକୁ ପଳାଇ ଆତ୍ମଗୋପନ କଲେ। କେତେ ଘଣ୍ଟା ମଧ୍ୟରେ ବାଲେଶ୍ୱର ବଜାର ଦଖଲୀକୃତ ହେଲା।

ପୁରୁଣା ବାଲେଶ୍ୱରର ବାଣିଜ୍ୟ ଗୋଦାମଟି ଭାଙ୍ଗିରୁଜି ଯାଇଥିବାରୁ ନିଳିଆବାଗ୍‌ରେ କ୍ୟାପ୍ଟେନ୍ ଉଇଲକିନ୍‌ସନ୍‌ଙ୍କ ବାସଭବନର ଏକ ଅଂଶ କ୍ୟାପ୍ଟେନ୍ ମୋରଗାନ୍ ବ୍ୟବହାର କଲେ। ୧୮୦୩ ମସିହା ସେପ୍ଟେମ୍ବର ୨୧ ତାରିଖରେ ବ୍ରିଟିଶରମାନେ ବାଲେଶ୍ୱରକୁ ଦଖଲ କଲେ। ସେଇଦିନ ଲେଫ୍‌ଟନାଣ୍ଟ୍ କର୍ଣ୍ଣେଲ୍ ଜି.ହାରକୋର୍ଟ କଟକର ୨୫ ମାଇଲ ଦକ୍ଷିଣରେ ବଡ଼ ପୁରୁଷୋତ୍ତମପୁରଠାରେ କ୍ୟାମ୍ପ କରିଥିଲେ। ସେଇଦିନ ଯାଏ କଟକ ତାଙ୍କ ଦ୍ୱାରା ଅଧିକୃତ ହୋଇନଥାଏ। ମାଡ୍ରାସକୁ ହାରକୋର୍ଟ ଲେଖିଥିବା ଏକ ପତ୍ରରେ ବାଲେଶ୍ୱର ବିଜୟ ସରିଥିବା

ଯୋଗୁଁ ସେ ନିଜର ଆନନ୍ଦ ପ୍ରକାଶ କରିଥିଲେ। ମୋର୍‌ଗାନ୍ କେତେକ ସୈନ୍ୟ ପଠାଇ ସୋର ବଜାରକୁ ନିଜ ଆୟତ୍ତକୁ ଆଣିଲେ।

ମୋର୍‌ଗାନ୍ ମୟୂରଭଞ୍ଜ ଓ ନୀଳଗିରି ରାଜ୍ୟ ଉପରେ ଏଥର ନିଜର ଶ୍ୟେନ ଦୃଷ୍ଟି ପକାଇଲେ। ଏ ଦୁଇରାଜ୍ୟ ଭଞ୍ଜପୁରାଣ ଜାତିର ରାଜାଙ୍କ ଦ୍ୱାରା ଶାସିତ ହେଉଥିଲା। ମୟୂରଭଞ୍ଜ ଓ ନୀଳଗିରି ରାଜ୍ୟକୁ ଗୁପ୍ତଚରମାନ ପଠାଗଲା। ଏଇ ଦୁଇ ରାଜ୍ୟ ଭିତରକୁ ପଶିବା ରାସ୍ତାର ସେରଗଡ଼ ଓ ବଇଶିଙ୍ଗା ଠାରେ ଦୁଇଟି ପାସ୍‌ପୋର୍ଟ ଚେକିଂ ଗେଟ୍ ବସାଗଲା। ବାଲେଶ୍ୱର ପରମିଟ୍ ପଡ଼ିଆରେ ଏକ ଅଫିସ୍ ଖୋଲି ପାସ୍‌ପୋର୍ଟ ଦିଆଗଲା। ଏ ରାଜ୍ୟ ଦୁଇଟିର ଲୋକେ କଟକ ଓ ପୁରୀ ଯିବାକୁ ଚାହିଁଲେ, ବ୍ରିଟିଶ ସରକାରଙ୍କ ଠାରୁ ପାସ୍‌ପୋର୍ଟ ନେଇ ଭ୍ରମଣ କରୁଥିଲେ।

ସୋରକୁ ଶାସନାଧୀନ କଲାପରେ ସେଠାକାର ଆଇନ୍ ଶୃଙ୍ଖଳା ଦୀର୍ଘ ଦିନ ଧରି ଶାନ୍ତ ରହିଲା। ତେଣୁ ଲେଫ୍‌ଟନାଣ୍ଟ୍ ସ୍ମାଏଙ୍କୁ ଯାଜପୁର ଚାଲିଯିବା ପାଇଁ ନିର୍ଦ୍ଦେଶ ଆସିଲା। ମୋରଗାନ୍ ସାହେବ ଏଥର ରେଭିନିଉ କମିଶନର ହେଲେ। ବିଗତ ବର୍ଷରେ ଖଜଣା ଖିଲାପ କରିଥିବା ଚାଷୀ, ରୟତ, ପ୍ରଜାମାନଙ୍କୁ ବକେୟା ଖଜଣା ସେ ଛାଡ଼ କରିଦେଲେ। ମରହଟ୍ଟା ଶାସନରେ ପ୍ରଜାମାନଙ୍କର ମୋକଦ୍ଦମା, ଜମିଦାର ଓ ଖଣ୍ଡାୟତ ମାନଙ୍କ ବିରୁଦ୍ଧରେ ଥିବା ଅଭିଯୋଗ - ସବୁ ଖାରଜ ହେଲା ବୋଲି ସେ ଘୋଷଣା କଲେ। ମୟୂରଭଞ୍ଜର ରାଣୀ ବ୍ରିଟିଶ୍ ଶାସକ ସହିତ ଶାନ୍ତିପୂର୍ଣ୍ଣ ସହବସ୍ଥାନର ବୁଝାମଣା କରିବେ କି ନାହିଁ ସେ ବିଷୟରେ ଦୋ ଦୋ ପାଞ୍ଚ ଅବସ୍ଥାରେ ଥିଲେ। ହାରକୋର୍ଟ ଓ ମୋର୍‌ଗାନ୍ ରାଣୀ ସାହେବାଙ୍କୁ ବୁଝାଇବା ପାଇଁ ଅନେକ ପତ୍ର ଲେଖିଲେ। ରାଣୀ ସାହେବାଙ୍କ ମଧସ୍ଥି ଥିଲେ ପୋସ୍‌ମେନ୍ ସାହେବ। ଏଇ ସାହେବ ରାଣୀଙ୍କ ମାନସିକ ପ୍ରସ୍ତୁତିକୁ ବିଗାଡ଼ି ଦେଉଥିବାର ହାରକୋର୍ଟ ସନ୍ଦେହ କଲେ। ପୋସ୍‌ମେନ୍‌ଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ କରିବାର ଧମକ ଦିଆଗଲା। ଅବିଳମ୍ବେ ଜଳେଶ୍ୱର ଓ ବାଲେଶ୍ୱରରୁ ଦୁଇ ଦୁଇ କମ୍ପାନୀ ପଦାତିକ ବାହିନୀ ମୟୂରଭଞ୍ଜର ତତ୍‌କାଳୀନ ରାଜଧାନୀ ହରିହରପୁର ଉଦ୍ଦେଶ୍ୟରେ ପଠାଗଲା। ରାଣୀ ଓ ତାଙ୍କ ଉତ୍ତରାଧିକାରୀ ଟିକାୟତ ସାହେବଙ୍କୁ ଶାନ୍ତିପୂର୍ଣ୍ଣ ଅବସ୍ଥାରେ ସିଦ୍ଧାନ୍ତ ନେବାକୁ ଏ ସୈନ୍ୟ ବାହିନୀ ପ୍ରେରଣର ଉଦ୍ଦେଶ୍ୟ ଥିଲା ବୋଲି ଏକ ପତ୍ରରେ ଲେଖାଗଲା। ଇଂରେଜମାନଙ୍କ ସହ କିଛି ବାର୍ତ୍ତାଳାପ ବା ଚୁକ୍ତି କରିବାକୁ ସେମାନଙ୍କ ଇଚ୍ଛା ଥିଲେ, ସେମାନେ ତାଙ୍କ ନିର୍ବାଚିତ ଓକିଲଙ୍କ ମାଧ୍ୟମରେ କଟକରେ କମିଶନ୍‌ଙ୍କ ମିସଲ୍‌ରେ କରି ପାରିବେ ବୋଲି ପରାମର୍ଶ ଦିଆଗଲା।

କଟକ ଓ ତା'ର ଆଖପାଖ ତହସିଲ ଅଞ୍ଚଳରେ ୧୮୦୩ ମସିହାରେ ଦୁର୍ଭିକ୍ଷର ପଦଧ୍ୱନି ଶୁଣାଗଲା। ପନ୍ଦର ହଜାର ମହଣ ଚାଉଳ ଜଳ ପଥରେ ବାଲେଶ୍ୱରରୁ ମଗାଗଲା ଏବଂ ତାହା ଦୁର୍ଭିକ୍ଷ ପ୍ରପୀଡ଼ିତଙ୍କ ମଧ୍ୟରେ ବଣ୍ଟାଗଲା। ୧୮୦୪ ମସିହା ଜୁନ୍ ୧ ତାରିଖରେ ପୁରୀ ଓ ଭୁବନେଶ୍ୱର ତୀର୍ଥଯାତ୍ରୀମାନଙ୍କ ଉଦ୍ଦେଶ୍ୟରେ ମୋର୍ଗାନ୍ ଏକ ନୋଟିସ୍ ଜାରି କଲେ। କଟକ ଭିତରକୁ ପଶିବା

ପୂର୍ବରୁ ସେମାନେ ତାଙ୍କର ବାଟଖର୍ଚ୍ଚ ଓ ଖାଇବା ଖର୍ଚ୍ଚ ଇଂରେଜ ଶାସକଙ୍କ ଟୁଲ୍‌ଗେଟ୍‌ରେ ଆଗତୁରା ଜମା ଦେବେ। ତା' ବଦଳରେ କର୍ତ୍ତୃପକ୍ଷ ସେମାନଙ୍କୁ ଖାଦ୍ୟ ଓ ଗମନାଗମନ ସୁବିଧା ଯୋଗାଇ ଦେବେ।

୧୮୦୪ ମସିହା ସେପ୍ଟେମ୍ବର ପହିଲାରେ ପୁଣି ଦୁର୍ଭିକ୍ଷର ମୁକାବିଲା ପାଇଁ ବାଲେଶ୍ୱରରୁ କୋଡ଼ିଏ ହଜାର ମହଣ ଚାଉଳ ମଗାଗଲା। ଧାମରା ଓ ଚାନ୍ଦବାଲି ବନ୍ଦର ଦେଇ ଜଳପଥରେ ଏହା ମହାନଦୀର ଯୋବ୍ରା ଘାଟକୁ ଯୋଗାଣ କରାଗଲା। କଟକର ଦୁର୍ଭିକ୍ଷ ସମ୍ପର୍କରେ ବାଲେଶ୍ୱରର କଲେକ୍ଟରଙ୍କୁ ମୋର୍ଗାନ୍ ଖବର ଜଣାଇ ଲେଖିଥିବା ପତ୍ରରୁ ସେତେବେଳର ଲୋକଙ୍କ ଆର୍ଥିକ ଅବସ୍ଥା ବିଷୟରେ କିଂଚିତ୍ ଆଭାସ ମିଳେ। ମହାନଦୀର ଉତ୍ତର ପାଖରେ ୪୦ ମାଇଲ ଅନ୍ତରରେ ଧାନ ଚାଉଳର ଅଭାବ ଜମା ନଥିବାରୁ ସେ ଲେଖିଥିଲେ। ଓଡ଼ିଶାକୁ ତିନିବର୍ଷ ଧରି ବାଲେଶ୍ୱରରେ ଥିବା ଚାଉଳ ଓ ଅନ୍ୟାନ୍ୟ ଖାଦ୍ୟଶସ୍ୟ ଚଳାଇ ନେଇ ପାରିବ। ଟଙ୍କାକୁ ଅଶି ସେରରୁ ୧୦୦ ସେର ଯାଏ ଚାଉଳ ସେ ଅଞ୍ଚଳରେ ମିଳେ। ଧାମରା ଓ ଚାନ୍ଦବାଲି ବନ୍ଦରରେ ଅନେକ ପରିମାଣର ଚାଉଳ କଟକ ପଠାଯିବା ପାଇଁ ଜମା ହୋଇଥିବାର ସେ ମଧ୍ୟ ଲେଖିଛନ୍ତି। କଟକରେ ଚାଉଳର ଅଭାବ ହେବାର ଚାରୋଟି କାରଣ ସେ ସେଥିରେ ଉଲ୍ଲେଖ କରିଥିଲେ। ପ୍ରଥମେ କଟକରେ ବେଶ ବଦଳାଇ ରହିଥିବା କେତେକ ମରହଟ୍ଟା ଓ ତାଙ୍କ ସମର୍ଥକ ଇଂରେଜଙ୍କୁ ସେଠାରେ ଅପଦସ୍ଥ କରିବା ପାଇଁ ଏଇ କୃତ୍ରିମ ଅଭାବ ସୃଷ୍ଟି କରିପାରିଥାନ୍ତି। ଦ୍ୱିତୀୟରେ କଟକୀ ରୟତମାନଙ୍କଠାରୁ ଜବରଦସ୍ତ ନ କରି କେହି ମୁଠେ ଚାଉଳ କାଢ଼ି ପାରିବ ନାହିଁ। ମରହଟ୍ଟା ବର୍ଗୀମାନେ ଅତ୍ୟାଚାର କରି କେବଳ ଖଜଣା ଆଦାୟ କରୁଥିଲେ। ଇଂରେଜମାନଙ୍କ ନରମ ଶାସନ ରୀତି ଦେଖି ଏହା ତାଙ୍କର ଦୁର୍ବଳତା ବୋଲି ଚାଷୀମାନେ ଧରି ନେଇପାରନ୍ତି- ଯାହାକି ଅଭାବ ଅନଟନ ବଢ଼ାଇବାରେ ସାହାଯ୍ୟ କରିଛି। ତୃତୀୟତଃ ବେପାରୀମାନେ ଇଂରେଜମାନଙ୍କୁ ମୂଳରୁ ବିରୋଧ କରି ଆସିଛନ୍ତି। ସେମାନେ ସୁଦୂର ମାନ୍ଦ୍ରାଜ୍‌ରେ ଶସ୍ତାରେ ଚାଉଳ ବିକିବେ ଅଥଚ ମହଙ୍ଗରେ କଟକ ବଜାରରେ ତାହା ଛାଡ଼ିବେ ନାହିଁ। ଏବଂ ଶେଷରେ ଇଂରେଜ କମିଶନ୍‌ର ଅଫିସ ବହୁପ୍ରକାର ଦୁର୍ନୀତି, ଅପାରଗତା ଓ ହୀନମନ୍ୟତାର ଏକ ଗନ୍ତାଘର ଥିଲା। ଓଡ଼ିଶା ପାଇଁ ଯାହା କରିବାର ସ୍ୱପ୍ନ କମିଶନ୍‌ର ତଥା ଉଚ୍ଚପଦସ୍ଥ କର୍ମଚାରୀମାନେ ଦେଖୁଥିଲେ, ତାହା ଏଇ ଅପାରଗତା ଯୋଗୁଁ କାର୍ଯ୍ୟକାରୀ ହୋଇପାରୁନଥିଲା।

୧୮୦୫ ମସିହାରେ ରାଜା ତ୍ରିପତି ରାଜ୍ ବାଲେଶ୍ୱରର ଅମିଲ୍ ବା କଲେକ୍ଟର ହିସାବରେ ନିଯୁକ୍ତି ପାଇଲେ। ସୋର ଓ ଭଦ୍ରକ ପାଇଁ ସ୍ୱତନ୍ତ୍ର ଅମିଲ ନିଯୁକ୍ତ ହେଲେ। ସେମାନଙ୍କୁ ଯଥାଶିଘ୍ର ସେଇ ଅଞ୍ଚଳର ଆର୍ଥିକ ଆୟ ଓ ବ୍ୟୟର ହିସାବ ପଠାଇବାକୁ କଟକରୁ ନିର୍ଦ୍ଦେଶ ଦିଆଗଲା। ମାତ୍ର ଢିଲାକାମ କରିବା, ବା କାମ ନକରି ନୀରବରେ ଅସହଯୋଗ କରିବା ସେଠା ତଳ ଓଡ଼ିଆ କର୍ମଚାରୀଙ୍କ ଅଭ୍ୟାସ ଥିଲା। ସେମାନେ ଟିକସ୍ ଆଦାୟ କରିବାରେ ଯେମିତି ମଠ ଥିଲେ ତା'ର ହିସାବ ପତ୍ର ରଖିବାରେ ସେମିତି ଥିଲେ ଠାପୁଆ ବା ଅଳସୁଆ। ହିସାବ କିତାବ ତନଖି ବେଳେ

ସେମାନେ ଦପ୍ତରକୁ ଆସୁନଥିଲେ, ତାଙ୍କୁ ଖୋଜିବାକୁ ତାଙ୍କ ଘରକୁ ଲୋକ ପଠାଇଲେ ସେମାନେ ଲୁଚୁଥିଲେ। "ସେ ଘରେ ନାହାନ୍ତି" - ଘରର ଅନ୍ୟାନ୍ୟ ଲୋକେ କହୁଥିଲେ ବା କୁଆଡ଼େ ଯାଇଛି ବୋଲି ସଠିକ୍ ଖବର ଦେଉନଥିଲେ। ହିସାବ ପତ୍ର କେହି କେବେ ଯଦି ପଠାଉଥିଲେ, ତାହା ବିଧି ପୂର୍ବକ ସମ୍ପନ୍ନ ହୋଇନଥିବାର ଦେଖାଯାଉଥିଲା। ସେମାନେ ଲୁଚେଇ ଲୁଚେଇ ବ୍ରିଟିଶ୍ ବିରୁଦ୍ଧରେ ନାନା ରାସ୍ତାରେ ଲାଗିଥିଲେ। ଅଫିସ୍ ର ବିଭିନ୍ନ ଅତ୍ୟାବଶକୀୟ କାଗଜ ପତ୍ର, ଫାଇଲ୍ ଓ ରେକର୍ଡ଼ ହଠାତ୍ କୁଆଡ଼େ ଉଭାନ୍ ହୋଇ ଯାଉଥିଲା। ଗୋଟିଏ ପ୍ରକାର ମାର୍ଗ ନିର୍ଦ୍ଦେଶ ଥିବା ସତ୍ତ୍ୱେ ଘଉଳ ପତ୍ର ଓ ଅନ୍ୟାନ୍ୟ ମାଲମତା ବହନ କରି ଡ୍ୟୁଟିରେ ଯାଉଥିବା ଗୋରୁ ବା ଶଗଡ଼ ଗାଡ଼ିକୁ ସେମାନେ ଅନ୍ୟ ଆଡ଼େ ପଠାଇ ପ୍ରଶାସକଙ୍କୁ ଅଯଥା ହଇରାଣ କରୁଥିଲେ। ଜମିଦାରମାନଙ୍କୁ ୧୮୦୫ ରେ ତାଙ୍କ ଇଷ୍ଟେଟ୍‌ର ମୂଲ୍ୟଧାର୍ଯ୍ୟ ପାଇଁ କଟକକୁ ଡକାଗଲା, ମାତ୍ର କେହି ଜଣେ ହେଲେ ଆସିଲେ ନାହିଁ। ଇଂରେଜ ଅଫିସରମାନେ କଟକ. ଯାଜପୁର, ରାଜନଗର ଅଞ୍ଚଳର ରାସ୍ତାଘାଟ ଦେଖିନଥିବାରୁ ପ୍ରଶାସନ ଚଳାଇବା କ୍ଷେତ୍ରରେ ବହୁ ଅସୁବିଧା ଦେଖାଦେଲା। ଜନ ସାଧାରଣଙ୍କ ମଧ୍ୟରେ ଏହି ଅପାରଗତାର ସମାଲୋଚନା ଆରମ୍ଭ ହେଲା।

୧୮୦୫ ମସିହାରେ ଭଦ୍ରକର ଅମିଲ୍ ଥିଲେ ମୋହନ ଲାଲା। ଶାସନ ସୁବିଧା ଦୃଷ୍ଟିରୁ ସୋର ଓ ବାଲେଶ୍ୱରକୁ ଗୋଟାଏ ଅମିଲ୍‌ରେ ରଖାଗଲା। ଓଡ଼ିଶାରେ ମରହଟ୍ଟାଙ୍କ ଉପସ୍ଥିତି ବିଷୟରେ ଏଇ ବର୍ଷ ବିଶେଷ ସୂତ୍ରରୁ ଜଣାପଡ଼ିଲା। ଅନୁଗୁଳଠାରେ ସେମାନଙ୍କୁ ଇଂରେଜ ଅଫିସରମାନେ ଦେଖିଥିଲେ ବୋଲି ରିପୋର୍ଟ କଲେ। ମେଜର ବ୍ରାଉଟନ୍‌ଙ୍କ ନେତୃତ୍ୱରେ କେତେ କମ୍ପାନୀ ସୈନ୍ୟ ଅନୁଗୁଳ ଯାତ୍ରା କଲେ। ସେମାନେ ଅନୁଗୁଳ ଓ ସମ୍ବଲପୁର ଦଖଲ କଲେ। ବେରାର୍ ରାଜାଙ୍କ ସହ ଶାନ୍ତି ଚୁକ୍ତି ସେଇଠି ସାକ୍ଷରିତ ହେଲା। ୧୮୦୪ ମସିହା ନଭେମ୍ବର ୧୯ ତାରିଖ ଯାଏ କ୍ୟାପ୍‌ଟେନ୍ ମୋର୍‌ଗାନ୍ ବାଲେଶ୍ୱରର କଲେକ୍ଟର ଓ ମାଜିଷ୍ଟ୍ରେଟ୍ ରହିଲେ। ତା'ପରେ କେର୍ ସାହେବ କଟକ ସହ ବାଲେଶ୍ୱର ଦାୟିତ୍ୱରେ ରହିଲେ। ପରେ ପରେ କେର୍ ବାଲେଶ୍ୱର କଲେକ୍ଟର, ମାଜିଷ୍ଟ୍ରେଟ୍, ଲବଣ କଷ୍ଟମ୍‌ସ ଏଜେଣ୍ଟ ଓ ଆଞ୍ଚଳିକ ସୁରକ୍ଷାର କମାଣ୍ଡିଂ ଅଫିସର ରୂପେ ରହିଲେ। କେର୍ ସାହେବ ୧୮୦୫ ମସିହାରେ ପ୍ରଥମେ ବାଲେଶ୍ୱର ଜିଲ୍ଲାର ଜମି ଜମାର ବନ୍ଦୋବସ୍ତ କଲେ। ସୁବର୍ଣ୍ଣରେଖାଠାରୁ ଯାଜପୁର ଯାଏ ଏକ ବିରାଟ ଅଞ୍ଚଳରେ ବନ୍ଦୋବସ୍ତ ଓ ଖଜଣା ଧାର୍ଯ୍ୟର କାମ ଜୋର୍‌ସୋର୍‌ରେ ଆରମ୍ଭ କଲେ। ସୁବର୍ଣ୍ଣରେଖା ବାଲେଶ୍ୱର ଜିଲ୍ଲାର ଶେଷ ସୀମାରେଖା ରୂପେ ଚିହ୍ନିତ କରାଯାଇଥିଲେ ମଧ୍ୟ ସେଟେଲମେଣ୍ଟର ଜରିବୀକରଣ ବସ୍ତା ଆଉ ପଟକୁ ଯାଇ ନଥିଲା। ମେଦିନୀପୁର ଓ ଜଳେଶ୍ୱର ଅଞ୍ଚଳକୁ ମରହଟ୍ଟା ମହଲା ଓ ବାଲେଶ୍ୱର ଅଞ୍ଚଳକୁ ମୋଗଲବନ୍ଦ କୁହାଯାଉଥିଲା। ମରହଟ୍ଟା ମହଲା ମଧ୍ୟରେ ଓଡ଼ିଶାର କେତୋଟି ପ୍ରସିଦ୍ଧ ପ୍ରଗଣା ଥିଲା, ଯଥା: ପଟାସ୍‌ପୁର, କମର୍ଦ୍ଦା, ଭୋଗରାଇ, ସାହାବନ୍ଦର, ନାଂପୋଷ୍ଟେର ଓ କିସ୍‌ମତ୍ କଟିସାହି।

୧୮୦୫ ମସିହାରେ କେର୍‌ଙ୍କ ଶାସନ କାଳରେ କନିକାର ରାଜା ଇଂରେଜ ଶାସନ ବିରୁଦ୍ଧରେ ବିଦ୍ରୋହ ଘୋଷଣା କଲେ। ବ୍ରାହ୍ମଣୀ ଓ ବୈତରଣୀର ସଂଗମ ସ୍ଥଳରେ ଥିବା ବାଣିଜ୍ୟ

କୋଠୀ ଉପରେ ଏହି ରାଜା ୬୦୦ ସଶସ୍ତ୍ର ପାଇକ ଧରି ହଠାତ୍ ଆକ୍ରମଣ କଲେ। ବାଣିଜ୍ୟ କୋଠୀକୁ ତଥା ପାଖ ରାଜନଗରକୁ ମୁକ୍ତ କରିବା ପାଇଁ ଧାମରାରୁ କ୍ୟାପଟେନ୍ ମାକାର୍‌ଥୀ ୪୦୦ ସଶସ୍ତ୍ର ପାଇକ ସହ ଯାତ୍ରା କଲେ। ରାଜା ପରାସ୍ତ ହେଲେ। ତାଙ୍କୁ ଗୃହବନ୍ଦୀ କରି ବରକନ୍ଦାଜ ଜଗୁଆଳୀ ଥିବା ବାଲେଶ୍ୱରର ଏକ କୋଠାରେ ରଖାଗଲା। କନିକା ରାଜ୍ୟ ଏହିପରି ବ୍ରିଟିଶ୍ ରାଜତ୍ୱ ଭିତରକୁ ଆସିଲା। ଜଳେଶ୍ୱର ଠାରୁ କଟକ ଓ ପୁରୀକୁ ଯାଇଥିବା ରାସ୍ତାଟିକୁ ବନ୍ଦ କରି ବାଲେଶ୍ୱର ଜିଲ୍ଲାର ଗୋଡ଼ିଖାଲ, ବସ୍ତା, ବାଲେଶ୍ୱର ଦେଇ ଏକ ସଡ଼କ ପଥ ନିର୍ମାଣ ପାଇଁ ୧୮୦୫ରେ ଏକ ପ୍ରସ୍ତାବ ଆସିଲା। ମୟୂରଭଞ୍ଜ ଓ ନୀଳଗିରି ରାଜ୍ୟ ଦେଇ ଯାଇଥିବା ଏଇ ବଡ଼ଦାଣ୍ଡରେ ବହୁତ ହତ୍ୟା, ଚୋରି ଆଦି ହେଉଥିଲା। ରାଜାମାନେ ମନଇଚ୍ଛା ବାଟ ଓ ଘାଟ କର ଯାତ୍ରୀଙ୍କ ଠାରୁ ଆଦାୟ କରୁଥିଲେ। ରାଜଘାଟ ଓ ବସ୍ତା ଦେଇ ଓଡ଼ିଶା ଟ୍ରଙ୍କ୍ ରୋଡ଼ର ନିର୍ମାଣ ୧୮୦୫ରେ ଆରମ୍ଭ ହେଲା। ଏହା ବ୍ରିଟିଶ ଶାସନାଧୀନ ଅଞ୍ଚଳରେ ପଡ଼ି ଥିବାରୁ ଏଥିରେ ଗମନାଗମନ ପାଇଁ କିଛି କର ଦେବାକୁ ପଡ଼ିଲା ନାହିଁ ତା'ଛଡ଼ା ଏଥିରେ ଯାତାୟତ କାଳରେ ଇଂରେଜ ପୋଲିସ ଯାତ୍ରୀଙ୍କୁ ସୁରକ୍ଷା ଦେଲେ। କାଳକ୍ରମେ ମୟୂରଭଞ୍ଜ ଓ ନୀଳଗିରି ରାଜ୍ୟ ଦେଇ ଯାଇଥିବା ରାସ୍ତା ଜନମାନବହୀନ ହୋଇଗଲା ଓ ଇଂରେଜମାନେ ପକାଇଥିବା ରାସ୍ତାରେ ବ୍ୟବହାର ବଢ଼ିଲା।

ମେକର୍ ମୋର୍‌ଗାନ୍ ମାସିକ ପାଞ୍ଚଶତ ଟଙ୍କା ଦରମା ପାଉଥିଲେ। କେର୍ ସାହେବଙ୍କ ଶାସନ ଇଲାକା ବୃଦ୍ଧି ହୋଇଥିଲେ ବି ସେ ସେତିକି ଟଙ୍କା ଦରମା ନେଲେ। ଏହି ସମୟରେ ପ୍ରଜା ଅଶାନ୍ତି, ଗଣ୍ଡଗୋଳ, ଫୌଜଦାରୀ ବହୁ ମାତ୍ରାରେ ବଢ଼ିଗଲା। ସେଟେଲମେଣ୍ଟ୍ ସରିବା ପରେ କେର୍ ସାହେବ ଜି. ଉଇବ୍‌ଙ୍କୁ ଶାସନ ଭାର ଛାଡ଼ି ଦେଲେ। ଉଇବ୍ କଟକ ଓ ବାଲେଶ୍ୱର ଉଭୟ ଦାୟିତ୍ୱରେ ରହିଲେ। ୧୮୧୫ ପରେ ଶାସନ ବସ୍ତୁତଃ କେନ୍ଦ୍ରୀଭୂତ ହୋଇ ରହିଲା କଟକରେ। ଖୋର୍ଦ୍ଧା ଓ ପୁରୀରେ କୃଷକ ଅଶାନ୍ତି ଭୟାବହ ଆକାର ଧାରଣ କରି ଶାସକଙ୍କ ଦୃଷ୍ଟି ଆକର୍ଷଣ କଲା। ୧୮୨୦ ଯାଏ ବାଲେଶ୍ୱରରେ କଲେକ୍ଟର ନଥିଲେ କି ବ୍ରିଟିଶ୍ ଶାସନ ନଥିଲା। ବିଧିବଦ୍ଧ କାହାର ଶାସନ ଚାଲୁଥାଏ ଅବା ନଥାଏ। ବାଲେଶ୍ୱରରେ ଲୋକେ ଅତି ଶାନ୍ତିପ୍ରିୟ ଓ ସହନଶୀଳ ଥିଲେ। ସାଧାରଣ ଗାଁ ଗଣ୍ଡାର ଗୃହସ୍ଥମାନେ ଯେ କୌଣସି ଶାସକର ଶାସନକୁ ବିଶେଷ ଗୁରୁତ୍ୱ ନଦେଇ ନିଜ ନିଜର ସଂସାର ସୁରୁଖୁରରେ ଚଳାଇ ନିଅନ୍ତି। ଆଇନଗତ ପ୍ରଶ୍ନ ଯେତେବେଳେ ସେମାନଙ୍କ ମନକୁ ଆସେ ବା ସର୍ବସାଧାରଣରେ ଉଠେ ସେମାନେ ସ୍ୱଭାବସିଦ୍ଧ ରୀତିକୁ ଆଇନରୂପେ ମାନି ନିଅନ୍ତି ଓ ମିତ୍ରତାର ପରିସରରେ ଗଣ୍ଡଗୋଳର ସମାଧାନ କରି ନିଅନ୍ତି। ଏପରି ସହନଶୀଳ ଓ ଉଦାର ସ୍ୱଭାବ ସତ୍ତ୍ୱେ ବାଲେଶ୍ୱର ଜିଲ୍ଲାର ଲୋକଙ୍କ ଉପରେ କାହିଁକି ଏତେ ପ୍ରକାର ବେଆଇନ୍ ଟିକସ ବସିଲା, ଏତେ ପ୍ରକାର କଷ୍ଟମ୍‌ସ ଟିକସ ବସିଲା, ତାହାର ମୂଳ କାରଣ ଧରି ହୁଏନା। ବ୍ରିଟିଶ ଆଇନଗୁଡ଼ିକ ଉନ୍ନତ ଓ ସଭ୍ୟ ସମାଜର ଆଇନ୍ ହୋଇଥିବାରୁ ତାହା ପରବର୍ତ୍ତୀ କାଳରେ ବାଲେଶ୍ୱର ବାସୀଙ୍କର ଜୀବନ ଧାରଣ ପାଇଁ ବହୁ ଦୃଷ୍ଟିରୁ ସହାୟକ ହୋଇ ପାରିବ ବୋଲି ବୀମ୍‌ସ ଆଶା ବ୍ୟକ୍ତ କରି ତାଙ୍କ ପ୍ରବନ୍ଧର ଉପସଂହାର ଟାଣିଥିଲେ।

ଇଷ୍ଟଇଣ୍ଡିଆ କମ୍ପାନୀର ଜଣେ ପଦସ୍ଥ ଅଫିସର ଜନ୍ ବୀମ୍ସ । ଓଡ଼ିଶା ତଥା ଭାରତର ପୂର୍ବ ଉପକୂଳର ରାଜାମାନଙ୍କର ବେପାର ବଣିଜ କରିବା ପାଇଁ ଓ ମୁନାଫା ଲୁଟିବା ପାଇଁ ୟୁରୋପର ବିଭିନ୍ନ ଦରିଆପାରି ବେପାରୀ ସଂସ୍ଥାମାନ ବଳ କଷାକଷି କରୁଥିବା ବେଳେ ବୀମ୍ସ ଜଣେ ଦରଦୀ ଓ ସଂସ୍କୃତି ସମ୍ପନ୍ନ ଅଫିସର ରୂପେ ଓଡ଼ିଆ ଭଷାର ସମୃଦ୍ଧ ପରମ୍ପରା ଓ ଓଡ଼ିଶାର ଐତିହ୍ୟମୟ ଐଶ୍ୱର୍ଯ୍ୟକୁ ଚିହ୍ନି ପାରିଥିଲେ । ଜନ୍ ବୀମ୍ସ ହେଉଛନ୍ତି ଇଂଲଣ୍ଡର ବେପାରୀ ସଂସ୍ଥାଙ୍କର ଆର୍ଥନୀତିକ ଚରିତ୍ର ମାର୍କେଣ୍ଟାଇଲ୍ କ୍ୟାପିଟାଲିଜିମ୍ ସ୍ତରରେ ଥିବାବେଳେ ସେହି ସଂସ୍ଥାର ଏକ ଭଲ ଅଫିସର । ମାର୍କେଣ୍ଟାଇଲ୍ କ୍ୟପିଟାଲିଷ୍ଟମାନେ ଭାରତକୁ ଆସିଥିଲେ ବେପାର କରି ବହୁ ପରିମାଣରେ ଅନ୍ୟାୟୋଚିତ ଲାଭ ଆଦାୟ କରିବା ଆଶାରେ । ତଥାପି ବୀମ୍ସଙ୍କ ପରି ମତିମାନ ମାନବିକ ହୃଦୟସମ୍ପନ୍ନ ଅଫିସର ତାଙ୍କ ଭିତରେ ଥିଲେ । ଭାରତକୁ ସେମାନେ ବହନ କରି ଆଣିଥିଲେ ବ୍ରିଟିଶ ସଂସଦୀୟ ବ୍ୟବସ୍ଥାର ମହାନ୍ ଉପଲବଧି ଗୁଡ଼ିକ । ସେମାନେ ଆମ ଦେଶର ଦଳିତ ନିପୀଡ଼ିତ ପ୍ରଜାଙ୍କ ମାନସିକତାଠାରୁ ବହୁ କ୍ଷେତ୍ରରେ ଗୁଣଗତ ଭାବେ ଉନ୍ନତ ଥିଲେ । ଓଡ଼ିଶାରେ ତଥାକଥିତ ସ୍ୱଦେଶୀରାଜ ଚଳାଇଥିବା ମରହଟ୍ଟା ଶାସକଗଣ ହିନ୍ଦୁ ବଂଶୋଦ୍ଭବ ହୋଇ ମଧ ବର୍ଗୀ ଅତ୍ୟାଚାର ମାଧମରେ ଶୋଷଣ ଓ ପୀଡ଼ନର ଶେଷ ସୋପାନରେ ପହଞ୍ଚି ଯାଇଥିଲେ । ହିନ୍ଦୁ ହୋଇ ମଧ ଧନରତ୍ନ ଅପହରଣ କରିବା ଉଦ୍ଦେଶ୍ୟରେ ସେମାନେ ଜଗନ୍ନାଥ ମନ୍ଦିରକୁ ଲୁଟ୍ କରିଥିଲେ ବାରମ୍ବାର । ତେଣୁ ବ୍ରିଟିଶ୍ ଫଉଜମାନେ ଯେତେବେଳେ ପୁରୀ ଦଖଲ ପାଇଁ ଗଞ୍ଜାମ ଆଡୁ ଆସି ବଡ଼ଦାଣ୍ଡରେ ପାଦ ଦେଲେ ସେତେବେଳେ ସେମାନଙ୍କୁ ବିରୋଧ କରିବା ପରିବର୍ତ୍ତେ ପଣ୍ଡାମାନେ ଫୁଲହାର ପିନ୍ଧାଇ ସ୍ୱାଗତ କରିଥିଲେ । ସେମାନେ ମରହଟ୍ଟାମାନଙ୍କ ଲୋମ ହର୍ଷଣକାରୀ ଅତ୍ୟାଚାରରୁ ତ୍ରାହି ପାଇବା ପାଇଁ ଏପରି କରିଥିଲେ । ବ୍ରିଟିଶ୍ ସୈନ୍ୟମାନଙ୍କଠାରୁ ସେମାନେ ବଡ଼ ଠାକୁରଙ୍କର ସୁରକ୍ଷା ଓ ସ୍ୱାଧିକାରର ଗ୍ୟାରେଣ୍ଟି ଚାହିଁଥିଲେ । ଐତିହାସିକ W.W Hunter ଲେଖିଛନ୍ତି - "But instead of an opposing army, our general found only a deputation of venerable white- robbed Brahmin, who begged that their temple, the religious key to the province might be placed under the protection of the British." (The English as settlers and governors of Orissa, Hunter p. 224)

ମରହଟ୍ଟାମାନଙ୍କ ଅହୋରାତ୍ର ଅତ୍ୟାଚାର ଯେଉଁ ସମାଜ ଉପରେ ଚାଲିଥିଲା, ସେ ସମାଜ ଥିଲା ଅତି କୁସଂସ୍କାରଗ୍ରସ୍ତ, ଜାତିଆଣ ପ୍ରଥା, ଛୁଆଁ ଛୁତି, ଅନ୍ଧ-ବିଶ୍ୱାସର ଅନ୍ଧକୂପରେ ପତିତ ଓ ଜଡ଼ସଡ଼ । ଗାଁ ଗହଳିରେ ଜାତିଭିତ୍ତିକ ଅତ୍ୟାଚାର ପହଞ୍ଚିଥିଲା ଚରମ ସୀମାରେ । ନୀଚ ଜାତିର ଲୋକେ କ୍ରୀତଦାସ ପ୍ରଥାର ଶିକାର ଥିଲେ । କ୍ରୀତଦାସ, ବେଠି ପ୍ରଥା, ପୋଇଲି ପ୍ରଥାରେ ଉଭୟ ନାରୀ ଓ ପୁରୁଷ ସମାଜ କୁକ୍ଷୀଗତ ହୋଇ ପଡ଼ିଥିଲା । ନିଜେ ହଣ୍ଟର, ଷ୍ଟାରଲିଂ ଓ ବୀମ୍ସ ଦେଖିଛନ୍ତି, ଶହ ଶହ କ୍ରୀତଦାସ, ବେଠିଆ ବା ପୋଇଲିଙ୍କୁ ଅଧିକାର କରିବା ସୂତ୍ରରେ ହାତପାଦ ବାନ୍ଧି ଭୂସ୍ୱାମୀମାନେ ସ୍ଥାନାନ୍ତରକୁ ନେଇ ଯିବାର ଦୃଶ୍ୟ, ବୀମସ୍ ସାହେବ ଦେଖିଛନ୍ତି ଘରଦ୍ୱାର ସର୍ବ

ସମ୍ପତ୍ତି ବିକି ସେଇ ଅର୍ଥରେ କନ୍ୟା କିଣି ପୁରୁଷମାନେ ବିବାହ କରିବାର ଘଟଣା । ତତ୍‌କାଳୀନ ସମାଜରେ ଯଦି ଜ୍ଞାନ, ମାନବିକତାବୋଧ, ହୃଦୟବତ୍ତା ବିଷୟରେ ଚର୍ଚ୍ଚା ହେଉଥିଲା, ତାହା ହେଉଥିଲା ଅତି ଉଚ୍ଚ ବର୍ଗ ଲୋକଙ୍କ ବିଳାସ କକ୍ଷରେ - ଯେଉଁଠି କ୍ଷୁଧିତଙ୍କୁ ଦୟା ଦେଖାଇବା ଥିଲା ଏକ ସାମନ୍ତବାଦୀ ବିଳାସ । ସାଧାରଣ ମଣିଷଙ୍କୁ ତାହାର ମାନବିକ ଅଧିକାରରୁ ବଞ୍ଚିତ କଲାବେଳେ କାହା ପାଟିରୁ 'ଆହା' ଶବ୍ଦଟିଏ ବାହାରୁ ନଥିଲା । ବରଂ ଦଳିତ ଉପରେ ଅତ୍ୟାଚାର କରିବା ସେ କାଳର ଏକତ୍ରକାର ବୀରତ୍ୱ ଓ ପୁରୁଷତ୍ୱର ପରିଚାୟକ ଥିଲା ।

ମୋଗଲ ଓ ପଠାଣଙ୍କ ଓଡ଼ିଶାକୁ ପଦଦଳିତ କରି ରଖିବାର ଏକ ମଧ୍ୟଯୁଗୀୟ ବର୍ବର ଅତ୍ୟାଚାରୀ ଶାସନ ବ୍ୟବସ୍ଥା ମଧ୍ୟରେ ମରହଟ୍ଟା ଶାସନ ଚାଲିଥିଲା । ଏ ଆର୍ଥନୀତିକ ତଥା ରାଜନୀତିକ ବ୍ୟବସ୍ଥା ତଳେ ରହି ଓଡ଼ିଶା ତାର ଏକମାତ୍ର ସ୍ୱାଭିମାନ ଦରିଆପାରିର ବେପାର ବଣିଜର ସଂସ୍କୃତି ଓ ପରମ୍ପରାକୁ ହରାଇ ବସିଲା । କପିଳେନ୍ଦ୍ର ଦେବ, ଲାଙ୍ଗୁଳା ନରସିଂହ ବା ପ୍ରତାପରୁଦ୍ର ଦେବଙ୍କ ସମୟର ଓଡ଼ିଶାର ଅର୍ଥନୀତିରେ ଆସିଥିବା ସମୃଦ୍ଧି ମରହଟ୍ଟା ଶାସନ କଷାଘାତରେ ଧୂଳିସାତ୍ ହୋଇଥିଲା । ଆମର ଗୋରାପ, ଡିଙ୍ଗି ଓ ବୋଇତ ଆଦିରେ ଯନ୍ତ୍ର ଖଞ୍ଜା ହେବା ଦୂରେ ଥାଉ, ତାହା ସେଇ ପାଲଟଣା ବା ଅଝାଲଟଣା ଯୁଗରେ ଅଟକି ରହିବାର ବାତାବରଣ ଚାଲୁ ରହିଲା । ମୋଗଲ ଓ ମରହଟ୍ଟାର କ୍ରମାଗତ ଅତ୍ୟାଚାର ଯେ ଏ ରାଜ୍ୟର ବୁଦ୍ଧିଜୀବୀଙ୍କୁ ଘଡ଼ିଏ ଜ୍ଞାନ ବିଜ୍ଞାନ ନିମନ୍ତେ ଚିନ୍ତା କରିବାର ଅବକାଶ ଯୋଗାଇ ଦେଇନଥିଲା - ଏ ସ୍ଥବିରତା ଏହାର ପ୍ରମାଣ । ସାତ ଦରିଆ ପାରିରୁ ଯନ୍ତ୍ରଚାଳିତ ଜାହାଜ ବଙ୍ଗୋପସାଗର ଭିତରକୁ ଆସିବା ବେଳକୁ ଆମ ଦେଶୀ ବୋଇତ ସେମାନଙ୍କ ଦିଗ୍‌ବିଜୟକୁ ରୋକି ପାରିଥାନ୍ତେ ବା କେମନ୍ତ ! ବ୍ରିଟିଶ୍ ଜାତିର ନୂଆ ଯନ୍ତ୍ରାୟିତ ଓ ନୂଆ ଶାସନକୁ ସ୍ୱାଗତ କରି ମଧ୍ୟଯୁଗୀୟ ଅନ୍ଧାରରେ ଘାଣ୍ଟି ହେଉଥିବା ଓଡ଼ିଆ ସମାଜ ସତେ ଅବା ନିଜ ପରିତ୍ରାଣର ମାର୍ଗ ସନ୍ଧାନ କରି ପାରିଥଲା !

ମରହଟ୍ଟା ଶାସନ ଆମ କପିଳେନ୍ଦ୍ର ଦେବଙ୍କ ପ୍ରଚଳିତ ଓଡ଼ିଶା ଶାସନର ଜମିଜମା ଜରିବୀକରଣ ଓ ବନ୍ଦୋବସ୍ତୀକରଣ ପରମ୍ପରାକୁ ଭାଙ୍ଗି ଦେଇ ଆମ ଭୂମି ସର୍ବସ୍ୱ ଅର୍ଥନୀତି ବା କୃଷି ଅର୍ଥନୀତିକୁ ତଳି ତଳାନ୍ତ କରି ଦେଇଥିଲା । ଜମିଜମାର ବ୍ୟକ୍ତିଗତ ମାଲିକାନା ଲୋପ କରି ଏହା ସରବରାକର ବା ସର୍ଦ୍ଦାରମାନଙ୍କ ହାତରେ ଠୁଳ କରାଇଥିଲା ଓ କର ଆଦାୟର ଅସ୍ତ୍ର ରୂପେ ବ୍ୟବହାର କରୁଥିଲା । ଲୋକମାନେ ଚଷୁଥିବା ଜମି ଯେ ତାଙ୍କର ବା ତାଙ୍କ ଭରଣ ପୋଷଣରେ ସେ ଗୁଡ଼ିକ କିଛି ସହାୟତା କରି ପାରିବ ଏଇ ଆଶା ମନକୁ ତେଜି ଦେଇଥିଲେ । ବ୍ରିଟିଶ ଦଖଲ କରିବାର ପ୍ରାଥମିକ ଦିନ ଗୁଡ଼ିକରେ ଓଡ଼ିଶାର ଜମିଜମା ସଂକ୍ରାନ୍ତରେ ସେଠା ଅଧିବାସୀଙ୍କ ମନୋବସ୍ଥା କିପରି ଥିଲା ତାହା ଐତିହାସିକ ହଣ୍ଟରଙ୍କ ବର୍ଣ୍ଣନାରୁ ଅନୁଧାନ କରାଯାଉ । ସେ ଲେଖିଛନ୍ତି - But with the end of the conquest our real troubles began. We had got the land, but we could find no proprietors to engage for its rental, and no peasantry to till its soil. In vain, we issued soothing

proclamations; the people had been so long accustomed to despair, that they did not dare to hope. Practically during the first year any one might till the land, who pleased, and our final proclamation had to elaborately provide for the non appearance of the Proprietors, and for the desertion of many hundreds of villages. The truth is that at the time we took the province, land had ceased to have any value in Orissa, further than the worth of the crop which might at the moment be actually standing on it". (ପୃ.୨୨୭-ତତ୍ରୈବ)

ଆଜି ଆମେ ଯେଉଁ ଭୂରାଜସ୍ୱ ବ୍ୟବସ୍ଥା, ମାଲିକାନା ସତ୍ତ୍ୱ, ଭୂମି ବନ୍ଧକ ହସ୍ତାନ୍ତରୀକରଣ ବ୍ୟବସ୍ଥା ଦେଖୁଛୁ, ତାହା ଆମକୁ ଇଂରେଜ ରାଜତ୍ୱର ଦାନ। ନିଜ ରାଷ୍ଟ୍ରର ଫ୍ୟୁଡାଲ ଭୂମି ବ୍ୟବସ୍ଥା ଢାଞ୍ଚାରେ ଏହାକୁ ବ୍ରିଟିଶ୍ ରାଜତ୍ୱ ଗଢ଼ିଥିଲା। ମରହଟ୍ଟାଶାସନରେ ଜମିଜମା ବଣ୍ଟନ, ମାଲିକାନା ପ୍ରଦାନ ବ୍ୟବସ୍ଥା ଯେତେବେଳେ କୌଣସି ପ୍ରକାର ବିଧିସମ୍ମତ ରୂପ ପରିଗ୍ରହ ପାରି ପାରିନଥିଲା, କେବଳ ଲୁଟ୍‌ତରାଜ୍, ମାଡ଼ପିଟି କରି କର ଆଦାୟ କରିବା ଶାସନର ଅଭ୍ୟାସ ଥିଲା; ସେତେବେଳେ ବ୍ରିଟିଶ୍ ବଣିକମାନେ ଏ ରାଜ୍ୟକୁ ଆସିଥିଲେ। ସେମାନେ ଜମିଜମା ବଣ୍ଟନ, ମାଲିକାନା ସତ୍ତ୍ୱ ପ୍ରଦାନ ଓ ଖଜଣା ଧାର୍ଯ୍ୟ କ୍ଷେତ୍ରରେ ତେଣୁ ଆମକୁ ଦେଇଥିଲେ ଏକ ଆଗୁଆ ତଥା ଉନ୍ନତ ବ୍ୟବସ୍ଥା। ଏବଂ କହିବାର ଦ୍ୱିଧା ନାହିଁ, ଏସବୁ ଭଲ ବ୍ୟବସ୍ଥା ଓ ଧାରାକୁ ବାଲେଶ୍ୱର ଭୂଖଣ୍ଡର ଲୋକେ ବିନା ଦ୍ୱିଧାରେ ଗ୍ରହଣ କରିଥିଲେ। ଏହାର ଏକମାତ୍ର କାରଣ ସେମାନେ ସହନଶୀଳ, ଗ୍ରହଣଶୀଳ ଓ ବିଚାରବନ୍ତ ଥିଲେ। ବ୍ରିଟିଶ୍ ଶାସନକୁ ବାଲେଶ୍ୱରବାସୀ ସହଜରେ ଗ୍ରହଣ କରି ନେବାକୁ ଜନ୍ ବୀମସ୍ ପ୍ରଶଂସା କରିବା ମୂଳରେ ତାଙ୍କ ବ୍ୟକ୍ତିତ୍ୱର ଚିହ୍ନରାପଣିଆ ହିଁ ବିଶେଷ ଭୂମିକା ଗ୍ରହଣ କରିଥିଲା। ଯେଉଁ ବ୍ରିଟିଶ ଶାସନକୁ ମରହଟ୍ଟା ଶାସନ ଅପେକ୍ଷା ବିଶେଷ ପ୍ରଗତିଶୀଳ ବୋଲି ବାଲେଶ୍ୱରବାସୀ ସ୍ୱୀକାର କରିଥିଲେ ଓ ଗ୍ରହଣ କରିଥିଲେ, ସେହି ଶାସନ କାଳକ୍ରମେ ଅତ୍ୟାଚାରୀ ଓ ଜନବିରୋଧୀ ଚରିତ୍ର ଗ୍ରହଣ କଲାକ୍ଷଣି ସେଇ ବାଲେଶ୍ୱରବାସୀ ତା' ବିରୁଦ୍ଧରେ ଖୋଲି ଥିଲେ ପ୍ରତିବାଦର ବଜ୍ର କଣ୍ଠ।

(ଜନ୍ ବୀମସ୍ ଥିଲେ ଫକୀର ମୋହନଙ୍କ ସମସାମୟିକ। ବୀମସ୍ ଥିଲେ ବାଲେଶ୍ୱର ଜିଲ୍ଲାର କଲେକ୍ଟର ଓ ପ୍ରଶାସନ ମୁଖ୍ୟ। ସେ ଜଣେ ଭାଷାବିତ୍ ଥିଲେ ଓ ଓଡ଼ିଆ ଏବଂ ବଙ୍ଗଳା ଭାଷାର ତୁଳନାତ୍ମକ ବ୍ୟାକରଣ ରଚନା କରିଥିଲେ। ଫକୀରମୋହନଙ୍କ ସହିତ ଏହି ମହାନ୍ ମାନବ ଦରଦୀ ଶାସକଙ୍କ ବନ୍ଧୁତ୍ୱ ହୁଏ। ନୀଳଗିରି ସମେତ ବିଭିନ୍ନ କରଦ ରାଜ୍ୟରେ ଦେବାନୀ କାର୍ଯ୍ୟ କରିବା ପାଇଁ ସେ ଫକୀରମୋହନଙ୍କ ନାମ ସୁପାରିଶ କରିଥିଲେ। ସେ ବିପଦ ଆପଦରେ ଫକୀରମୋହନଙ୍କୁ ବିବିଧ ପ୍ରସଙ୍ଗରେ ସହାୟତା କରିଥିବାରୁ କୃତଜ୍ଞତା ସ୍ୱରୂପ ଫକୀରମୋହନ ତାଙ୍କୁ 'ମୋର ଜୀଅନ୍ତା ଭଗବାନ' ବୋଲି କହିଥିଲେ। ଏହି ନୋଟ୍‌ଟି RDC ଙ୍କ ସହ ହେବାକୁଥିବା ବୈଠକରେ ପେଶ୍ କରିବା ପାଇଁ ବୀମ୍‌ସ୍ ଲେଖିଥିଲେ)

# ସିପାହୀ ବିଦ୍ରୋହ ସମ୍ପର୍କରେ ମାର୍କସ୍‌ଙ୍କ ମୂଲ୍ୟାୟନ

୧୮୫୭ ମସିହା ସିପାହୀ ବିଦ୍ରୋହରେ ଲମ୍ଫ ଦେବା ପୂର୍ବରୁ ନିଜ ସାଥୀ ଓ ସମର୍ଥକଙ୍କୁ ଆହ୍ୱାନ ଦେଇ ଝାନ୍‌ସୀର ରାଣୀ ଲକ୍ଷ୍ମୀବାଈ କହିଥିଲେ, "ଆମ ଜୀବନ କାଳରେ ଥରେ ମାତ୍ର ନ୍ୟାୟସଙ୍ଗତ କଥାରେ ବିପ୍ଲବ କରିବାର ସୁଯୋଗ ଆମ ଭାଗ୍ୟରେ ଜୁଟିଅଛି। ଏଥିପାଇଁ ରାଜ୍ୟ ତମାମ୍ ଉଦ୍‌ଯୋଗ ପର୍ବ ଆରମ୍ଭ ହୋଇଯାଇଛି। ଆପଣ ଦେଖୁଛନ୍ତି କିପରି ଆମର ବୀର ମା' ଭଉଣୀମାନେ ଅସ୍ତ୍ରଶସ୍ତ୍ର ଚାଳନାରେ ତାଲିମ୍ ନେଇ ଝାନ୍‌ସୀରେ ଆସି ସମବେତ ହେଲେଣି - ଆଉ କେତେକ ମଧ୍ୟ ଯାନବାହନ ଚାଳନା ଓ ସେଥିରେ ବ୍ୟାଟେରୀ ଖଞ୍ଜିବାର ଦକ୍ଷତା ଅର୍ଜିଆର୍ କଲେଣି। ସାଥୀଗଣ, ଆମେ ଆଜି ଦ୍ୱାର ପାଖରେ ଡାକୁଥିବା ସୁଯୋଗକୁ କେବେହେଲେ ନିଜ ହାତରେ ଲେଉଟାଇ ଦେବା ନାହିଁ- ଯାହା କଲେ ମାଟିରେ ପୋତି ହୋଇଯିବ ଆମର ଆଜାଦ୍ ସାହୀ।" ଭାରତର ଏହା ଥିଲା ପ୍ରଥମ ସ୍ୱାଧୀନତା ସଂଗ୍ରାମର ଉଦ୍‌ବୋଧନୀ ବାକ୍ୟ। ଏ ସଂଗ୍ରାମ ଆରମ୍ଭ ହୋଇଥିଲା ମିରଟ୍‌ଠାରେ ନାନା ସାହେବଙ୍କ ନେତୃତ୍ୱରେ ୧୮୫୭ ମସିହା ମେ' ମାସ ୧୦ ତାରିଖରେ। ମିରଟ୍‌ଠାରୁ ବିଦ୍ରୋହୀ ସିପାହୀମାନଙ୍କୁ ସାଙ୍ଗରେ ନେଇ ୮୩ କିଲୋମିଟର ଦୂରସ୍ଥ ଦିଲ୍ଲୀ ଦଖଲ କରିଥିଲେ ନାହାସାହେବ ମାତ୍ର ଦୁଇଦିନ ପରେ। ପୁଣି ୧୮୫୯ ମସିହା ଏପ୍ରିଲ ମାସ ୧୫ ତାରିଖରେ ସଂଗ୍ରାମୀ ତାନ୍ତିଆ ଟୋପିଙ୍କ ଫାଶୀରେ ଏ ସଂଗ୍ରାମର ଅବସାନ ହୋଇଥିଲା।

ସିପାହୀ ବିଦ୍ରୋହ ନଥିଲା ଏକ ଚମକପ୍ରଦ ଆକସ୍ମିକ ଘଟଣା। ଏହା ଥିଲା ଭାରତରେ କ୍ରମାଗତ ଭାବେ ଲାଗି ରହିଥିବା ବ୍ରିଟିଶ୍ ବିରୋଧୀ ଅଶାନ୍ତି ଓ ବିଦ୍ରୋହର ଏକ ଚୂଡ଼ାନ୍ତ ଉଦ୍‌ଗୀରଣ। ଏ ଘଟଣା ପୂର୍ବର ଇତିହାସକୁ ଅନୁଧ୍ୟାନ କଲେ ଦେଖୁଁ, ଦେଶ ତମାମ୍ ଅନେକ ଛୋଟବଡ଼ ଗଣବିଦ୍ରୋହ ଓ ଅଭ୍ୟୁତ୍‌ଥାନ ସଂଘଟିତ ହୋଇଛି। ୧୭୬୪ ମସିହାରେ କଲିକତାରେ ସିପାହୀଙ୍କ ଏକ ବିଦ୍ରୋହ ହୋଇଥିଲା ଯେଉଁଥିରେ ୩୦ ଜଣ ସିପାହୀଙ୍କୁ ତୋପଦ୍ୱାରା କର୍ତ୍ତୃପକ୍ଷ ଉଡ଼ାଇଦେଲେ। ୧୮୦୬ ମସିହାରେ ଭେଲୋର୍ କ୍ୟାଣ୍ଟନ୍‌ମେଣ୍ଟ୍‌ରେ ପୁଣି ମୁଣ୍ଡ ଟେକିଲା ଏକ ବିଦ୍ରୋହ ଯାହାକୁ ସଶସ୍ତ୍ର ବଳ ପ୍ରୟୋଗ ମାଧ୍ୟମରେ ଦମନ କରାଯାଇଥିଲା। ୧୮୧୭-୧୮୩୦ ଯାଏ ଓଡ଼ିଶାର ପାଇକମାନଙ୍କର ବିଦ୍ରୋହ ଖୋର୍ଦ୍ଧା ଅଞ୍ଚଳରେ ଏକ ଗଣ ଅଭ୍ୟୁତ୍‌ଥାନର ରୂପ ନେଇଥିଲା। ପାଇକ ଓ ସମ୍ବଲପୁର ବୀର ସୁରେନ୍ଦ୍ରସାଏଙ୍କ ସଂଗ୍ରାମ (ଯାହା ୧୮୫୭ ପରେ ମଧ୍ୟ ଚାଲୁ ରହିଥିଲା) ଭିତରେ ଯୋଦ୍ଧାମାନେ ଗରିଲା ସଂଗ୍ରାମର କୌଶଳ ପ୍ରୟୋଗ କରିଥିଲେ। ୧୮୫୫-୫୬ ମସିହାରେ ବଙ୍ଗଳା ଓ ବିହାର ସାନ୍ତାଳମାନେ ବ୍ରିଟିଶ୍‌ର ମନମୁଖୀ ଟ୍ୟାକ୍‌ସ ଆଦାୟ ଓ ନିର୍ମମ

ଶୋଷଣର ପ୍ରତିବାଦ କରି ଟାଙ୍ଗିଆ ଓ ଧନୁଶର ଧରି ସଂଗ୍ରାମର ମଇଦାନକୁ ଓହ୍ଲାଇଥିଲେ ଓ ମାତ୍ର କେତୋଟି ମାସପାଇଁ ହେଲେ ବି ସମଗ୍ର ଛୋଟନାଗପୁର ମାଳଭୂମିରୁ ବ୍ରିଟିଶ୍ ରାଜତ୍ୱର ସମାପନ କରିଥିଲେ। ୧୮୫୭ ମସିହା ମାର୍ଚ୍ଚ ୨୯ ତାରିଖରେ ପଶ୍ଚିମବଙ୍ଗର ବାରାକ୍‌ପୁରରେ ଘୁଷୁରୀ ଓ ଗୋଚର୍ବିମଖା କ୍ୟାଟ୍ରିଜ୍ ବ୍ୟବହାରର ପ୍ରତିବାଦ କରି ସିପାହୀ ମଙ୍ଗଳ ପାଣ୍ଡେ ତାଙ୍କ କମାଣ୍ଡିଂ ଅଫିସରଙ୍କୁ ପ୍ୟାରେଡ୍ ମଇଦାନରେ ଗୁଳି କରିଥିଲେ। ଏହା ଥିଲା ସିପାହୀ ବିଦ୍ରୋହର ଶୁଭାରମ୍ଭର ଏକ ସୂଚନା- ଏକ ପ୍ରତୀକାତ୍ମକ ଶଙ୍ଖନାଦ।

ଭାରତର ଏହି ବୈପ୍ଳବିକ ଘଟଣା ପ୍ରବାହକୁ ଏ ଦେଶରୁ ଦୂରରେ ଲଣ୍ଡନରେ ବସି ଅନୁଧ୍ୟାନ କରୁଥିଲେ ସେ ସମୟର ବିଶିଷ୍ଟ ସମାଜତତ୍ତ୍ୱବିଦ୍ କାର୍ଲ ମାର୍କସ୍। ଏ ବିଷୟରେ ପାଶ୍ଚାତ୍ୟ ଜଗତକୁ ଅବଗତ କରିବା ପାଇଁ ସେ ନ୍ୟୁୟର୍କରେ ଦୈନିକ ଟ୍ରିବ୍ୟୁନ୍‌ରେ ନିତ୍ୟ ନୈମିତ୍ତିକ ଏଇ ଘଟଣା ପ୍ରବାହର ତର୍ଜମା କରୁଥିଲେ। ୧୮୫୩ ମସିହାରେ ଇଷ୍ଟଇଣ୍ଡିଆ କମ୍ପାନୀ ସହ ଚୁକ୍ତିପତ୍ରର ସର୍ତ୍ତାବଳୀରେ କିଛି ପରିବର୍ତ୍ତନ ଆଣିବାର ଚିନ୍ତା କରୁଥିଲା ବ୍ରିଟିଶ୍ ପାର୍ଲାମେଣ୍ଟ, ତାହାର ଗତି ପ୍ରକୃତିକୁ ମାର୍କସ୍ ମଧ୍ୟ ଅଧ୍ୟୟନ କରୁଥିଲେ। ମିଲିଟାରୀ ଶକ୍ତି ବଳରେ ଭାରତରେ ନିଜ ନିଜ ମଧ୍ୟରେ ପ୍ରବଳ ବାଦାନୁବାଦରେ ମାତିଥିବା ଛୋଟ ବଡ଼ ଅଞ୍ଚଳରେ ଶାସକଗଣଙ୍କୁ କମ୍ପାନୀ କିପରି ପଦାନତ କରି ରଖିଥିଲା ତାହା ମଧ୍ୟ ମାର୍କସଙ୍କ ବିଶ୍ଳେଷଣରେ ସ୍ଥାନ ପାଇଥିଲା। ମୋଗଲ ଶାସନକୁ ବିଭିନ୍ନ କୌଶଳରେ ଜବଦ୍ କରି ରଖିବାରେ ଇଷ୍ଟ ଇଣ୍ଡିଆ କମ୍ପାନୀ ସଫଳ ହୋଇଥିଲା।

ବ୍ରିଟିଶ୍ ଶାସକ ଭାରତକୁ କବଳିତ କରି ରଖିବା ନିମନ୍ତେ ସେ ଦେଶର ଦାୟିତ୍ୱହୀନ ଅମଲାତନ୍ତ୍ରକୁ ହାତବାରିସି କରିଛି ବୋଲି ମାର୍କସ୍ ତାଙ୍କ ରିପୋର୍ଟିଂରେ ଅଭିଯୋଗ କରିଥିଲେ। ଭେନିସ୍‌ର ଶାସନ ବ୍ୟବସ୍ଥାକୁ ବ୍ରିଟିଶ୍ ପ୍ରଶାସନର ଦକ୍ଷ ଅଫିସରଗଣ ସମ୍ଭାଳୁଥିବା ପରି ଭାରତର ଶାସନ କ୍ଷେତ୍ରରେ ସେପରି ଦକ୍ଷ ଅଫିସର ନିଯୁକ୍ତି ହୋଇ ନାହାନ୍ତି ବୋଲି ସେ ଲେଖିଥିଲେ। ବରଂ ଚରିତ୍ରହୀନ, ଲମ୍ପଟ, ଦୁର୍ନୀତିଗ୍ରସ୍ତ, ଠକଶ୍ରେଣୀୟ କେତେକ ଅଫିସର ଭାରତର ଦାୟିତ୍ୱରେ ଅଛନ୍ତି। ଭାରତରୁ ସଂଗୃହୀତ କରରୁ ମାତ୍ର ୨.୭୫ ଶତକଡ଼ା ଦେଶର ଉନ୍ନୟନ ପାଇଁ ବ୍ୟୟିତ ହେଉଛି।

ବ୍ରିଟିଶ୍ ଜାତିର ପୁଞ୍ଜିବାଦୀ ଅର୍ଥନୀତିକୁ ମାତ୍ର ୧୦୦ ବର୍ଷ ବୟସ ହୋଇଥାଏ ସିପାହୀ ବିଦ୍ରୋହ ବେଳକୁ। ଅର୍ଥର ଏକତ୍ରୀକରଣରେ ଯେଉଁ ପୁଞ୍ଜିର ସଂବୃଦ୍ଧି ଘଟିଥାଏ ସେହି ପ୍ରକ୍ରିୟା ନେପୋଲିୟନ୍‌ଙ୍କ ପରାଜୟ ବେଳକୁ ଇଂଲଣ୍ଡରେ ଶେଷ ହୋଇଯାଇଥାଏ। ଅଷ୍ଟାଦଶ ଶତାବ୍ଦୀରେ ପ୍ରାଚ୍ୟ ସହିତ ବ୍ୟବସାୟ ବାଣିଜ୍ୟରୁ ଏହି ଅମାପ ପୁଞ୍ଜି ସଂଗୃହୀତ ବୋଲି ଅନେକ ଧାରଣା କରିଥାଇ ପାରନ୍ତି ! ମାତ୍ର ଏହା ଭାରତକୁ ଅନ୍ୟାୟ ଶୋଷଣ ଓ ଆଖିବୁଜା ଲୁଟ୍ ଫଳରେ ସମ୍ଭବ ହୋଇଛି ବୋଲି ମାର୍କସ୍ ମତ ଦିଅନ୍ତି। ୧୮୧୩ରେ ଇଷ୍ଟ ଇଣ୍ଡିଆ କମ୍ପାନୀର ଏକଚାଟିଆ ଶୋଷଣର ଅନ୍ତ ହୁଏ- କାରଣ ଏହି ବର୍ଷ ଭାରତରେ ବ୍ୟବସାୟ କରିବା ପାଇଁ ଅନ୍ୟ କେତେକ ଇଂରେଜ ଶିଳ୍ପପତି ବୁର୍ଜୁଆ ପାର୍ଲାମେଣ୍ଟ ଠାରୁ ଅନୁମତି ପାଆନ୍ତି। ଦୁଇ ପ୍ରକାର ରାସ୍ତାରେ ଏ କମ୍ପାନୀ ଗୁଡ଼ିକର ଶୋଷଣ ଆହୁରି ତୀବ୍ର ଆକାର ଧାରଣ କରେ। ଏମାନେ ନିଜସ୍ୱ ଉତ୍ପାଦିତ ଦ୍ରବ୍ୟ (ବସ୍ତ୍ର, ଲୁଣ, ବାସନକୁସନ,

ଯନ୍ତ୍ରପାତି, ପୋଷାକପତ୍ର, ଖାଦ୍ୟ ପଦାର୍ଥ ଆଦି) ଆଣି ଭାରତରେ ବିକ୍ରି କରନ୍ତି ଓ ଭାରତରୁ ଫୋପାଡ଼ିଲା ଦରରେ ତୁଳା, ଲୌହପିଣ୍ଡ, ମସଲା, ଚା', କାଠ ଆଦି କିଣି ନିଜ ଦେଶରେ ଚଢ଼ା ଦରରେ ବିକ୍ରି କରି ପ୍ରଚୁର ମୁନାଫା ଲୋଟନ୍ତି। ୧୮୫୦ ମସିହାରେ କେବଳ ବ୍ରିଟିଶ୍ କମ୍ପାନୀଙ୍କ ରପ୍ତାନୀ ଦ୍ରବ୍ୟର ସର୍ବମୋଟ ମୂଲ୍ୟ ଥିଲା ୧୮ କୋଟି ୨୪ ହଜାର ପାଉଣ୍ଡ। ମାର୍କେଣ୍ଟାଇଲ୍ କ୍ୟାପିଟାଲିଷ୍ଟଙ୍କ ଏ ଶୋଷଣ ବ୍ୟତୀତ ଇଷ୍ଟ ଇଣ୍ଡିଆ କମ୍ପାନୀର ଗତାନୁଗତିକ ଶୋଷଣ ପରିମାଣ ଅକଳନୀୟ ଥିଲା। ଏହା ବ୍ୟତୀତ ଭାରତରୁ ଟିକସ୍ ସୂତ୍ରରେ କମ୍ପାନୀ ୫ କୋଟି ୨୨ ଲକ୍ଷ ପାଉଣ୍ଡ ପାଉଥିଲା।

ଟ୍ରିବ୍ୟୁନ୍‌ର ପୃଷ୍ଠାରେ ୧୮୫୩ ମସିହା ଜୁଲାଇ ୧୯ ତାରିଖରେ ମାର୍କସ୍ ଏକ ପ୍ରବନ୍ଧ ଲେଖି ଭାରତରେ ବ୍ରିଟିଶ୍ ଶାସନ ଚଳାଇଥିବା ଜମିଦାରୀ ଓ ରୟତୱାରୀ ବ୍ୟବସ୍ଥାକୁ ସମାଲୋଚନା କରିଥିଲେ। ସାଧାରଣ ଜନଗଣଙ୍କୁ ଲୁଟ୍ କରିବା ପାଇଁ ଏ ବ୍ୟବସ୍ଥା ବ୍ରିଟିଶ୍ ଶାସନ ଚଳାଇଛି ବୋଲି ସେଥିରେ ସେ ଉଲ୍ଲେଖ କରିଥିଲେ। ଜମିର ପ୍ରକୃତ ମାଲିକ ଓ ଜମିର ପ୍ରକୃତ ଚାଷୀଙ୍କ ସ୍ୱାର୍ଥ ଏ ବ୍ୟବସ୍ଥାରେ ସଂରକ୍ଷିତ ହୋଇପାରୁନି। ଜମିଦାରୀ ବ୍ୟବସ୍ଥା ସରକାର ଓ ଜମିର ପ୍ରକୃତ ଚାଷୀ ମଧ୍ୟରେ ମଧ୍ୟସ୍ଥ ଭଳି କାମ କରୁଛି। ବଙ୍ଗଳାରେ ଜମିଦାରୀ ବ୍ୟବସ୍ଥା ପ୍ରଚଳନ ହେବାପରେ ସେଠାରେ ପ୍ରକୃତ ଚାଷୀର ଜମି ଉପରେ ଥିବା ଶହ ଶହ ବର୍ଷର ଅଧିକାର ଲୋପ୍ ପାଇଲା। ଇଂଲଣ୍ଡର ସାମନ୍ତବାଦ ବ୍ୟବସ୍ଥା ଛାଞ୍ଚରେ ଭାରତୀୟ ଜମିଦାରୀ ବ୍ୟବସ୍ଥାକୁ ଗଢ଼ି ମୂଳ ବ୍ୟବସ୍ଥାକୁ ଏ ଦେଶରେ ବ୍ୟଙ୍ଗ କରାଯାଇଛି ମାତ୍ର। ସେହିପରି ଫରାସୀ ସାଧାରଣ ଭାଗଚାଷୀ ବ୍ୟବସ୍ଥା ଢ଼ାଞ୍ଚାରେ ଭାରତର ରୟତୱାରୀ ବ୍ୟବସ୍ଥାର ପ୍ରଚଳନ କରାଯାଇଛି। ଭାରତରେ ସମୁଦାୟ ଜନଗଣର ୧୨ ଭାଗରୁ ୧୧ ଭାଗ କୃଷକ। ଜମିଦାରୀ ଓ ରୟତୱାରୀ ବ୍ୟବସ୍ଥା ପ୍ରଚଳନ ଫଳରେ ଭାରତର କୃଷକକୁଳ କର ଦେଇ କାଙ୍ଗାଳ ହୋଇଯିବେ ବୋଲି ମାର୍କସ୍ ଲେଖିଲେ।

ପାଶ୍ଚାତ୍ୟର କେତେକ ତଥାକଥିତ ପଣ୍ଡିତ ବ୍ରିଟେନ୍‌ର ଭାରତ ଦଖଲକୁ ଏକ ମଙ୍ଗଳକର ବ୍ୟାପାର ବୋଲି ପ୍ରଚାର କରୁଥିଲେ। ଏତଦ୍ୱାରା ଭାରତର ଉଭୟ ଆର୍ଥିକ ଓ ଆତ୍ମିକ ପ୍ରଗତି ସମାହିତ ହେବ ବୋଲି ସେମାନେ ମତ ଦେଉଥିଲେ। ମାର୍କସ୍ ଏହି ମତବାଦକୁ ଖଣ୍ଡନ କରି ଲେଖିଲେ– ଭାରତରେ ବ୍ରିଟେନ୍‌ର ସୈନ୍ୟ ବାହିନୀ ରଚନା କରିଚାଲିଛି ନିତି ନିତି ରଣ ତାଣ୍ଡବ। ହତ୍ୟା, ଲୁଣ୍ଠନ, ରାହାଜାନୀ, ଧର୍ଷଣ, ଶଠତାରେ ଭାରତର ଆତ୍ମା ଉତ୍ପୀଡ଼ିତ। ପୁଣି ସେଠାରୁ ଆସୁଛି ମଝେ ମଝେ ବିଦ୍ରୋହର ସୁସମାଚାର। ତେଣୁ କେଉଁବାଟେ ବ୍ରିଟେନ୍ ଭାରତର ଉପକାର କଲା ? ଭାରତରେ ଗଢ଼ି ଉଠିଥିବା ଶାସନ ଓ ଚଳଣିର ଢ଼ାଞ୍ଚାକୁ ଇଂରେଜମାନେ ବରଂ ସମ୍ପୂର୍ଣ୍ଣଭାବେ ଭାଙ୍ଗି ମାଟିରେ ମିଶାଇ ଦେଇଛନ୍ତି। ଧ୍ୱଂସସ୍ତୂପ ଉପରେ ନନ୍ଦନ ରଚନାର ଘୋଷଣା ସେମାନେ ବାରମ୍ବାର କରିଚାଲିଛନ୍ତି। କିନ୍ତୁ କାମରେ କିଛି କରି ଦେଖାଇନାହାନ୍ତି। ଭାରତ ତାହାର ପ୍ରାଚୀନ ସଭ୍ୟତା ଓ ଐତିହ୍ୟକୁ ହରାଇ ଏବେ ମ୍ରିୟମାଣ ହୋଇପଡ଼ିଛି।

ଇଂରେଜମାନଙ୍କ ଦଖଲ ପୂର୍ବରୁ ଭାରତର ମାନବ ସମ୍ବଳ ନିୟୋଜିତ ହେଉଥିଲା କୁଟୀର ଶିଳ୍ପରେ, ବିବିଧ ବସ୍ତ୍ର ତିଆରିରେ ବା ବିବିଧ ଔଷଧପତ୍ର, ଗୃହର ବ୍ୟବହାର ଉପଯୋଗୀ ସାମଗ୍ରୀ ନିର୍ମାଣରେ। ଇଂରେଜ ତାହାର ନିଜ ଦେଶର ବସ୍ତ୍ର ଓ ଅନ୍ୟାନ୍ୟ ସୌଖୀନ ଶିଳ୍ପଜାତ ଦ୍ରବ୍ୟ ଆଣି ଭାରତର ବଜାରରେ ବିକ୍ରୟ କଲା। ହିନ୍ଦୁ ବୁଣାକାରଗଣ, ସୁତା କଟାଳୀ, ଗୃହ ଉପକରଣ ନିର୍ମାତାଗଣ ହାତ ବନ୍ଦ କରି ବସିଲେ ଓ ଲକ୍ଷ ଲକ୍ଷ ଲୋକ ବେକାର ହେଲେ। ବ୍ରିଟେନ୍ ଏହିପରି ଭାରତର ଆତ୍ମନିର୍ଭରଶୀଳ ଓ ସ୍ୱୟଂସମ୍ପୂର୍ଣ୍ଣ ଅର୍ଥନୀତିକୁ ଧ୍ୱଂସ କରିଦେଲା। ସିପାହୀ ବିଦ୍ରୋହ ଏଇ ଅପକର୍ମର ଏକ ସୁସଂଗଠିତ ପ୍ରତିବାଦ– ଏସିଆର ସାଧାରଣ ଜନଗଣଙ୍କ ସାମ୍ରାଜ୍ୟବାଦ ବିରୁଦ୍ଧରେ ଏକ ବଜ୍ରନାଦ।

ନିୟୁର୍କ ଟ୍ରିବ୍ୟୁନ୍‌ରେ ୧୮୫୨ ଏପ୍ରିଲ ୨୦ ତାରିଖ ସଂଖ୍ୟାରେ "ବ୍ରିଟେନ୍‌ର ଭାରତ ଦଖଲର ଭବିଷ୍ୟତ ପରିଣାମ" ଶୀର୍ଷକ ଆଲୋଚନାରେ ମାର୍କସ୍ ଲେଖିଲେ – ଭାରତରେ ରେଳପଥ ବିଛାଇ ବ୍ରିଟେନ୍‌ବାସୀଗଣ ସେ ଦେଶ ଲୋକଙ୍କ ମହା ଉପକାର କରିଛନ୍ତି ବୋଲି ବିଶ୍ୱରେ ସର୍ବତ୍ର ପ୍ରଚାର କରୁଛନ୍ତି। ଏହା କିନ୍ତୁ ସତ୍ୟର ଅପଳାପ। ଇଂଲଣ୍ଡର କେତେକ ଧନୀ କମ୍ପାନୀ ବା ବ୍ରିଟିଶ୍ ବୁର୍ଜୁଆଙ୍କ ଏଥିରେ ମୁନାଫା ସୃଷ୍ଟି କରି ଲୁଟିବାର ପ୍ରବୃତ୍ତି ବାସ୍ତବରେ ଚରିତାର୍ଥ ହୋଇଛି। ଭାରତକୁ ଲୁଣ୍ଠନଯୋଗ୍ୟ ଭୂଖଣ୍ଡଟିଏ କରିବାକୁ ସେମାନେ ଏସବୁ କାଣ୍ଡକାରଖାନା ସେଠି କରିଛନ୍ତି। ଦେଶର ଆଭ୍ୟନ୍ତରୀଣ ଅଗମ୍ୟ ଅଞ୍ଚଳର କଞ୍ଚାମାଲ ବନ୍ଦର ପାଖକୁ ରେଳ ପରିବହନ ବିନା କିପରି ଆସିବ ? ନଦୀର ଜଳପଥର ଉନ୍ନୟନ ସେମାନେ ଚାଷୀଙ୍କ ଜଳସେଚନ ନିମିତ୍ତ କଦାପି କରିନାହାନ୍ତି – ତାହା ଦେଶର ଆଭ୍ୟନ୍ତରୀଣ ଜଳପଥକୁ ସୁଗମ କରି ମାଲ ପରିବହନ କରିବା ପାଇଁ ସେମାନେ କରିଛନ୍ତି। ବିଦ୍ରୋହ ସମୟରେ ସୈନ୍ୟଚାଳନା କରିବାରେ ଏସବୁ ଗମନାଗମନ ମାର୍ଗ ନିୟୋଜିତ ହେଉଛି।

ବ୍ରିଟେନ୍ ପୁଞ୍ଜିପତିମାନଙ୍କର ଏସବୁ ଅପକର୍ମ ଭାରତୀୟଙ୍କୁ ଅର୍ଥନୈତିକ କ୍ରୀତଦାସତ୍ୱରୁ ମୁକ୍ତ କରିବ ନାହିଁ କି ତାଙ୍କ ସାମାଜିକ ଅବସ୍ଥାରେ ଆଖିଦୃଶିଆ ପରିବର୍ତ୍ତନ ଆଣିବ ନାହିଁ। ଇଂରଜମାନଙ୍କ ଏସବୁ ଉନ୍ନୟନମୂଳକ ପ୍ରକଳ୍ପରୁ ସେମାନେ ପଇସାଟିଏ ଅର୍ଜନ କରିବେ ନାହିଁ କି ଜୀବନ ଧାରଣର ମାନ ବଢ଼ାଇବାପାଇଁ ପଇସାଟିଏ ଖର୍ଚ୍ଚର ସୁବିଧା ପାଇବେ ନାହିଁ। ଭାରତରେ ଶିଳ୍ପ ନିର୍ମାଣ ଓ କଳକାରଖାନାର ଶ୍ରମିକ ଶ୍ରେଣୀ ତିଆରି କରିବାକୁ ବ୍ରିଟେନ୍‌ର ବୁର୍ଜୁଆମାନେ ସତରେ କ'ଣ ଇଚ୍ଛା କରନ୍ତି ? ଯେତେଦିନ ଯାଏ ବ୍ରିଟେନ୍‌ର ଶାସକର ଆସନରେ ସେଠାକାର ଶ୍ରମିକ ପ୍ରତିନିଧି ନ ବସିଛି, ସେତେଦିନ ଯାଏ ଭାରତର କୃଷକ ଓ ଶ୍ରମିକର ହିତ ବିଷୟରେ ଚିନ୍ତା କରିବାକୁ ସରକାରଟେ ସମ୍ଭବିଛି କେଉଁଠି ? କିମ୍ବା ହିନ୍ଦୁମାନେ ବିଦ୍ରୋହରେ ଯଦି ମାତି ଉଠି ଭାରତର ଶାସନ ଶୃଙ୍ଖଳ ଭାଙ୍ଗି ଦିଅନ୍ତି ହୁଏତ ଆମର ସ୍ୱପ୍ନ ସାର୍ଥକ ହୋଇପାରେ।

ମାର୍କସ୍‌ଙ୍କ ଏହି ଭବିଷ୍ୟତ ବାଣୀ ପାଞ୍ଚ ବର୍ଷ ପରେ ସତ୍ୟ ହେଲା। ଭାରତର ଜନସାଧାରଣ ବିଦ୍ରୋହୀ ସିପାହୀଙ୍କ ସହ ହାତ ମିଳାଇ ବ୍ରିଟିଶ୍‌ର ପରାଧୀନତାର ଜୁଆଳୀ ଫିଙ୍ଗି ଦେବାକୁ ବିପ୍ଳବ କଲେ। ଭାରତରେ ବଣ ନିଆଁ ପରି ଏ ବିଦ୍ରୋହ ଅଞ୍ଚଳରୁ ଅଞ୍ଚଳକୁ ମାଡ଼ିଗଲା। ଉଭୟ ମାର୍କସ୍ ଓ

ଏଙ୍ଗେଲସ୍ ଏଇ ବଜ୍ର ନିନାଦର ପ୍ରତ୍ୟୁତ୍ତର ଦେଲେ ଲଣ୍ଡନରୁ। ସେମାନେ ଭାରତୀୟ ଲୋକଙ୍କ ବିଦ୍ରୋହର ଯଥାର୍ଥତା ଲଣ୍ଡନରେ ରହି ଉପଲବ୍ଧି କଲେ। ୧୮୫୭ ଓ ୧୮୫୮ରେ ଉଭୟ ସମାଜତତ୍ତ୍ୱବିଦ୍ ଏଇ ବିଷୟରେ ତେଣୁ ନ୍ୟୁୟର୍କର ଡେଲି ଟ୍ରିବ୍ୟୁନ୍‌କୁ ଅନେକ ଲେଖା ଦେଲେ ଓ ତାହା ପ୍ରକାଶିତ ହୋଇ ଦିଗେ ଦିଗେ ପ୍ରତିକ୍ରିୟା ସୃଷ୍ଟିକଲା। ୧୮୫୭ ମସିହା ଜୁଲାଇ ୩୦ ତାରିଖର ଲେଖାରେ ସେମାନେ ବ୍ରିଟିଶ୍‌ଙ୍କ ବହୁକଥିତ 'ସିପାହୀ ବିଦ୍ରୋହ' ଶବ୍ଦ ଦିଓଟି ସହ ସହମତ ହୋଇ ପାରିନଥିଲେ। ଔପନିବେଶିକ ଶାସନ ଅତ୍ୟାଚରିତ ଭାରତୀୟ ମହାଜାତିର ଏହା ଏକ ଜାତୀୟତାବାଦୀ ସଂଗ୍ରାମ ବୋଲି ସେ ଜୋର୍ ଦେଇ କହିଲେ।

ତତ୍କାଳୀନ ବ୍ରିଟିଶ୍ ପ୍ରଧାନମନ୍ତ୍ରୀ ଏହାକୁ ଏକ ଷଡ଼ଯନ୍ତ୍ରମୂଳକ ଗଣ୍ଡଗୋଳ ବୋଲି ଲଣ୍ଡନର ସଂସଦରେ ୧୮୫୭ର ଜୁଲାଇ ୩୧ ତାରିଖ ଭାଷଣରେ କହିଲେ। ଏହା ଯେତେ ଜୋର୍‌ରେ ମଥା ଟେକିଛି ସେତେ ଶୀଘ୍ର ମଉଳିଯିବ ବୋଲି ସେ କହିଲେ। ମାର୍କସ୍ ତାଙ୍କ ପତ୍ରାଚାରରେ ଏହା ମଉଳି ଯିବା ପାଇଁ ମୁଣ୍ଡ ଟେକିନାହିଁ, ଏହା ଦିଗେ ଦିଗେ ପରିବ୍ୟାପ୍ତ ହେବା ପାଇଁ ସୃଷ୍ଟି ହୋଇଛି ବୋଲି ଲେଖିଲେ। ଯେଉଁ ସିପାହୀଙ୍କୁ ଇଂରେଜ ନିଜ ସାମ୍ରାଜ୍ୟର ରକ୍ଷଣାବେକ୍ଷଣ ପାଇଁ ନିଯୁକ୍ତି ଦେଇଛନ୍ତି, ଯେଉଁମାନଙ୍କ ଚାକିରୀରେ ପ୍ରମୋଶନ୍ କେବଳ ସୁବେଦାର୍ ଯାଏ ହେବ ବୋଲି ତାଙ୍କ ନିୟତିରେ ଲିଖିତ - ସେଇମାନେ ଏକଜୁଟ୍ ହୋଇ ସାମ୍ରାଜ୍ୟର ମୂଳଚେରରେ ହାଣିଛନ୍ତି ନିଷ୍ଠୁର ଆଘାତ। ଏହି ବିଦ୍ରୋହ ଅଚିରେ ଜନଗଣଙ୍କ ମଧ୍ୟକୁ ସେମାନେ ବହନ କରି ନେଇ ଯାଇଛନ୍ତି। ବଙ୍ଗଳାର ବ୍ୟାରାକ୍‌ମାନଙ୍କରେ ଲାଗିଥିବା ଅଗ୍ନ୍ୟୁତ୍ସବ ଏହାର ଜ୍ୱଳନ୍ତ ପ୍ରମାଣ। ଅଯୋଧ୍ୟା, ଉତ୍ତରାଞ୍ଚଳ, ରାଜସ୍ଥାନ ଏପରିକି ଉତ୍ତର ପଶ୍ଚିମ ସୀମାନ୍ତ ପ୍ରଦେଶ ଯାଏ ଏ ବିଦ୍ରୋହ ବିଛାଡ଼ି ପଡ଼ିଛି। ୧୮୫୭ ମସିହା ସେପ୍ଟେମ୍ବର ୨୪ ତାରିଖର ପତ୍ରରେ ଏଙ୍ଗେଲସ୍ ମାର୍କସ୍‌ଙ୍କୁ ଜଣାଇଛନ୍ତି ଯେ, ଅତି ଦୁର୍ଭାଗ୍ୟଜନକ ବିଷୟ ଏହି ଯେ, ମାଡ୍ରାସ୍ ଓ ବମ୍ବେର ସିପାହୀଗଣ ଏ ବିଦ୍ରୋହର ବହ୍ନିକୁ ସ୍ୱାଗତ କରିନାହାଁନ୍ତି - ଏତେ ପର୍ଯ୍ୟନ୍ତ। ସେମାନେ ଲମ୍ଫ ଦେଲେ ଏହା କାଶ୍ମୀରଠୁଁ କନ୍ୟାକୁମାରୀ ଯାଏ ପରିବ୍ୟାପ୍ତ ହୋଇଯାନ୍ତା।

୧୮୫୭ ଅକ୍ଟୋବର ୨୬ରେ ଲିଖିତ ସମୀକ୍ଷାରେ ମାର୍କସ୍ ଏହି ବିପ୍ଳବର ଅସଲ ଉପଲବ୍ଧିଗୁଡ଼ିକୁ ଉଲ୍ଲେଖ କରିଛନ୍ତି। ହିନ୍ଦୁ ଓ ମୁସଲମାନମାନଙ୍କ ଏକତା ବିଦ୍ରୋହର ଅନ୍ୟତମ ଶକ୍ତିର ଉତ୍ସ। ବାହାଦୁର ଶାହ ଜାଫର (ଦ୍ୱିତୀୟ)ଙ୍କୁ ଦିଲ୍ଲୀ ସିଂହାସନରେ ବସାଇ ବିଦ୍ରୋହୀମାନେ ବିଖଣ୍ଡିତ ମୋଗଲ ସାମ୍ରାଜ୍ୟର ଐକ୍ୟ ଗଢ଼ି ତୋଳିଛନ୍ତି। ବିପ୍ଳବ ପରେ ହୁଏତ ଏହି ଏକୀଭୂତ ଭାରତ ଭୂଖଣ୍ଡର ସୁଶାସନ ପାଇଁ ରାଜତନ୍ତ୍ର ଭିନ୍ନ ଅନ୍ୟ କୌଣସି ଅନୁଷ୍ଠାନ ଗଢ଼ିବାର ମତଲବ୍ ବିଦ୍ରୋହୀଙ୍କ ମନରେ ଥାଇପାରେ। ଏହାର ପରବର୍ତ୍ତୀ ସମ୍ବାଦ ସମୀକ୍ଷାରେ ମାର୍କସ୍ ଅଯୋଧ୍ୟା ନବାବ୍‌ଙ୍କ ସିଂହାସନ ଓ ଭୂସମ୍ପଦ ବାଜ୍ୟାପ୍ତି ବିଷୟରେ ଚର୍ଚ୍ଚାକରିଛନ୍ତି। ଲର୍ଡ଼ କ୍ୟାନିଂ ଏଇ ବାଜ୍ୟାପ୍ତି ଯୋଗୁଁ ଉପଲବ୍ଧ ଜମିଜମାକୁ କୃଷକ ଓ ରୟତଙ୍କ ମଧ୍ୟରେ ବାଣ୍ଟିଦେବେ ବୋଲି ଯାହା କହିଛନ୍ତି ତାହା ଏକ ରାଜନୈତିକ ଚାଲବାଜି ବୋଲି ମାର୍କସ୍ ଦର୍ଶାଇଛନ୍ତି। ଅଯୋଧ୍ୟାର ଅସନ୍ତୁଷ୍ଟ ପ୍ରଜାଙ୍କ

ସଂଗ୍ରାମର ବାର୍ତ୍ତା ଖୁବ୍ ଶୀଘ୍ର ଉତ୍ତର ଭାରତର ବିଭିନ୍ନ ରାଜ୍ୟରେ ପହଞ୍ଚି ଯାଇଛି - ଯେତେ ଶୀଘ୍ର ନ ପହଞ୍ଚିଛି କ୍ୟାନିଂଙ୍କ ଏ ବିଷୟରେ ସଫେଇ। ଭାରତର ରାଜା ମହାରାଜାଙ୍କ ଜମିକୁ ସରକାର କବଳିତ କରି ବା ତାହାର ମାଲିକ ସାଜି ସେଥିରୁ ଟିକସ୍‌ର ମୁନାଫା ଲୋଟିବା ପାଇଁ ଲର୍ଡ଼ କ୍ୟାନିଂଙ୍କ ଏହି ଗଦ୍ୟମୟ ଚାଲ୍‌ବାଜି ବୋଲି ମାର୍କସ୍ ଏ ସମୀକ୍ଷାରେ ଦର୍ଶାଇଛନ୍ତି।

ମାର୍କସ୍ ସିପାହୀ ବିଦ୍ରୋହର ଦମନ ନାମରେ ଭାରତରେ ବ୍ରିଟିଶ୍ ଚଳାଇଥିବା ସନ୍ତ୍ରାସକୁ ତାହାର ଅର୍ଥନୈତିକ ଶୋଷଣର ଏକ ସିଂହଦ୍ୱାର ବୋଲି କହିଥିଲେ। ସେ ଲେଖିଥିଲେ - "This torture formed an organic institution of her financial policy." ଅତ୍ୟାଚାର କାଳରେ ଇଂରେଜୀ ସୈନ୍ୟମାନେ ଜନଗଣଙ୍କୁ ତାଙ୍କର ଦୈହିକ ତାକତ୍ ଓ ବନ୍ଧୁକ ଚାଳନାର କୌଶଳ ପ୍ରଦର୍ଶନ କରି ସେମାନଙ୍କ ମନରେ ଭୀତି ସଞ୍ଚାର କରନ୍ତି। ବ୍ରିଟିଶ୍ ଅତ୍ୟାଚାରକୁ ମାର୍କସ୍ - "the unparalleled brutality" ବୋଲି ଲେଖି ସେମାନେ ଗଣତନ୍ତ୍ରର ଭକ୍ତବୋଲି ଯେଉଁ ଦାବି କରନ୍ତି, ତାହା ଭାଣ୍ଡାମି ବୋଲି ସେ କହିଲେ। ବ୍ରିଟିଶ୍ ସୈନ୍ୟବାହିନୀ ଭାରତଗସ୍ତ କାଳରେ କେବଳ ତିନୋଟି ଶବ୍ଦକୁ କାର୍ଯ୍ୟରେ ରୂପାନ୍ତରିତ କରିଥିଲେ। ସେ ତିନୋଟି ଶବ୍ଦ ହେଲା- ଲୁଟ୍‌ପାଟ୍, ହିଂସା ଓ ଗଣହତ୍ୟା।

୧୮୫୮ ଜାନୁଆରୀ ୨୦ ତାରିଖର "ସମ୍ବାଦ ସମୀକ୍ଷା"ରେ ଲଣ୍ଡନରୁ ଭାରତର ବିଦ୍ରୋହ ଦମନ ପାଇଁ ନିମନ୍ତ୍ରିତ ହୋଇ ଆସିଥିବା ଇଂରେଜ ସୈନ୍ୟ ବାହିନୀକୁ ମାର୍କ୍ସ, ତୈମୁର ଓ ଚେଙ୍ଗିଜ୍ ଖାନ୍‌ଙ୍କ ସନ୍ତ୍ରାସବାଦୀ ସୈନ୍ୟବାହିନୀ ସହିତ ତୁଳନା କରିଥିଲେ। ଏମାନେ ନା ଥିଲେ ଅଭିଜାତ, ନା ଥିଲେ ଆଇନ୍‌ର ରକ୍ଷକ, ନା ଥିଲେ ବ୍ରିଟିଶ୍ ଜାତିର ସଦ୍‌ଗୁଣାବଳୀର ଧାରକ। ଏମାନେ ଥିଲେ ହିଂସ୍ର, ନିର୍ମମ, ବର୍ବର ଓ ହୀନ।

ଏହି ଗଣବିପ୍ଳବର ପରାଜୟର ନିମ୍ନଲିଖିତ କାରଣମାନ ମାର୍କସ୍ ୧୮୫୮ ମସିହା ଫେବୃଆରୀ ୨୪ ତାରିଖର ସମୀକ୍ଷାରେ ଉଲ୍ଲେଖ କରିଥିଲେ।

୧. ବିପ୍ଳବରେ ଜନଗଣଙ୍କ ସହିତ ଯେଉଁ ସାମନ୍ତବାଦୀମାନେ ଯୋଗ ଦେଇଥିଲେ, ସେମାନେ ଇଂରେଜମାନଙ୍କ ବିଭିନ୍ନ ପ୍ରଲୋଭନରେ ପ୍ରଲୋଭିତ ହୋଇ ସଂଗ୍ରାମରୁ ଦୂରେଇଗଲେ।

୨. ସିପାହୀମାନଙ୍କୁ ସୁପରିଚାଳନା କରିବା ପାଇଁ କେନ୍ଦ୍ରୀୟ ନେତୃତ୍ୱ ବିପ୍ଳବ ତମାମ୍ ଗଠିତ ହୋଇପାରି ନଥିଲା। ପୁଣି କେତୋଟି ବାହିନୀର ଦଳପତିଙ୍କ ସୈନ୍ୟର ଚାଳନାର ଆବଶ୍ୟକୀୟ ଜ୍ଞାନ ନଥିଲା।

୩. ଇଂରେଜମାନଙ୍କୁ ଅଚାନକ ଆକ୍ରମଣ କରି ଅଫେନ୍‌ସିଭ୍ ମାଡ଼ ମାରିବାର ଅନେକ ସୁଯୋଗ ସିପାହୀମାନେ ବହୁବାର ହାତଛଡ଼ା କରିଥିଲେ।

୪. ଉତ୍ତର ଭାରତରେ ପତନ ପରେ ଆତ୍ମରକ୍ଷା କରି ପଳାଇଥିବା ନେତାଗଣ ବମ୍ବେ ଓ ମାନ୍ଦ୍ରାଜ ଅଞ୍ଚଳରେ ବ୍ୟାରାକ୍ ଗୁଡ଼ିକ ସହ ଯୋଗାଯୋଗ ପ୍ରତିଷ୍ଠା କରିପାରିଥାନ୍ତେ । ଫଳତଃ ବିଦ୍ରୋହ ଅନ୍ୟ ଅଞ୍ଚଳରେ ବ୍ୟାପି ପାରିଥାନ୍ତା ।

ବିଦ୍ରୋହ ମ୍ଳାନ ହୋଇଯିବାର ଅନ୍ୟତମ ଶ୍ରେଷ୍ଠ କାରଣ ହେଲା - ବିଦ୍ରୋହୀଙ୍କ ଦୂରଦୃଷ୍ଟିର ଅଭାବ । ଇଂରେଜ ସରକାରକୁ ଉତ୍ପାଟନ କରିବା ପରେ ଦେଶରେ କି ପ୍ରକାର ସରକାର ପ୍ରତିଷ୍ଠିତ ହେବ - ସେ ବିଷୟରେ କାହାର ହେଲେ ସ୍ୱଷ୍ଟ ଧାରଣା ନଥିଲା । ବିଦ୍ରୋହୀମାନେ ଅଧିକନ୍ତୁ ପରସ୍ପର ପ୍ରତି ଈର୍ଷାନ୍ୱିତ ଓ ସନ୍ଦେହାକୁଳ ହୋଇ ପଡ଼ିଥିଲେ । ବିପ୍ଳବୀ କୃଷକମାନେ ଗାଁଗଣ୍ଡାରେ କୁମୁଟିମାନଙ୍କର ଘର ପୋଡ଼ିଦେଲେ, ବନ୍ଧକ ଜମିଜମାର ରେକର୍ଡ଼ ପୋଡ଼ିଦେଲେ, ଗାଁର ଜମିଦାର କୋଠଜମି ସବୁ ଦଖଲ କରିଗଲେ । ତା'ପରେ ସେମାନଙ୍କ ଆଗରେ କର୍ତ୍ତବ୍ୟ କ'ଣ ସେମାନେ ଜାଣି ପାରିଲେ ନାହିଁ। ତାଙ୍କୁ ସଠିକ୍ ମାର୍ଗ ବତେଇବା ପାଇଁ କେହି ନଥିଲେ ।

ସ୍ଥାନେ ସ୍ଥାନେ ବିଦ୍ରୋହୀମାନେ ଅବଶ୍ୟ ଯୌଥ ନେତୃତ୍ୱ ମଣ୍ଡଳୀ ଗଠନ କରି ଶାସନ ଚଳାଇବାରେ କୃତକାର୍ଯ୍ୟ ହୋଇଥିଲେ । ଉଦାହରଣ ସ୍ୱରୂପ ବିଦ୍ରୋହୀମାନେ ଦିଲ୍ଲୀରେ "ଶାସକର ଦରବାର" ନାମକ ଯୌଥ ନେତୃମଣ୍ଡଳୀ ଗଠନ କରିଥିଲେ-ଯେଉଁଥିରେ ଛ'ଜଣ ସୈନିକ ଓ ଚାରିଜଣ ସର୍ବସାଧାରଣଙ୍କ ପ୍ରତିନିଧି ସଦସ୍ୟ ଥିଲେ ।

ଏ ବିଦ୍ରୋହ ଆଗରୁ ଲୋକଙ୍କ ମନରେ ଗୋଟିଏ ଦେଶ - ଗୋଟିଏ ମାଟିର ଧାରଣା ସୃଷ୍ଟି ହୋଇନଥିଲା । ପ୍ରଥମେ ଏ ବିଦ୍ରୋହ ଲୋକଙ୍କ ମନରେ ଭାରତୀୟତାର ଦେଶପ୍ରେମୀ ଭାବନା ସୃଷ୍ଟିକଲା ।

**ଲେଖକଙ୍କ ନିଜସ୍ୱ ଟିପ୍ପଣୀ :**

ସିପାହୀ ବିଦ୍ରୋହ ଗୋଟିଏ ଉପନିବେଶବାଦୀ ଶକ୍ତିଠାରୁ କ୍ଷମତା ଅବସାନ କରାଇ ତାହାର ମିତ୍ର ଜାତୀୟବାଦୀ ଶକ୍ତିକୁ କ୍ଷମତାସୀନ କରିପାରି ନଥିଲା - ଯାହା ୧୯୪୨ ମସିହାର ଅଗଷ୍ଟ ବିପ୍ଳବ ପାରିଥିଲା । ୧୯୪୨ର ଭାରତଛାଡ଼ ଆନ୍ଦୋଳନ ପରେ କ୍ଷମତା ହସ୍ତାନ୍ତରୀକରଣ କିନ୍ତୁ ହିଂସା ପ୍ରୟୋଗ ମାଧ୍ୟମରେ ହୋଇନଥିଲା । ଏହା ଶାନ୍ତିର ମାର୍ଗରେ ହୋଇଥିଲା । ଶାନ୍ତି, ଅହିଂସା ସତ୍ୟାଗ୍ରହର ବାନା ଧରି ଯେଉଁମାନେ ଅଗଷ୍ଟ ବିପ୍ଳବ କରିଥିଲେ, ସେମାନଙ୍କୁ ଇଂରେଜ ସରକାର ତାଙ୍କର ପରମ ମିତ୍ରରୂପେ ବିବେଚନା କରିଥିଲେ । ଶାନ୍ତିପୂର୍ଣ୍ଣ ଉପାୟରେ କଳା ଶାସକଙ୍କୁ କ୍ଷମତା ହସ୍ତାନ୍ତର କରି ପାରିଲେ ଭାରତ ଛାଡ଼ି ପଳାଇ ଯାଉଥିବା ବ୍ରିଟିଶ୍ ଜାତିର ଦୁଇ ପ୍ରକାର ଉପକାର ହୋଇପାରିବ ବୋଲି ଅଟ୍‌ଲୀ ଭାବୁଥିଲେ ।

୧. ଭାରତ ରାଜ୍ୟଗୋଷ୍ଠୀ ନ ଛାଡ଼ି ତହିଁରେ ଏକ ନମ୍ବର ଡ଼ୋମିନିୟନ୍ ରୂପେ ବେଶ୍ କିଛି ଦଶନ୍ଧି ରହିଯିବ ।

୨. ତଥାକଥିତ ସ୍ୱାଧୀନ ଭାରତରେ ଇଂରେଜ ଜାତିର ମଲଟିନ୍ୟାସନାଲ୍ କମ୍ପାନୀଗୁଡ଼ିକର ବ୍ୟବସାୟିକ ସ୍ୱାର୍ଥ ଚିରକାଳ ପାଇଁ ଅବ୍ୟାହତ ରହିବ।

ତେଣୁ ଇଂରେଜଙ୍କ ସହିତ ଉତ୍ତମ ବୁଝାମଣା କରି କ୍ଷମତା ହାତେଇବା ଲୋଭରେ କଂଗ୍ରେସର ନେତାଗଣ ସ୍ୱାଧୀନତା ହାସଲ ନିମନ୍ତେ ପ୍ରକୃତରେ ଲଢୁଥିବା ଭାରତୀୟ କମ୍ୟୁନିଷ୍ଟମାନଙ୍କୁ 'ଦେଶଦ୍ରୋହୀ' ବୋଲି ଆକ୍ଷେପ କଲେ। କ୍ଷମତା ଲାଭର ନିଶାରେ ମଜଗୁଲ୍ ଥିବା କଂଗ୍ରେସ ବ୍ରିଟିଶ୍ ସରକାରର ପଦଲେହୀ ମନୋବୃତ୍ତିକୁ ପଦାରେ ପକାଇ ସେ ସମୟର ବିଶିଷ୍ଟ ସାମ୍ବାଦିକ ସୁନୀତି କୁମାର ଘୋଷ ଲେଖିଥିଲେ - ୧୯୪୬ ମସିହା ନଭେମ୍ବର ମାସରେ ମିରଟ୍‌ଠାରେ ଅନୁଷ୍ଠିତ କଂଗ୍ରେସ ଅଧିବେଶନ (ଯାହାକି ଆଚାର୍ଯ୍ୟ କୃପାଳିନୀଙ୍କ ସଭାପତିତ୍ୱରେ ଅନୁଷ୍ଠିତ ହୋଇଥିଲା ଓ ନେହେରୁ ସେ ଅଧିବେଶନରେ ବିଶିଷ୍ଟ ବକ୍ତା ଥିଲେ)ରେ ସର୍ଦ୍ଦାର ମୋଟା ସିଂ ପଣ୍ଡିତ ନେହେରୁଙ୍କ ବିରୁଦ୍ଧରେ ଏକ ଅଭିଯୋଗ ଆଣିଥିଲେ। ଇଂରେଜମାନେ ପଣ୍ଡିତ ନେହେରୁ ଓ ତାଙ୍କ ସହଚରମାନଙ୍କୁ 'ରାଜନୀତିକ କାମଧେନୁ' ପରି କାମରେ ଲଗାଉଛନ୍ତି ବୋଲି ସେ ଅଭିଯୋଗ କଲେ। "ଜନଗଣ ଯେତେବେଳେ ଇଂରେଜମାନଙ୍କୁ ଆଘାତ କରିବାକୁ ମାଡ଼ି ଯାଉଛନ୍ତି, ଇଂରେଜମାନେ ଏଇ ପବିତ୍ର ରାଜନୀତିକ କାମଧେନୁଙ୍କ ପଛରେ ଲୁଚି ଯାଉଛନ୍ତି।" ପ୍ରକୃତରେ ଏଇ କାମଧେନୁମାନଙ୍କ ମନସ୍କାମନା ପୂର୍ଣ୍ଣ କରି ବ୍ରିଟିଶ୍ ଏମାନଙ୍କୁ କ୍ଷମତା ଅର୍ପଣ କରି ଭାରତରୁ ବିଦାୟ ନେଲେ।

କଂଗ୍ରେସ ଦେଖିଲା ଯେଉଁମାନେ ସଚ୍ଚା ସଂଗ୍ରାମୀ ଓ ପ୍ରାଣପାତ କରି ସ୍ୱାଧୀନତା ହାସଲ ନିମନ୍ତେ ଲଢୁଛନ୍ତି, ସେମାନଙ୍କୁ ଇଂରେଜୀ ଚାବୁକ୍ ଅଧିକ ଦରକାର। ଲଢୁଆ କର୍ମୀଗଣ ଚାବୁକ୍ ଖାଇବା ସତ୍ତ୍ୱେ ସଂଗ୍ରାମୀ ପଥରେ ଅଟଳ ରହିବାରୁ କଂଗ୍ରେସ ସେମାନଙ୍କ ସଂଗ୍ରାମୀ ଏକତାକୁ ନଷ୍ଟଭ୍ରଷ୍ଟ କରିବାକୁ ଲାଗିଲେ। ପ୍ରଥମେ ସୁସଂଗଠିତ ଏକକ ଶ୍ରମିକ ଟ୍ରେଡ଼୍ ୟୁନିୟନ୍ AITUC ଉପରେ ତାଙ୍କର ଶ୍ୟେନ ଦୃଷ୍ଟି ପଡ଼ିଲା। ୧୯୪୬ ଅଗଷ୍ଟ ମାସ ୧୨ ତାରିଖରେ କଂଗ୍ରେସ କାର୍ଯ୍ୟକାରୀଣୀରେ ହିନ୍ଦୁସ୍ଥାନ ମଜଦୁର୍ ସେବକ ସଂଘ ନାମକ ଅନ୍ୟ ଏକ ଶ୍ରମିକ ସଂଗଠନ ନିମନ୍ତେ ଖୋଦ୍ ନେହେରୁ ପ୍ରସ୍ତାବ ଆଗତ କଲେ ଓ ତାକୁ ପାଶ୍ କରାଇନେଲେ। ଅହମଦାବାଦ୍ ଟେକ୍ସଟାଇଲ୍ ମିଲ୍‌ର ମାଲିକମାନେ ନେହେରୁଙ୍କ ବିଶ୍ୱସ୍ତ ବନ୍ଧୁ ଥିଲେ। ତାଙ୍କରି ଦଲାଲ୍ ହିସାବରେ ଏ ଶ୍ରମିକ ସଂଗଠନ ଗାନ୍ଧିବାଦୀ ଧାରାରେ ସେ ଅଞ୍ଚଳରେ କାର୍ଯ୍ୟ ଆରମ୍ଭ କଲା। ଅନ୍ୟ ପକ୍ଷରେ ସୁସଂଗଠିତ ଶ୍ରମିକ ଗୋଷ୍ଠୀ ଯେତେବେଳେ ଇଂରେଜ ବିରୁଦ୍ଧରେ ଧର୍ମଘଟ, ହରତାଳର ଡାକରା ଦେଲେ ଏଇ ନବଗଠିତ ଟ୍ରେଡ଼୍ ୟୁନିୟନ୍ ମାଲିକ ଓ ଦେଶର ଶାସକର ଦଲାଲୀ କରି ସଂଗ୍ରାମରୁ ବିରତ ରହିଲା।

ତା'ପରେ ନେହେରୁଙ୍କ ଦୃଷ୍ଟି ପଡ଼ିଲା କଂଗ୍ରେସ ସଂଗଠନ ଭିତରେ ସଂଗଠିତ ହୋଇ ଲଢ଼େଇ କରୁଥିବା କମ୍ୟୁନିଷ୍ଟ ସଦସ୍ୟଙ୍କ ଉପରେ। ୧୯୪୫ ମସିହା ଡିସେମ୍ବର ୭ ତାରିଖରୁ ଅବଶ୍ୟ ନେହେରୁ ଏବଂ ତାଙ୍କ ବନ୍ଧୁଗଣ ଏ ଦିଗରେ କଲିକତା କାର୍ଯ୍ୟକାରିଣୀରେ ଆବଶ୍ୟକୀୟ ମସୁଧା କରିଥିଲେ। କମ୍ୟୁନିଷ୍ଟମାନେ ଇଂରେଜଙ୍କ ଦଲାଲୀ କରୁଥିବାର ଗୁରୁତର ଅଭିଯୋଗ ଆଣି

ସେମାନଙ୍କୁ କଂଗ୍ରେସର ମହାସ୍ରୋତରୁ ନିକାଲି ଦେବା ଓ ଏକଘରିଆ କରିଦେବା ନେହେରୁଙ୍କ ଯୋଜନା ଥିଲା। କାର୍ଯ୍ୟତଃ ନେହେରୁ ଇଂରେଜମାନଙ୍କ ସହ ଗୁପ୍ତ ପରାମର୍ଶ କରି ସେମାନଙ୍କ ବିରୁଦ୍ଧରେ, ମିଛିମିଛିକା ସଂଗ୍ରାମରେ ମାତିଥିଲେ - କିନ୍ତୁ ସଚ୍ଚା ବିଦ୍ରୋହୀମାନଙ୍କୁ ଦେଶଦ୍ରୋହୀର ଆଖ୍ୟା ଦେଲେ। ୧୯୪୫ ଓ ୪୬ରେ ଭାରତର ବିଭିନ୍ନ ଜେଲ୍‌ରେ କମ୍ୟୁନିଷ୍ଟ ସାଥୀ ଓ ସମର୍ଥକ ବହୁ ସଂଖ୍ୟାରେ ବନ୍ଦୀ ଥିଲେ। ସୋଭିଏତ୍ ୟୁନିୟନ୍ ଜର୍ମାନ୍ ଦ୍ୱାରା ଆକ୍ରାନ୍ତ ହୋଇଥିବା ୧୯୪୦ ମସିହା ପରେ ଆଦର୍ଶଗତ ଭାବେ ସୋଭିଏତ୍‌କୁ ସମର୍ଥନ ଦେବା ଓ ଜର୍ମାନୀ ବିରୁଦ୍ଧରେ ଜନମତ ସୃଷ୍ଟି କରିବା ଭାରତୀୟ କମ୍ୟୁନିଷ୍ଟଙ୍କ କର୍ମସୂଚୀର ଅଂଶବିଶେଷ ଥିଲା। ଏହାକୁ ଯଦି ଇଂରେଜମାନଙ୍କ ସମର୍ଥନ ବୋଲି ଧରାଯାଏ, ଯା'ଠାରୁ ରାଜନୀତିକ ଅପଳାପ ଆଉ କ'ଣ ଅଛି ? ପ୍ରସଙ୍ଗତଃ, ଉଲ୍ଲେଖଯୋଗ୍ୟ ଯେ, ଗାନ୍ଧି ଓ ରାଜଗୋପାଳଚାରୀ ୧୯୪୩-୪୪ କାଳରେ ଇଂରେଜମାନଙ୍କୁ ଯୁଦ୍ଧରେ ଭାରତୀୟମାନେ ସହାୟତା କରିବା ଦରକାର ବୋଲି ପ୍ରଚାର କରୁଥିଲେ। ଗାନ୍ଧୀଙ୍କ ପଟ୍ଟଶିଷ୍ୟ ଡି.ଜି.ତେନ୍ଦୁଲକର ଲେଖିଛନ୍ତି - ସେତେବେଳର ସାଧାରଣ ଜନଗଣଙ୍କ ହୃଦୟରେ ଇଂରେଜମାନଙ୍କ ପ୍ରତି ତୀବ୍ର ଘୃଣା ଥିବାର ଗାନ୍ଧୀ ଭଲକରି ଜାଣିଥିଲେ। ଏହି ଘୃଣାକୁ ପଥରୁଦ୍ଧ କରିବାକୁ ସେ ଆପ୍ରାଣ ଉଦ୍ୟମ କରିଥିଲେ। ୧୯୪୬ ଡିସେମ୍ବର ୪ ତାରିଖରେ ପଣ୍ଡିତ ନେହେରୁ ମଧ୍ୟ ଏଇ ମର୍ମରେ କହିଥିଲେ - There was a great urge among the masses of India for political progress. The Congress leaders had tried with some success to restrain that urge and keep it behind the government. (Aspects of India's economy- Research unit of Policitcal, Economy,Mumbai Pub. Vol.No. 43-P.53-54 ଦ୍ରଷ୍ଟବ୍ୟ) ଭାରତର ପ୍ରଥମ ସାଧୀନତା ସଂଗ୍ରାମ (୧୮୫୭)ର ଯୋଦ୍ଧାମାନଙ୍କର ମନୋବୃତ୍ତିର ଧାରକ ଯେ ନେହେରୁ ଓ ତାଙ୍କ କଂଗ୍ରେସ ନଥିଲେ - ଏଥିରୁ ପ୍ରତିଭାତ ହୁଏ। ସଲାସୁତୁରା କରି କୌଣସିମତେ ଦେଶର କ୍ଷମତାକୁ ହାତେଇ ନେବାକୁ ସେମାନେ ଚାହିଁଥିଲେ। ୧୮୫୭ର ରକ୍ତକ୍ଷୟୀ ସଂଗ୍ରାମ ଅନୁଶୀଳନ ସମିତି, ଚିଟ୍ଟାଗଙ୍ଗ୍ ବିପ୍ଳବ, ଭଗତ ସିଂଙ୍କ ବଳିଦାନ ଓ ନେତାଜୀଙ୍କ ସଂଗ୍ରାମ ଦେଇ ୧୯୪୬ର ନୌବିଦ୍ରୋହ ଯାଏ ପ୍ରବାହିତ ହୋଇ ୧୯୪୭ର ଅଗଷ୍ଟ ୧୫ ତାରିଖ ଧରିଥିଲା। ଏଇ ଜୀବନଦାନୀ ସଂଗ୍ରାମୀଙ୍କ ବିଜୟ ହେବା ପରିବର୍ତ୍ତେ ଚକ୍ରାନ୍ତକତା ଓ ଦଲାଲୀର ରାଜନୀତିକ ବିଜୟ ଦେଖି ବସ୍ତ ରହିଥିବା ଯୋଦ୍ଧାଗଣ ହତଚକିତ ହୋଇଛନ୍ତି। ଦେଶ ଓ ମାଟିର ମୁକ୍ତି ପାଇଁ ପ୍ରାଣପାତ କରିଥିବା ୧୮୫୭ର ମୁକ୍ତି ଯୋଦ୍ଧାମାନେ କ'ଣ ୧୯୪୭ରେ ଏଇ ପରିଣତି ଦେଖିବାର ଆଶା କରିଥିଲେ ? ଏଇଆ କ'ଣ ଥିଲା ତାଙ୍କ ରକ୍ତାକ୍ତ ସଂଗ୍ରାମର ଭବିତବ୍ୟ ?



# ତସଲିମାଙ୍କ ନିଜସ୍ୱ ସଂଳାପ

ବଙ୍ଗଳା ଦେଶର ଲେଖିକା ତସ୍‌ଲିମା ନସ୍‌ରିନ୍‌ଙ୍କ 'ଦ୍ୱିଖଣ୍ଡିତ' ପୁସ୍ତକ ତାଙ୍କର ଆତ୍ମଜୀବନୀ ପୁସ୍ତକ। ଅନେକ ସତ୍ୟାଳାପ ବିଶେଷତଃ ଅପ୍ରିୟ ସତ୍ୟାଳାପରେ ଏ ପୁସ୍ତକ ଗୁନ୍ଧିମନ୍ତ। ଆତ୍ମ ବିଶ୍ଳେଷଣ କଡ଼ିରେ ଏ ପୁସ୍ତକକୁ ଦେଖିଲେ ଏହା ଷଷ୍ଠୀବ୍ରତ ଚକ୍ରବର୍ତ୍ତୀଙ୍କ 'My God died Young' ବା ନିରୋଦ ଚୌଧୁରୀଙ୍କ 'Why I hate Indians' ବା କମଳା ଦାସଙ୍କ 'My Story' ଠାରୁ ଆହୁରି ତୀକ୍ଷ୍ଣ ଓ ମୁକ୍ତକଣ୍ଠ। ସମଗ୍ର ପୁସ୍ତକଟିରେ ଆମେ ଦେଖୁଁ ତସ୍‌ଲିମାଙ୍କ ବ୍ୟକ୍ତିଗତ ଜୀବନ ଓ ଆଦର୍ଶଗତ ଜୀବନ ଫେଣ୍ଟାଫେଣ୍ଟି ହୋଇ ପରିବେଶିତ ହୋଇଛି। ବ୍ୟକ୍ତିଗତ ଜୀବନରେ ସେ ଜଣେ ମୁକ୍ତ ନାରୀ - ବିଭିନ୍ନ ପରିସ୍ଥିତିରେ ଭିନ୍ନ ଭିନ୍ନ ପୁରୁଷ ସହିତ ସଙ୍ଗମ କରିବାରେ ସେ ସ୍ୱାଭାବିକ ଓ ସ୍ୱାଧୀନ। ନିଜ ଦେହର କ୍ଷୁଧାକୁ ମେଣ୍ଟାଇବାରେ ସେ କଦାପି ସଙ୍କୋଚ କରିନାହାନ୍ତି ବିଭିନ୍ନ ପରିବେଶରେ। ଏହା ବୋଲି ସେ ବାରନାରୀ ଭଳି ଶସ୍ତା ଓ ସୁଲଭରେ ପ୍ରାପ୍ୟ ହୋଇଯାଇ ନାହାନ୍ତି। ଯୌନଜୀବନ ବିଷୟରେ ନିଜ ଅନୁଭବକୁ ବ୍ୟାଖ୍ୟା କରିବାକୁ ଯାଇ ସେ 'ଅରଗାଜମ୍' ପ୍ରାପ୍ତିକୁ ନାରୀର ଶ୍ରେଷ୍ଠ ଧ୍ୟେୟ ବୋଲି ଅନେକ ସ୍ଥାନରେ କହିଛନ୍ତି। 'ଅରଗାଜମ୍' ର ଅର୍ଥ ହେଲା ପୁରୁଷଠାରୁ ସଂଗମ କାଳରେ ନାରୀ ଚରମ ତୃପ୍ତି ପାଇବା। ନିଜର ପ୍ରଥମ ସ୍ୱାମୀ ରୁଦ୍ର (ପୂରାନାମ କବି ରୁଦ୍ର ମହମ୍ମଦ ସାହିଦୁଲ୍ଲା) ଲେଖିକାଙ୍କୁ ଏହି ତୃପ୍ତି ଦେଇ ପାରିନଥିବାରୁ ସେ ତାଙ୍କୁ ଛାଡ଼ପତ୍ର ଦେଇଛନ୍ତି। 'ଅରଗାଜମ୍' ବିଷୟରେ ବୁଝାଇବାକୁ ଯାଇ ଲେଖିକା ତାଙ୍କ ସହପାଠିନୀ ସିପ୍ରାର ବୈବାହିକ ଜୀବନର ଅନୁଭୂତି ସମ୍ପର୍କରେ ଗୋଟାଏ ଅଧ୍ୟାୟ ଲେଖିଛନ୍ତି। ସିପ୍ରା ପ୍ରେମ ବିବାହ କରିଥିଲା ମସ୍କୋରୁ ଦାନ୍ତ ଡାକ୍ତରୀ ପାଶ୍ କରିଥିବା ନିଜ ପିଉସୀର-ପୁଅ-ଭାଇ ହୁମାୟୁନ୍‌କୁ। କିନ୍ତୁ ପ୍ରେମବିବାହର ଗ୍ଲାମର ମଉଳି ଯାଇଛି ଅଳ୍ପ କେତେଦିନର ମିଳନ ପରେ। ଲେଖିକା ଲେଖିଛନ୍ତି- "ସେହି ମଣିଷ ତାକୁ (ଅର୍ଥାତ୍ ସିପ୍ରାକୁ) ଆଦୌ ତୃପ୍ତି ଦେଇ ପାରୁନାହିଁ- ସିପ୍ରା ମୋତେ ସମ୍ପୂର୍ଣ୍ଣଭାବେ ବର୍ଣ୍ଣନା କରିଛି ବିଛଣାରେ ହୁମାୟୁନ୍‌ର ଭୂମିକା। ଉଠିଲା - କ'ଣ କରିଥିଲା ତାହା ସେ ନିଜେ ଜାଣିଛି। ତାହା ପରେ ଓହ୍ଲାଇ ପଡ଼ିଲା।" (ପୃ୧୭) ତତ୍ତୁଲ୍ୟ କ୍ରିୟାକଳାପ ଲେଖିକା ଦେଖିଛନ୍ତି ତାଙ୍କର ପ୍ରଥମ ପ୍ରେମିକ ତଥା ସ୍ୱାମୀ ରୁଦ୍ରଠାରେ।

ରୁଦ୍ରକୁ ଲେଖିକା କିନ୍ତୁ ମନେ ମନେ ଅନେକ ବର୍ଷ ଭଲ ପାଇଛନ୍ତି। ତା' ସହିତ ଖୁଲ୍‌ନାରେ ଏକ କବିତା ଉତ୍ସବରେ ମିଳିତ ହୁଅନ୍ତି ଓ ରାତ୍ରିରେ ଏକ ହୋଟେଲ୍‌ରେ ଶଯ୍ୟାସଙ୍ଗିନୀ ହୁଅନ୍ତି। ରୁଦ୍ର ବ୍ୟତୀତ ସେ ଦେହଦାନ କରନ୍ତି କବି ମିଲନ୍‌ଙ୍କୁ ଓ କୁଜିନେତା କାୟସାର୍‌ଙ୍କୁ। ମିଲନ୍ ତାଙ୍କୁ ଭ୍ରମଣ ପାଇଁ କଲିକତା, ଦିଲ୍ଲୀ ଓ କାଶ୍ମୀରକୁ ୧୯୭୯ ମସିହାରେ ନେଇଯାନ୍ତି। ମିଲନ୍ ବିବାହିତ

କିନ୍ତୁ ଲମ୍ପଟ। ମିଲନ୍ ସହ ମିଳନରେ ତସ୍‌ଲିମା ପରମ ତୃପ୍ତି ପାଆନ୍ତି। ସେ ଏ ବିଷୟରେ ଲେଖନ୍ତି- 'କିନ୍ତୁ ମୁଁ କିଛି କହିବା ପୂର୍ବରୁ ଜମ୍ମୁରେ ମିଲନ୍ ମୋତେ ଗଭୀର ଭାବେର ସ୍ପର୍ଶ କରିଥିଲା। ଯେଉଁ ସ୍ପର୍ଶ ମୋତେ ସମ୍ପୂର୍ଣ୍ଣ ଭାବରେ ଥରାଇ ଦେଇଥିଲା। ଶ୍ରୀନଗରର ଡାଲ ହ୍ରଦରେ ରାଜକୀୟ ଗୋଟିଏ ହାଉସ୍ ବୋଟ୍‌ରେ ଚିହ୍ନା ସହର ଚିହ୍ନା ମଣିଷଙ୍କ ଭିଡ଼ ପାଖରୁ ବହୁତ ଦୂରରେ ନିଆଁ ପାଖରେ ବସି ଭଲପାଇବା ପାଣିରେ ବୁଡ଼ି ଯାଇଥିଲି। ଦୀର୍ଘକାଳ ପୁରୁଷହୀନ ଏହି ଦେହରେ ଏତେ ଶୋଷ ଥିଲା ତାହା ମୁଁ ବୁଝି ପାରିନଥିଲି। ଧଳା ବିଛଣା ଉପରେ ମୋର ଦେହ ଚେଇଁ ଉଠିଥିଲା। ମିଲନ୍ ସେଇ ଦେହକୁ ସୁଖର ଋଦରରେ ଘୋଡ଼ାଇ ପକାଇଥିଲା।" (ପୃ୧୦୦) ଭ୍ରମଣ ସରିବା କ୍ଷଣି ମିଲନ୍ ତସ୍‌ଲିମାକୁ ଭୁଲି ଯାଇଥିଲା। ମଧ୍ୟ ଯୌବନରେ ୧୯୮୬ ବେଳକୁ ତସ୍‌ଲିମାଙ୍କ ଜୀବନରେ ଆସିଥିଲେ ଅନ୍ୟ ଜଣେ ସୁପୁରୁଷ - କାୟସାର୍। କାୟସାର୍ ଆୱାମି ଲିଗ୍‌ର ଜଣେ ରାଜନୈତିକ କର୍ମୀଥିଲେ। ସେ ନଇମ୍ ବୋଲି ଜଣେ କବିଙ୍କ ସହିତ ମିଶି ତସଲିମାଙ୍କ ପାଖକୁ ପ୍ରଥମେ ଆସିଥିଲେ। ଏମିତି ଯିବା ଆସିବା ମଧ୍ୟରେ ସେ ତସ୍‌ଲିମାଙ୍କ ମନ ଓ ଦେହକୁ ଜିଣିଗଲେ। କାୟସାର୍‌ଙ୍କ ସହ ମିଳନର ଚିତ୍ର ତସ୍‌ଲିମା ଦେଇଛନ୍ତି ଏହିପରି - "ମୁଁ ଯେତେବେଳେ କାୟସାର୍‌କୁ ନେଇ ମୋର ଶୋଇବା ଘରର ଦୁଆର ବନ୍ଦ କରିଥାଏ, ସେତେବେଳେ ତାହାକୁ ଭଲ ପାଇଥାଏ। ସେ ମୋତେ ଆନନ୍ଦ ଦେଇଥାଏ। ଗଭୀର ଗୋପନ ଆନନ୍ଦ। ପୁରୁଷକୁ ସୁଖ ଦେବା ପାଇଁ ସେମାନଙ୍କର ଦେହ ତଳେ ଗୋଟିଏ ବସ୍ତୁ କିମ୍ବା ମାଂସପିଣ୍ଡ ଭାବେ ମୁଁ ଆଉ ବ୍ୟବହୃତ ହେବାପାଇଁ ନିଜକୁ ଦିଏ ନାହିଁ। ମୋ ଦେହରେ କୌଣସି ଜୁଆର ଅଛି କି ନାହିଁ, ତାହାର ଖବର କୌଣସି ପୁରୁଷ ପୂର୍ବେ ନେଇ ନଥିଲେ। ତାହା ନ ନେଇ ସେମାନେ ବିଛଣାରୁ କୁଦି ପଡ଼ନ୍ତି ଗାଧୋଇବା ପାଇଁ। କାୟସାର୍ ମଧ୍ୟ ପ୍ରଥମେ ପ୍ରଥମେ ସେହି ଖବର ନେଉ ନଥିଲା। ଯେହେତୁ ସେ ଖବର ନେବା ପୁରୁଷର ଅଭ୍ୟାସରେ ନଥାଏ। ମୁଁ ତାକୁ ସେ ଖବର ନେବାପାଇଁ ବାଧ କରିଥାଏ। ବାଧ କରିଥାଏ ଚନ୍ଦ୍ର ହୋଇ ମୋତେ ଜୁଆର ଦେବାପାଇଁ। କହିଥାଏ, ମୋତେ ଜାଗ୍ରତ କରିବା ପାଇଁ, ମୋତେ ବଜାଇବା ପାଇଁ। ମଗ୍ନ ହେବାପାଇଁ ଆହ୍ୱାନ କରିଥାଏ। କାୟସାର୍ ତାହା ହୁଏ। ସେ ମୋତେ ଆନନ୍ଦ ଦେଇ ନିଜେ ଆନନ୍ଦ ପାଏ। ଧୀରେ ଧୀରେ ଏପରି ହୋଇଉଠେ ଯେ, ମୋର ଆନନ୍ଦ ପ୍ରଧାନ ହୋଇଉଠେ। ମୋର ସୁଖ ପାଇଁ ଏ ଆୟୋଜନ ଅନୁକୂଳ ହୋଇଉଠେ। କାୟସାର୍‌କୁ ଭୋଗକରେ ମୋର ଯେତେବେଳେ ଯାଏ ଇଚ୍ଛା ହୁଏ। ଯେପରି ଇଚ୍ଛା ହୁଏ, ସେପରି ଭାବରେ।" (ପୃଷ୍ଠା୪୯)

ଯେକୌଣସି ଉଇମ୍ୟାନ୍ ଲିବ୍‌ର ଏକ୍‌ଟିଭିଷ୍ଟ ପରି ତସ୍‌ଲିମା କହନ୍ତି - ନାରୀର ସ୍ୱାଧୀନତା କଥା, ପୁରୁଷ ସହ ନାରୀର ସବୁ କ୍ଷେତ୍ରରେ ସମକକ୍ଷତାର କଥା ତଥା ଆମର ପୁରୁଷ ପ୍ରଧାନ ସମାଜର ଦୌରାତ୍ମ୍ୟ ବିଷୟରେ। ନାରୀର ସତୀତ୍ୱ, ଏକପତିବ୍ରତାପ୍ରଥା ଏ ପୁରୁଷ ପ୍ରଧାନ ସମାଜର ସୃଷ୍ଟି ବା ଚଳଣି ବୋଲି ସେ କହନ୍ତି। ନିଜର ସଂଗ୍ରାମଶୀଳ ଜୀବନର ମୁଖ୍ୟ ଉଦ୍ଦେଶ୍ୟ ବିଷୟରେ ସେ ଲେଖନ୍ତି -"ସମଗ୍ର ପୁରୁଷ ଜାତି ପ୍ରତି ମୁଁ ଅକ୍ରୋଶ ରଖିନାହିଁ କି ଲଢ଼େଇ କରୁନି। ମୁଁ କେବଳ

ସମାଜର ଖରାପ ନିୟମ ବିରୁଦ୍ଧରେ ଯୁଦ୍ଧ କରୁଛି। ଯେଉଁ ନିୟମ ନାରୀକୁ ଦାସୀ କରିଥାଏ, ପଣ୍ୟ କରେ, ଯୌନ ସାମଗ୍ରୀ ଭାବରେ ବ୍ୟବହାର କରେ ତାହାର ମୁଁ ପ୍ରତିବାଦ କରୁଛି। ନାରୀକୁ ମଣିଷ ଭାବରେ ମର୍ଯ୍ୟାଦା ଦେଉନାହିଁ ଯେଉଁ ସମାଜ ସେଇ ରାଷ୍ଟ୍ର ସେଇ ଧର୍ମର ଷଡ଼ଯନ୍ତ୍ର ବିରୁଦ୍ଧରେ ମୁଁ ପ୍ରତିବାଦ କରୁଛି।" (ପୃ୩୦୫)

ତସ୍‌ଲିମା ଢ଼ାକ୍କା, ମଇମନ୍‌ ସିଂର କେତେକ ଅଗ୍ରଣୀ ଦୈନିକ ପତ୍ରିକାରେ ନିଜର ଆଦର୍ଶକୁ ଭିତ୍ତି କରି ୧୯୭୬ରୁ ୧୯୯୨ଯାଏ ବହୁତ ତଥ୍ୟନିଷ୍ଠ ସ୍ତମ୍ଭମାନ ଲେଖିଥିଲେ। ତାଙ୍କର ଏହି ଜ୍ୱାଳାମୟୀ ଲେଖାମାନ ସଙ୍କଳିତ ହୁଏ 'ନିର୍ବାଚିତ କଲାମ୍‌' ନାମକ ଏକ ବହି ରୂପରେ ଏବଂ ଏହି ବହି ପାଇଁ ସେ ପାଆନ୍ତି ଆନନ୍ଦ ବଜାର ପତ୍ରିକାରୁ 'ଆନନ୍ଦ ପୁରସ୍କାର' । ନିର୍ବାଚିତ କଲାମ୍‌ରେ କେତୋଟି ପ୍ରବନ୍ଧ ଅଛି, ଯେଉଁଥିରେ ସେ ସୁକୁମାର ଭଟ୍ଟାଚାର୍ଯ୍ୟଙ୍କ ରଚିତ ପୁସ୍ତକ ପଢ଼ି ବେଦ ବିଷୟରେ କେତେକ ଉଚ୍ଚକୋଟୀର ଟିପ୍ପଣୀକୁ ନକଲ କରିଥିଲେ। ନିଜ ବଂଶର ଉଦ୍‌ଭବ ବିଷୟରେ ବର୍ଣ୍ଣନା କରିବାକୁ ଯାଇ ସେ ହିନ୍ଦୁ ଜାତିର ଜାତିଆଣ, ପାତର ଅନ୍ତର ନୀତି, ଅସ୍ପୃଶ୍ୟତାକୁ ନିନ୍ଦା କରିଛନ୍ତି। ତସ୍‌ଲିମା ଲେଖିଛନ୍ତି - ମୋର କହିବାପାଇଁ କୌଣସି ସଙ୍କୋଚ ହୁଏନାହିଁ ଯେ ମୁଁ ଉଚ୍ଚ ଜାତିର ନୁହେଁ। ମୁଁ ଆତରାଫ୍‌ ବା ନିମ୍ନବର୍ଣ୍ଣର ହିନ୍ଦୁ। ହିନ୍ଦୁ ଜମିଦାର କିମ୍ବା ହିନ୍ଦୁ ରାଜାର ଅତ୍ୟାଚାରରେ କୌଣସି ଏକ ସମୟରେ ହିନ୍ଦୁ ଧର୍ମଛାଡ଼ି ମୋର ପୂର୍ବପୁରୁଷ ଇସ୍‌ଲାମ ଧର୍ମ ଗ୍ରହଣ କରିଥିଲେ। କିନ୍ତୁ ବଙ୍ଗଳା ମୋର ଭାଷା ଓ ମୋର ସଂସ୍କୃତି। ମୋର ବଙ୍ଗାଳୀତ୍ୱକୁ ନେଇ ମୁଁ ଗର୍ବ କରେ।" (ପୃ ୨୯୩)

ତସ୍‌ଲିମା ବଙ୍ଗାଳୀ ଜାତି ଓ ବଙ୍ଗଳା ଭାଷାକୁ ତାଙ୍କ ପ୍ରାଣଠାରୁ ଅଧିକ ଭଲ ପାଆନ୍ତି। ୧୯୭୧ ମସିହାରେ ଶେଖ ମୁଜିବୁର୍‌ ରହମନ୍‌ଙ୍କ ନେତୃତ୍ୱରେ ସ୍ୱତନ୍ତ୍ର ଓ ସ୍ୱାଧୀନ ବାଙ୍ଗଲା ଦେଶ ଗଠନ ନିମନ୍ତେ ଯେଉଁ ରକ୍ତାକ୍ତ ସଂଗ୍ରାମ ହୋଇଥିଲା, ତାହା ଶେଷରେ ବଙ୍ଗଳା ଦେଶକୁ ଏକ ଧର୍ମନିରପେକ୍ଷ ଦେଶ ରୂପେ ଗଢ଼ି ତୋଳିଲା। ସେତେବେଳେ ମୁସଲମାନ ଧର୍ମର ଭକ୍ତଗଣ ଏହା ନାପସନ୍ଦ କରିଥିଲେ ଓ ସ୍ୱାଧୀନତା ସଂଗ୍ରାମକୁ ସବୁମତେ ବିରୋଧ କରିଥିଲେ। ୧୯୭୫ ମସିହା ଅଗଷ୍ଟ ୧୫ ତାରିଖରେ ମୁଜିବୁର୍‌ ହତ୍ୟା ପରେ ଦେଶ ହଠାତ୍‌ ଚାଲିଗଲା ପାକିସ୍ତାନ ସପକ୍ଷବାଦୀ ମିଲିଟାରୀ ଜୁଣ୍ଟା ହାତ୍‌କୁ। ତସ୍‌ଲିମା ନିଜେ ଜଣେ ଦେଶପ୍ରେମୀ ଓ ଧର୍ମନିରପେକ୍ଷ ବ୍ୟକ୍ତିତ୍ୱ। ସେ ଧର୍ମଭୀରୁମାନଙ୍କର ଦକ୍ଷିଣପନ୍ଥୀ ପ୍ରତିକ୍ରିୟାଶୀଳଙ୍କ ଚରିତ୍ରକୁ ଧରାଇ ଦେଇ ଲେଖିଛନ୍ତି - "ଏକସ୍ତରୀ ଯୁଦ୍ଧ ସମୟରେ ଯେଉଁ ସାପମାନେ ପାକିସ୍ଥାନ କାଏମ୍‌ କରିବା ପାଇଁ ଇଚ୍ଛା କରିଥିଲେ ସେହି ସାପମାନଙ୍କର ପୂର୍ବପୁରୁଷ ଧର୍ମ ନାମରେ ଭାରତ ବିଭାଜନ କରାଇଥିଲେ। ଧର୍ମ ନାମକ ଗୋଟିଏ ମିଥ୍ୟାପାଇଁ ବିଶାଳ ଗୋଟିଏ ଦେଶର ବିଭାଜନ ହେବାର କଷ୍ଟ ମୁଁ ଲାଳନ କରେ।" (ପୃ୨୯୬)

ଏଇ ପ୍ରସଙ୍ଗରେ ତସଲିମା ଆହୁରି ଲେଖିଛନ୍ତି - "ଏକସ୍ତରୀ ମସିହା ଯୁଦ୍ଧରେ ପାକିସ୍ତାନ ଭାଙ୍ଗି ବାଙ୍ଗଲାଦେଶ ହେବା ପ୍ରମାଣ କରି ଦେଇଛି ଭାରତ ବିଭାଜନର ସିଦ୍ଧାନ୍ତ ଭୁଲ ଥିଲା।

ମୋର ପ୍ରଗତିଶୀଳ କବିତାଗୁଡ଼ିକ ଛପାହେବା କ୍ଷଣି ବିଷାକ୍ତ ସାପମାନଙ୍କ ଦଳ ମୋତେ ଦେଶଦ୍ରୋହୀ ଭାବରେ ଆଖ୍ୟା ଦେଇଛନ୍ତି।" (ପୃ ୨୯୬)

ବାବ୍‌ରୀ ମସ୍‌ଜିଦ୍ ପତନ ପରେ ପରେ ବଙ୍ଗଳା ଦେଶରେ ପ୍ରତିକ୍ରିୟା ସ୍ୱରୂପ ବଙ୍ଗଳା ଦେଶରେ ମୁସଲମାନମାନେ ସଂଖ୍ୟା ନ୍ୟୁନ ହିନ୍ଦୁମାନଙ୍କ ଉପରେ ଅତ୍ୟାଚାର କରିଛନ୍ତି। ସୁରଞ୍ଜନ ଏକ ହିନ୍ଦୁ ଯୁବକକୁ ହିରୋ କରି ତସ୍‌ଲିମା ରଚନା କରନ୍ତି ଉପନ୍ୟାସ 'ଲଜ୍ଜା'। ଏହି ଉପନ୍ୟାସରେ ସେ ମଣିଷକୁ ଜଗତରେ ଚରମ ସତ୍ୟ ରୂପେ ଘୋଷଣା କରିଛନ୍ତି। ବଙ୍ଗଳା ଦେଶରେ ମାନବ ପ୍ରେମ ଓ ଧର୍ମ ନିରପେକ୍ଷତା ଫେଲ୍ ମାରିବାରୁ ଏ ଦଙ୍ଗା ବ୍ୟାପିଥିବାର ସେ କହିଲେ। ତସ୍‌ଲିମା ଲେଖିଲେ - 'ଲଜ୍ଜା' ମୋର ତତ୍‌କ୍ଷଣାତ୍ ଆବେଗର ଫସଲ ନୁହେଁ। ଏହା ଆମ୍ଭମାନଙ୍କର ସମସ୍ତଙ୍କର ପରାଜୟର ଇତିହାସ। ଏହା ଆମ ସମସ୍ତଙ୍କର ଲଜ୍ଜା। ସମସ୍ତଙ୍କ ଗ୍ଲାନି ଯେ, କୌଣସି ସୁସ୍ଥ ସଚେତନ ମଣିଷ ପାଇଁ ଏହି ପରାଜୟ ଅତ୍ୟନ୍ତ ମର୍ମାନ୍ତିକ। ଦଙ୍ଗାର ପ୍ରଭାବରେ ମଣିଷ 'ସୁରଞ୍ଜନ' ହଠାତ୍ ହିନ୍ଦୁ ହୋଇ ଉଠିଛି। ସେଇମିତି ଆଉ ଜଣେ 'ହାଇଦର' ମୁସଲମାନ ହୋଇଉଠିଛି। ମୁଁ ସେହି ସମୟରେ ପ୍ରତିବାଦ କରିବାର ଦାୟିତ୍ୱ ଅନୁଭବ କରିଛି।" (ପୃ ୪୩୮)

ସାମ୍ପ୍ରଦାୟିକ ଦଙ୍ଗା ସମୟରେ ବଙ୍ଗଳା ଦେଶର ଧର୍ମ ନିରପେକ୍ଷ ବ୍ୟକ୍ତିଗଣ ଅସହାୟ ହୋଇ ଉଠିଛନ୍ତି। ମୁସଲମାନ ଲେଖକଗଣ ତାଙ୍କ ସମଧର୍ମୀ ଲେଖକ ଯଥା:ନିର୍ମଳେନ୍ଦୁ ଗୁଣ, ଅସୀମ ସାହା ଓ ମହାଦେବ ସାହାଙ୍କ ସହାୟତା ଓ ନିରାପତ୍ତା ଯୋଗାଇ ପାରିନାହାନ୍ତି। କବି ନିର୍ମଳେନ୍ଦୁଙ୍କର ଝିଅ ଜଣେ ମୁସଲମାନ ଯୁବକଙ୍କୁ ସେଇ ସାଲର ବର୍ଷେ କି ଦି'ବର୍ଷ ପୂର୍ବରୁ ପ୍ରେମ ବିବାହ କରିଥିଲେ। ସେଇ ସୂତ୍ରରୁ ନାତିଟି ଆସି ନିର୍ମଳେନ୍ଦୁଙ୍କ ଘରେ ରହୁଥାଏ। ସେଇ ମୁସଲମାନ ପିଲାଟିକୁ ପାଳିଥିବା ଦର୍ଶାଇ ଦଙ୍ଗାକାରୀଙ୍କ କବଳରୁ କବି ନିର୍ମଳେନ୍ଦୁ ରକ୍ଷା ପାଇଯାଇଥାନ୍ତି। ଲେଖକ ତଥା ମଧ୍ୟବିତ୍ତ ବ୍ୟକ୍ତିଙ୍କୁ ମଧ୍ୟବିତ୍ତର ରୋମାଣ୍ଟିକତାରେ ଭାସୁଥିବାର ଅଭିଯୋଗ କରନ୍ତି ତସ୍‌ଲିମା। ସେ ଲେଖନ୍ତି - ଦେଶର ଅଶିଭାଗ ଲୋକ ଦୁଃଖରେ ଜୀବନଯାପନ କରୁଛନ୍ତି ଜାଣି ମଧ୍ୟ ନିଜ ଜୀବନର ଆରାମ ଅୟସ କଥା କିଛି ଛାଡ଼ି ଦେଇନାହିଁ। ହଜାର ହଜାର ମଣିଷ ଫୁଟ୍‌ପାଥରେ ଶୋଉଛନ୍ତି ଜାଣି ମଧ୍ୟ ମୁଁ ନିଜେ ନରମ ଗଦିରେ ଶୋଇବାର ଲୋଭ ଛାଡ଼ି ପାରିନାହିଁ। କେହି ଖାଇବା ପାଇଁ ପାଉ ନାହାନ୍ତି ବୋଲି ମୁଁ ଦିନକୁ ତିନିଥର ଖାଇବା ଛାଡ଼ି ଦେଇନାହିଁ। ସମାଜତନ୍ତ୍ର ନେଇ ଯାହା କିଛି ମୋ ମନରେ, ତାହା ମଧ୍ୟବିତ୍ତର ରୋମାଣ୍ଟିକତା'। (ପୃ ୩୦୮)

ଏ ପ୍ରଗତିବାଦୀ ରୋମାଣ୍ଟିକ୍ ଭାବନା ବାସ୍ତବରେ ତାଙ୍କର ଚୂର୍ଣ୍ଣ ହୋଇ ଯାଇଛି ବାବ୍‌ରି ମସ୍‌ଜିଦ୍ ଭଙ୍ଗା ପରେ ପରେ ବାଙ୍ଗଲା ଦେଶରେ ଘଟିଥିବା ଦଙ୍ଗାରେ। ତସ୍‌ଲିମା ନିଜ ବ୍ୟକ୍ତିତ୍ୱର ସୀମା ସରହଦ , ଦଙ୍ଗାବେଳେ କଳନା କରିପାରିଛନ୍ତି। ଏ ଦଙ୍ଗା ଦେଇଛି ତାଙ୍କୁ ଆତ୍ମ ବିଶ୍ଳେଷଣର ସୁଯୋଗ। ତସ୍‌ଲିମା ତାଙ୍କ ସ୍ୱଷ୍ଟ ସ୍ୱୀକାରୋକ୍ତିରେ କହନ୍ତି- "ମୁଁ ଧର୍ମ ମାନେ ନାହିଁ। ମୁଁ ପ୍ରଗତିଶୀଳ ଆନ୍ଦୋଳନ ସହିତ ଜଡ଼ିତ। ମୋର ଅଧିକାଂଶ ବନ୍ଧୁମାନେ ଧର୍ମହୀନ। ମୋର ଦେଶକୁ ମୁଁ ଅତି

ଭଲପାଏ। ଦେଶର ମଙ୍ଗଳ ପାଇଁ ଦିନରାତି ମୁଁ ଭାବିଥାଏ। କିନ୍ତୁ ଏହି ସାଂପ୍ରଦାୟିକ ସନ୍ତ୍ରାସ ମୋତେ ଚୂର୍ଣ୍ଣ କରିଦେଉଛି-ମୋର ଆଦର୍ଶ ଭାଙ୍ଗି ପଡୁଛି।" (ପୃ ୩୮୧)

ତସ୍‌ଲିମାଙ୍କ ବିରୁଦ୍ଧରେ ମାତି ଉଠିଛନ୍ତି ମୁସଲମାନ ଧର୍ମର ଧର୍ମ ଯାଜକ, ମୁଲ୍ଲା ଓ ମୁଫ୍‌ତିମାନେ। ତାଙ୍କୁ ସେମାନେ ମୁସଲମାନ ଧର୍ମ ବିରୋଧୀ ବୋଲି ପ୍ରଚାର କରିଛନ୍ତି ଓ ତାଙ୍କ ବିରୁଦ୍ଧରେ ଫତୁଆ ଜାରୀ କରିଛନ୍ତି ଓ ତାଙ୍କ ମୁଣ୍ଡକାଟି ଆଣିଲେ ପଚାଶ ହଜାର ଟଙ୍କା ଦେବେ ବୋଲି ଘୋଷଣା କରିଛନ୍ତି। ସେମାନଙ୍କ ପ୍ରଭାବ ଆଗରେ ମୁଣ୍ଡ ନୁଆଁଇଛି ସେକ୍ ହାସିନା ଓ ବେଗମ୍ ରହମାନ୍‌ଙ୍କ ସରକାର। ଫଳରେ ପାରିପାର୍ଶ୍ୱିକ ଚାପର ଅସହ୍ୟ ଯନ୍ତ୍ରଣାରେ ଦୋହଲି ଯାଇ ତସ୍‌ଲିମା ଡାକ୍ତରୀ ଚାକିରୀରୁ ଇସ୍ତଫା ଦେଇଛନ୍ତି। ତାପରେ ତାଙ୍କ ଦେଶତ୍ୟାଗ ଓ ସର୍ବଶେଷରେ ଭାରତରେ ଶରଣ ନେବା ହୋଇଯାଇଛି ଆମ ପାଇଁ ଏକ ଜଣାଶୁଣା ଇତିହାସ।

ତସ୍‌ଲିମ ମୌଳବାଦୀକୁ ଦେଶର ପ୍ରମୁଖ ଶତ୍ରୁ ବୋଲି ଭାବନ୍ତି ଓ ତାଙ୍କ ବିରୁଦ୍ଧରେ ମସୀ ଯୁଦ୍ଧ କରନ୍ତି। ସେ ବିରୋଧ କରନ୍ତି ଆମ ଉପମହାଦେଶର ଘନଘନ ମୁଣ୍ଡ ଟେକୁଥିବା ଜାତିଆଣ, ସାଂପ୍ରଦାୟିକ ଦଙ୍ଗାକୁ। ଗାଁ ଗହଳିରେ ଚେର ମାଡ଼ିଥିବା ପ୍ରାଚୀନ ସାମନ୍ତବାଦ ଓ ଲୋକଙ୍କ ମନରେ ଥିବା ସାଆନ୍ତିଆ ମନୋବୃତ୍ତିକୁ ସେ ଘୃଣା କରନ୍ତି। ଉପମହାଦେଶ ଆଜି ପରିଣତ ହେଲାଣି ବିଶ୍ୱ ବ୍ୟାଙ୍କ ଓ ବିଦେଶୀ ପୁଞ୍ଜି ଗୃହଙ୍କର ଲୀଳାଖେଳା କ୍ଷେତ୍ରରେ। ପ୍ରତି ଦେଶର ଶାସକ ବିଦେଶୀ ମହାଶକ୍ତିଙ୍କ ହାତରେ ସଖୀ କଣ୍ଢେଇ ସାଜିଲେଣି। ତା' ବିରୁଦ୍ଧରେ ନିରବଚ୍ଛିନ୍ନ ଅକ୍ଳାନ୍ତ ଯୁଦ୍ଧ ଘୋଷଣା କରିଛି ତସ୍‌ଲିମାଙ୍କ କଲମ।

'ଦ୍ୱିଖଣ୍ଡିତ' ପୁସ୍ତକରେ ଭାରତୀୟଙ୍କ ସହିତ ତସ୍‌ଲିମାଙ୍କ ଅନ୍ତରଙ୍ଗତା ଭାରି ମନ୍ମୟ ଭାଷାରେ ବର୍ଣ୍ଣିତ। ଓଡ଼ିଆଙ୍କ ଖାଦ୍ୟପେୟ ତସ୍‌ଲିମାଙ୍କୁ ମୁଗ୍ଧ କରିଥିବାର ଏ ବହିରେ ତାଙ୍କ କଲିକତା ଭ୍ରମଣ ପ୍ରସଙ୍ଗରେ ଲିଖିତ। ଇନ୍ଦ୍ରନାଥ ମୁଖୋପାଧ୍ୟାୟଙ୍କ ଆତିଥ୍ୟ ପ୍ରସଙ୍ଗରେ ସେ ଉଲ୍ଲେଖ କରିଛନ୍ତି ଏହି କଥା- "ସେଦିନ ଦ୍ୱିପ୍ରହର ସମୟରେ ଯାଇଥିଲି ବନ୍ଧୁ ଇନ୍ଦ୍ରନାଥଙ୍କ ଘରକୁ। ସେ ମୋତେ ମୁଣ୍ଡଫଟା ଖରାରେ ସାଙ୍ଗରେ ଧରି ବୁଲି ବାହାରିଲେ। କହିଲେ, ଆପଣ ତ ବଡ଼ ବଡ଼ ସ୍ଥାନକୁ ଯାଇଛନ୍ତି, ଆଜି ଚାଲନ୍ତୁ ଆପଣଙ୍କୁ ଗୋଟେ ଭଲ ସ୍ଥାନକୁ ନେଇଯିବି। ସେହି ଓଡ଼ିଆଙ୍କ ଦୋକାନରେ ବସି କଦଳୀ ପତ୍ରରେ ମାଛ ଭଜା ଦୁହେଁ ଖାଇଥିଲୁ। ଅତି ଅଳ୍ପ ପଇସା ଖର୍ଚ୍ଚ ହୋଇଥିଲା। କିନ୍ତୁ ଏଇ ଖାଇବାରେ ଯେଉଁ ଆନନ୍ଦ ପାଇଛି ତାହା ଅତି ଦାମିକା ରେଷ୍ଟୁରାଣ୍ଟର ଖାନାରୁ ପାଇ ନାହିଁ।" (ପୃ ୨୯୮)

●

# ଭଗବତୀ ଚରଣଙ୍କ ଗଳ୍ପ : ଏକ ଆକଳନ

ଭଗବତୀ ଚରଣ ପାଣିଗ୍ରାହୀ ଥିଲେ ଓଡ଼ିଶାର ସାମ୍ୟବାଦୀ ଆନ୍ଦୋଳନର ଭଗୀରଥ- ସାମାଜିକ ନ୍ୟାୟ ଆଦାୟ କରିବା ପାଇଁ ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ସୁରୁ ହୋଇଥିବା ଲଢ଼େଇରେ ସେ ନବକୃଷ୍ଣ ଚୌଧୁରୀ, ମାଳତୀ ଦେବୀ ସାରଙ୍ଗଧର ଦାସଙ୍କର ସତୀର୍ଥ ଥିଲେ। ତାଙ୍କ ସହଯୋଦ୍ଧାମାନେ ସମାଜସେବୀ ଓ ରାଜନୀତିଜ୍ଞ ଥିବାବେଳେ ଭଗବତୀ ଥିଲେ ଏକାଧାରରେ ରାଜନୀତିଜ୍ଞ କବି, ପ୍ରାବନ୍ଧିକ ତଥା ଗାଳ୍ପିକ। ତାଙ୍କ ରଚିତ ସାହିତ୍ୟକୁ ପଢ଼ିବାର ଅର୍ଥ ହେଲା ତତ୍‌କାଳୀନ ସମାଜ, ଅର୍ଥନୀତି ଓ ମନୋବିଜ୍ଞାନର ସମୁଦ୍ର ସ୍ନାନ କରିବା- ତତ୍‌କାଳୀନ ଇତିହାସକୁ ପଢ଼ିବା। ୧୯୧୫ ମସିହାରେ କଂଗ୍ରେସ ଆନ୍ଦୋଳନରେ ଗାନ୍ଧିଙ୍କ ଯୋଗଦାନ ଫଳରେ ଭାରତୀୟ ଜାତୀୟ ମୁକ୍ତି ସଂଗ୍ରାମରେ ବେଗ ସଞ୍ଚାରିତ ହୋଇଥିଲା। ଭଗବତୀ ସେତେବେଳେ ସ୍କୁଲର ଛାତ୍ର ଥାନ୍ତି। ୧୯୧୯ ମସିହାରେ ଜାଲିଆନାୱାଲାବାଗ୍ ହତ୍ୟାକାଣ୍ଡର ପ୍ରତିବାଦ ଯୋଗୁଁ ପୁରୀ ଜିଲ୍ଲା ସ୍କୁଲ ଅନିର୍ଦ୍ଦିଷ୍ଟ କାଳ ନିମନ୍ତେ ବନ୍ଦ ରହିବାରୁ ସେ ଜିଦ୍ କରି ଗୋପବନ୍ଧୁଙ୍କ ସତ୍ୟବାଦୀ ବନ ବିଦ୍ୟାଳୟରେ ଭର୍ତ୍ତି ହେଲେ। ସତ୍ୟବାଦୀ ଜାତୀୟ ବନ ବିଦ୍ୟାଳୟ ନଥିଲା ଏକ ସାଧାରଣ ହାଇସ୍କୁଲ- ଏହା ଥିଲା ଜାତୀୟତାବାଦୀ ଆନ୍ଦୋଳନ ପାଇଁ ସୈନିକ ତିଆରି କାରଖାନା- ଗୋପବନ୍ଧୁଙ୍କ ଭାଷାରେ କହିଲେ ଠିକ୍ ହେବ- ମଣିଷ ଗଢ଼ା କାରଖାନା। ସେଇ ସ୍କୁଲରେ ମାତ୍ର ଗୋଟିଏ ବର୍ଷର ଛାତ୍ରତ୍ୱ କାଳରେ ସେ ତତ୍‌କାଳୀନ ଜାତୀୟତାବାଦୀ ଆନ୍ଦୋଳନରୁ ଉଦ୍ଦୀପନା ଆହରଣ କରିଥିଲେ। ସେଠାକୁ ବିନା ଖର୍ଚ୍ଚରେ ପଢ଼ିବାକୁ ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ଆସୁଥିବା ବନ୍ଦୀ ସ୍ୱାଧୀନତା ସଂଗ୍ରାମୀଙ୍କ ସନ୍ତାନ ସନ୍ତତିଙ୍କ ସହିତ ମିଶି ସେ ଶୁଣିଥିଲେ ତାଙ୍କ ପରିବାରର କଷ୍ଟାର୍ଜିତ ଜୀବନ ସଂଗ୍ରାମର କାହାଣୀ। ୧୯୨୧ର ସଂଗ୍ରାମ ବା ସ୍ୱଦେଶୀ ସତ୍ୟାଗ୍ରହ ଯାହାକୁ ଗାନ୍ଧିମାର୍ଗୀ ସଂଗ୍ରାମର ପ୍ରଥମ ସୋପନ ରୂପେ ଐତିହାସିକମାନେ ଅଭିହିତ କରନ୍ତି- ତାହାର ଉଷ୍ଣତାକୁ ଭଗବତୀ କେବଳ ଅନୁଭବ କରି ପାରୁଥିଲେ ଶ୍ରେଣୀ କକ୍ଷରେ ବସି।

୧୯୨୧ର ସତ୍ୟାଗ୍ରହକୁ ଗାନ୍ଧି ରଦ୍ଦ କରନ୍ତି ଚୌରୀଚୌରା ଘଟଣା ଯୋଗୁଁ। କିନ୍ତୁ ପ୍ରଥମ ବିଶ୍ୱଯୁଦ୍ଧରେ କ୍ଳାନ୍ତ ଓ ଆଘାତପ୍ରାପ୍ତ ହୋଇଥିବା ଇଂଲଣ୍ଡ ଗାନ୍ଧିଙ୍କ ସତ୍ୟାଗ୍ରହରେ ଆହୁରି ଟିକିଏ ଅଧିକ ପ୍ରତିରୋଧର ସମ୍ମୁଖୀନ ହୋଇଥିଲେ, ଅର୍ଥାତ୍ ଚୌରୀଚୌରା ଘଟଣାକୁ ଗାନ୍ଧି ସହ୍ୟ କରି ଯାଇଥଲେ ଓ ଆନ୍ଦୋଳନକୁ ଚଳାଇ ରଖିଥିଲେ, ଦ୍ୱିତୀୟ ଦଶକର ଉତ୍ତରାର୍ଦ୍ଧର କୌଣସି ବର୍ଷର କୌଣସି ଦିବସ ହୋଇଥାନ୍ତା ଆମ ଉପମହାଦେଶର ସ୍ୱାଧୀନତା ଦିବସ। ଭଗବତୀ ୧୯୨୧ରୁ ୧୯୪୨ ମଧ୍ୟରେ ତାଙ୍କ ସାଧନାର ଏଇ କେତୋଟି ବର୍ଷରେ ଦେଖିଥିଲେ ଜାତୀୟ ତଥା

ଆନ୍ତର୍ଜାତୀୟ ଘଟଣା ପ୍ରବାହରେ ଅଧିକ ବେଗ-ଅଧିକ ଚମତ୍କାରୀ ପରିବର୍ତ୍ତନ । ଗୋଟିଏ ପକ୍ଷରେ ୧୯୧୭ରେ ଜାରତନ୍ତ୍ର କବଳରୁ ବିପ୍ଳବ ମାଧମରେ ମୁକ୍ତ ହୋଇଥିବା ସୋଭିଏତ୍ ୟୁନିୟନ୍ ନୂତନ ଆର୍ଥନୀତିକ ନିର୍ମାଣର ପଥରେ ଯାତ୍ରୀ ହୋଇ ଆଗେଇ ଚାଲିଥାଏ । ଦେଶ ମଧ୍ୟରେ ଅନୁଶୀଳନ ସମିତିର ଆନ୍ଦୋଳନ, ଭଗତସିଂଙ୍କ ହିନ୍ଦୁସ୍ଥାନ ରିପବ୍ଲିକାନ୍ ଦଳର ସଂଗ୍ରାମ, ସୂର୍ଯ୍ୟସେନ୍‌ଙ୍କ ଚିଟ୍ଟାଗଙ୍ଗ୍ ଅସ୍ତ୍ରାଗାର ଲୁଣ୍ଠନ ଗାନ୍ଧୀବାଦୀ ଆନ୍ଦୋଳନକୁ ଆଗକୁ ଠେଲି ବା ଧକ୍କା ଦେଇ ତୃତୀୟ ଦଶକର ଲବଣ ସତ୍ୟାଗ୍ରହରେ ପହଞ୍ଚାଇ ଦେଇଥାଏ । ଜାତୀୟ ମୁକ୍ତି ଆନ୍ଦୋଳନରେ ସଂଘଟିତ ହୋଇଥିବା ଏହି ବେଗକୁ ଭଗବତୀ ମର୍ମେ ମର୍ମେ ଅନୁଭବ କରିଥିଲେ ଓ ତଦନୁସାରେ ନିଜସ୍ୱ ସଂଗ୍ରାମୀ କର୍ମପନ୍ଥା ସ୍ଥିର କରିଥିଲେ । ଭଗବତୀ ତାଙ୍କ ଗଳ୍ପ 'ଆରମ୍ଭ ଓ ଶେଷ'ରେ ସମୟର ଏହି ବେଗବତୀ ପରିବର୍ତ୍ତନର ଲୀଳା ବିଷୟରେ କହିଛନ୍ତି- "ଚାରିପାଖରେ ପରିବର୍ତ୍ତନର ଲୀଳା । ଇତି ମଧ୍ୟରେ ଧରମାର ଗାଁ ଘରଟି ଭାଙ୍ଗି ଯାଇଛି । ବଗିଚାଟି ନାରଖାର ହୋଇଛି । ବୁଢ଼ୀମା ଆଉ ଏ ଜଗତରେ ନାହିଁ । ପରିବର୍ତ୍ତନ ସ୍ରୋତରେ ସମସ୍ତେ ଆଗେଇ ଚାଲିଛନ୍ତି ।" (ଭଗବତୀ ସଞ୍ଚୟନ - ପୃ ୭୨)

ଭଗବତୀ ଚରଣ ପାଣିଗ୍ରାହୀ ଓଡ଼ିଶା ସାହିତ୍ୟରେ ମାତ୍ର ୧୨ଟି ଗଳ୍ପ; କେତୋଟି ପ୍ରବନ୍ଧ ଓ ଦୁଇଟି କବିତା ଲେଖିଥିଲେ । 'ଶିକାର' ଏ ଗଳ୍ପ ମଧ୍ୟରୁ ଶ୍ରେଷ୍ଠ , କାରଣ ଗତ ଶତାବ୍ଦୀର ୩ୟ ଓ ୪ର୍ଥ ଦଶକର ଓଡ଼ିଆ ସମାଜର ଦ୍ୱନ୍ଦ୍ୱକୁ ଏହା ତୋଳି ଧରେ ଏବଂ ଆର୍ଥନୀତିକ ଓ ସାମାଜିକ ସଂଘାତର ସମାଧାନ କରି ଏକ ସମତାଭିତ୍ତିକ ସମାଜ ଗଠନ ନିମନ୍ତେ ଏହା ଇଙ୍ଗିତ କରେ ।

ଗତ ଶତାବ୍ଦୀର ୩ୟ ଓ ୪ର୍ଥ ଦଶକର ଓଡ଼ିଶା ଥିଲା ମୁଖ୍ୟତଃ କୃଷି ଅର୍ଥନୀତିର ସମାଜ । ଯହିଁରେ ଜମିଦାର, ଜମି ମାଲିକ, ମହାରାଜା, ସମାଜର ମୁଖ୍ୟ ଅର୍ଥନୀତିର ମଙ୍ଗୁଆଳ ଥିଲେ, ଯାହାଙ୍କର ପୃଷ୍ଠପୋଷକତା କରୁଥିଲା ବ୍ରିଟିଶ ସାମ୍ରାଜ୍ୟବାଦ । ଭାଗଚାଷୀ, ରଇତ, ନାଁକୁମାତ୍ର ଚାଷୀ, ନିମ୍ନ ମଧ୍ୟବିତ୍ତ ଲୋକ ଓ ସାମାନ୍ୟ ଚାକିରୀଆ ଶ୍ରେଣୀ ଥିଲେ ଆର୍ଥନୀତିକ ଭାବେ ଦୁର୍ବଳ ଓ ଏକ ପ୍ରକାର ଶୋଷିତ ଶ୍ରେଣୀ । ଓଡ଼ିଆ ସମାଜରେ ଶ୍ରମିକ ଶ୍ରେଣୀଟାଏ ସେତେବେଳକୁ ଗଠିତ ହୋଇପାରିନଥିଲା, କାରଣ ସେତେବେଳର ଓଡ଼ିଶାରେ ଗୋଟିଏ ମାତ୍ର ଶିଳ୍ପ କାରଖାନା ନଥିଲା । କେବଳ ସିଂଭୂମ୍ ଜିଲ୍ଲାରେ ଟାଟା ଲୁହା କାରଖାନା ଥିଲା, ଯାହାର ଲୁହା ପଥର ଖଣି ବାଦାମ ପାହାଡ଼, ଓ ଗୋରୁମହିଷାଣୀରେ କାର୍ଯ୍ୟ କରୁଥିଲେ କେତେକ କୁଲୀ ଓ ମଜୁରୀଆ । ଓଡ଼ିଶାକୁ ଧନାଗମର ଅନ୍ୟ ଏକ ପେଣ୍ଠ ଥିଲା କଲିକତା- ଯାହାର ଚଟକଳ, କାଗଜକଳରେ କାମକରି ଓ ବଜାରରେ ଦୋକାନ ଓ କୁଲିଗିରି କରି ଓଡ଼ିଆମାନେ ଘରକୁ ଟଙ୍କା ପଠାଉଥିଲେ । 'ଦା'ହାତୁଡ଼ି' ଗଳ୍ପରେ ଗାଁରେ ଜମିଦାରର ଖଜଣା ଦାଉରେ ଅତିଷ୍ଠ ହୋଇ ସୁଦାମ ପଳାଇଯାଇ କଲିକତାର ଚଟକଳରେ କାର୍ଯ୍ୟ କରିଛି । ଚଟକଳର ମାଲିକର ଶୋଷଣ ତାକୁ ଗାଁ ମହାଜନଙ୍କ ଶୋଷଣ ଅପେକ୍ଷା ଆହୁରି ନିର୍ମମ ଓ ଭୟଙ୍କର ଜଣାପଡ଼ିଛି । ଇତି ମଧ୍ୟରେ ଗାଁରେ ଛାଡ଼ି ଆସିଥିବା ଯୁବତୀ ସ୍ତ୍ରୀ ଯମୁନା ମହାଜନର ଦୌରାତ୍ମ୍ୟରେ ନିର୍ଯ୍ୟାତିତା ହୋଇ କଲିକତାର ବେଶ୍ୟାଳୟରେ ଯାଇ ଉଠିଛି । ଗାଁରେ ମହାଜନ ଓ ସହରରେ ଚଟକଳର ମାଲିକଙ୍କ ଶୋଷଣ ଯୋଗୁଁ ଏହିପରି ଉଜୁଡ଼ି ଯାଏ

ସୁଦାମର ସୁନା ସଂସାର। ସୁଦାମ ସମାଜର ଏ ଅନ୍ୟାୟ ବିରୁଦ୍ଧରେ ପାଟିତୁଣ୍ଡ କରେ ଓ ନିଜର ପ୍ରତିକ୍ରୀୟା ପ୍ରକାଶ କରେ।

ଭଗବତୀ ଯଦିଓ ସମାଜବାଦୀ ଥିଲେ, ତଥାପି ସେ ପ୍ରଥମତଃ ଥିଲେ ଜଣେ ଦେଶପ୍ରେମୀ। ସାମାନ୍ୟ ଲୁଣ ଓ ଖଦଡ଼ ସୁତାଖିଅରେ ଗାନ୍ଧିଙ୍କ ସ୍ୱରାଜର ସ୍ୱପ୍ନ ଝୁଲୁଥିଲା। ନିଜ ମାଟିରେ ନିଜ ତରିକାରେ ସଂଘର୍ଷ କରି ଏ ଦେଶରୁ ସାମ୍ରାଜ୍ୟବାଦୀଙ୍କୁ ତଡ଼ିବା କ୍ଷେତ୍ରରେ ଭଗବତୀ ଗାନ୍ଧୀଙ୍କ ବିଶ୍ୱାସ ସହ ଏକମତ ଥିଲେ। ତେଣୁ ସେ ତାଙ୍କ 'ସମୟାତୀତ' ଗଳ୍ପରେ ନାୟକ ତଥା ଯୁବନେତା ସତ୍ୟଙ୍କୁ ଇଷ୍ଟୁଡ଼ିର ଲବଣ ସତ୍ୟାଗ୍ରହରେ ଅଂଶ ଗ୍ରହଣ କରାଇଛନ୍ତି। ସତ୍ୟ ଏଇଥିପାଇଁ ଛମାସ କାରାଦଣ୍ଡ ଭୋଗୁଥିବାବେଳେ ତାହାର ପ୍ରେମିକା ସହପାଠିନୀ ସୁରମା ତେଣେ ଆଉ ଜଣେ ପ୍ରତିଭାବାନ ଅଥଚ ପୁସ୍ତକକୀଟ ରାଜକିଶୋରଙ୍କୁ ବିବାହ କରିଛି ଓ ସ୍ୱାମୀ ସହ ଅୟସରେ କାଳଯାପନ କରିଛି। ସତ୍ୟ ଜେଲରୁ ଫେରି ସୁରମାକୁ ଅନ୍ୟ ସହ ସୁଖୀ ସଂସାର ଗଢ଼ି ରହିବାର ଦେଖିଛି। ଭଗବତୀଙ୍କ ଲବଣ ସତ୍ୟାଗ୍ରହ ଓ ଗାନ୍ଧୀଙ୍କ ତ୍ୟାଗପୁତ ଜୀବନ ଧାରଣ ଉପରେ ଏହିପରି ଉଚ୍ଚ ଧାରଣା ଥିଲା ଏବଂ ଏହାହିଁ ଏ ଗଳ୍ପର ଚାଳିକା ଶକ୍ତିଭାବେ କାର୍ଯ୍ୟ କରିଛି। ଭଗବତୀ ବାବୁ ସାମ୍ୟବାଦୀ ଥିଲେ ବି ଗାନ୍ଧୀବାଦୀ ସରଳ ଜୀବନ ଯାପନ କରୁଥିଲେ। କାଳେ କାଳେ ଭାରତୀୟ କମ୍ୟୁନିଷ୍ଟମାନେ ବ୍ୟକ୍ତିଗତ ଜୀବନଧାରଣ କ୍ଷେତ୍ରରେ ଗାନ୍ଧିବାଦୀ ସରଳତା ଅନୁସରଣ କରନ୍ତି ବୋଲି ନିକଟରେ ଏକ ସଂଦର୍ଭରେ ବିଖ୍ୟାତ ସାମ୍ବାଦିକ କୁଲଦୀପ୍ ନାୟାର କହିଛନ୍ତି। ଏ ଗଳ୍ପର ନାୟକ ସତ୍ୟଙ୍କୁ ଭଗବତୀ ବାସ୍ତବରେ ସେହି ଢାଞ୍ଚାରେ ଗଢ଼ିଛନ୍ତି।

ଭଗବତୀ ବାବୁ ଆର୍ନ୍ତଜାତୀୟ ଚିନ୍ତା ଜଗତରେ ଚାଞ୍ଚଲ୍ୟ ସୃଷ୍ଟି କରିଥିବା ମାର୍କ୍ସବାଦୀ ଦର୍ଶନ ଓ ତାର ଦ୍ୱନ୍ଦ୍ୱାତ୍ମକ ବିଶ୍ଳେଷଣ ପଦ୍ଧତି, ଫ୍ରୟେଡିଓ ମନୋବିଜ୍ଞାନ ଓ ଡାରଉଇନ୍‌ଙ୍କ ବହିଃପ୍ରକୃତିର ବିଶ୍ଳେଷଣକୁ ତନ୍ନତନ୍ନ କରି ପଢ଼ିଥିଲେ। ସେ ମଧ ପଢ଼ିଥିଲେ ମୌଁପାସା', ଚେକୋଭ୍, ଗର୍କୀ, ଓ ହେନେରୀ, ଓ ମାୟକୋଭସ୍କିଙ୍କୁ। ଗଳ୍ପ ଓ କବିତାରେ କଳା ଦୃଷ୍ଟି ଯେତେ ଅନ୍ତଃସଳୀଳା ହୋଇ ବହିପାରିବ, ସେତେ ଭଲ ବୋଲି ସେ କହୁଥିଲେ। ଲେଖକ ତାର ଲେଖାରେ ପାଠକଙ୍କୁ ତାର କରଣୀୟ କାର୍ଯ୍ୟ ବିଷୟ ସୂଚନା ଦେବ ନାହିଁ। ସାହିତ୍ୟକୁ ସେ କେବଳ ପ୍ରଚାର ସର୍ବସ୍ୱ କରିବ ନାହିଁ। ଭଗବତୀ ବାବୁ ଲେଖିଛନ୍ତି- 'ଇଙ୍ଗିତ' (suggestiveness) କଥାସାହିତ୍ୟରେ କଳା କୁଶଳତା ଅନ୍ୟତମ ପରିଚାୟକ। ଲେଖକ ବର୍ଣ୍ଣନା, ବିଶ୍ଳେଷଣ, କରି ଚାଲିଥିବ, ଭାଷାର ଐଶ୍ୱର୍ଯ୍ୟ ଏବଂ ଭାବର ଗାରିମା ମଧ ଦେଇ। ଶେଷରେ ସେ ଗୋଟିଏ ଜାଗାରେ ଥମ୍ କରିଯିବ। ଯେଉଁଠାରେ କହି କହି ଭାଷା ଅନଟନବୋଧ ହେବାର କଥା। ଏ ଆକସ୍ମିକ ନିରବତା ବାଚାଳତା ଅପେକ୍ଷା ଅଧିକ ମୁଖର ହୋଇଉଠେ।' (ଭଗବତୀ ସଞ୍ଚୟନ ପୃ ୯୪)। ପାଠକେ 'ଶିକାର' ଗଳ୍ପର ଉପସଂହାରକୁ ଲକ୍ଷ୍ୟ କରନ୍ତୁ। ତାପରେ ଆଉ ଅଧିକ ଗୋଟିଏ ବାକ୍ୟ ଗାଳ୍ପିକ ଲେଖିବା ଉଚିତ ଥିଲା କି ? ଏ ଗଳ୍ପଟି ସେଇଠି ଶେଷ ହେବା ପରେ ଆଜି ଯାଏଁ ମୁଖର ହୋଇ ଆମକୁ ଆମର କର୍ତ୍ତବ୍ୟ ବିଷୟରେ ବୁଝାଇ ଚାଲିନାହିଁକି ?

ଭଗବତୀ ବାବୁ ମଧ୍ୟ କେତୋଟି ରୋମାଣ୍ଟିକ୍ ଗଳ୍ପ ଲେଖିଛନ୍ତି । ଏହି ଆଲୋକରେ ଆମ୍ଭେ 'ଆରମ୍ଭ ଓ ଶେଷ' ଗଳ୍ପକୁ ବିଶ୍ଳେଷଣ କରିପାରୁ । ଯୌବନର ମାଦକତାରେ ଗ୍ରାମ୍ୟଯୁବକ ଧରମା ନିଜ ଗାଁର ମଣିନାମ୍ନୀ ଝିଅକୁ ଭଲ ପାଇ ବସେ ଓ ତାକୁ ବିବାହ କରିବାକୁ ସ୍ଥିର କରେ । ସେତିକି ବେଳେ ସହରରେ ନୂଆ କୋଠା ତୋଳିଥିବା ଗାଁ ଜମିଦାରର ବଗିଚାରେ ମାଳି କାର୍ଯ୍ୟ କରିବା ପାଇଁ ଧରମାକୁ ଡାକରା ଆସେ । ସେଠି 'ଚନ୍ଦ' ନାମ୍ନୀ ସହରୀ ତରୁଣୀ (ଯିଏ କି ଜମିଦାର ଅନ୍ଦର ମହଲର ଜଣେ ତନ୍ୱୀ ପରିଚାରିକା) ପ୍ରତି ଧରମା ଆକୃଷ୍ଟ ହୁଏ । ସେପଟେ ଚନ୍ଦକୁ ପତ୍ନୀରୂପେ ପାଇବାକୁ ଚାହେଁ ଜମିଦାରଙ୍କ ବିଶ୍ୱସ୍ତ ଚାକର ସିଧିଆ । ସିଧିଆର ଦେହ ଛୁଇଁ ତାକୁ ବିବାହ ହେବାକୁ ଯଦିଓ ଚନ୍ଦ ପ୍ରତିଜ୍ଞା କରିଥାଏ, ତଥାପି ମଝେ ମଝେ ସେ ଚାଲିଆସେ ଧରମାର କୋଠରୀକୁ । ଦିନେ ସନ୍ଧ୍ୟାବେଳେ ଧରମା ସହ ଗଳ୍ପକରୁଥିବା ବେଳେ ଚନ୍ଦ ସିଧିଆ ପାଖରେ ଧରାପଡ଼େ । କିନ୍ତୁ ଜମିଦାର ପାଖରେ ଧରମା ଚନ୍ଦକୁ ବଳାତ୍କାର କରୁଥିବାର କପୋଳ କଳ୍ପିତ ଖବର ଦିଏ ସିଧିଆ । ଧରମା ଚାକିରୀରୁ ବରଖାସ୍ତ ହୋଇ ଗାଁକୁ ଫେରି ଦେଖେ ତାର ପୂର୍ବତନ ପ୍ରେମିକା ମଣି ଅନ୍ୟଗ୍ରାମରେ ବିବାହ କରିସାରିଛି । ଧରମା ଚାରିପଟର ପୃଥିବୀ ଶିଘ୍ର ବଦଳିଯାଉଥିବାର ସେ ଅନୁଭବ କରେ । ପରିବର୍ତ୍ତନ ଏତେ ଜୋର ଆସିଛି ଯେ ତାହାର ତୋଡ଼ରେ ଧରମାର ଗାଉଁଲି ଘରଟି ଭାଙ୍ଗି ଯାଇଛି । ଘର ଚାରିପାଖର ବଗିଚା ନାରଖାର ହୋଇଯାଇଛି । ତାର ବୁଢ଼ୀ ମା ଇହ ଜଗତରୁ ବିଦାୟ ନେଇଯାଇଛି- ପରିବର୍ତ୍ତନର ସ୍ରୋତ ସମସ୍ତଙ୍କୁ ଖଣ୍ଡିଆ ଖାବରା କରିଦେଇଛି । ଧରମା କିନ୍ତୁ ପଛରେ ପଡ଼ିଯାଇଛି ।

'ବଞ୍ଚିତା' ଗଳ୍ପଟି ଅକାଳ ବୈଧବ୍ୟ ବରିଥିବା ଅନିନ୍ଦ୍ୟ ସୁନ୍ଦରୀର ଦୁଃଖପୂର୍ଣ୍ଣ ଜୀବନ ଯାତ୍ରାର ଜଳଛବି କହିଲେ ଅତ୍ୟୁକ୍ତି ହେବ ନାହିଁ । ସମାଜ ସଧବା ନାରୀକୁ ଆଦର କରେ । ତାକୁ ସୌଭାଗ୍ୟ ଓ ଶ୍ରୀର ପ୍ରତୀକ ବୋଲି କହେ । 'ବଞ୍ଚିତା'ର ନାୟିକାର ରୂପ ସୌଷ୍ଠବ ଅତୁଳନୀୟ ହେଲେ ମଧ୍ୟ ସେ ତାହାର ରୂପ ଗୌରବରୁ ବଞ୍ଚିତା ହୋଇ ରହିଥାଏ । ସୌନ୍ଦର୍ଯ୍ୟ ଲାଗି ତାର ପ୍ରଶଂସା ହୁଏ ନାହିଁ । ବରଂ ହୁଏ ଭର୍ତ୍ସନା । ତାର ବାରମାସରେ ଅଗଣିତଥର ହୁଏ ନିର୍ଜଳା ଏକାଦଶୀ । 'ବଞ୍ଚିତା' ଗଳ୍ପରେ ଭଗବତୀ ବାବୁ ଗୋଟାଏ ଦୁଃଖିନୀ ଜୀବନର ଜୀବନ୍ତ ସ୍କେଚ୍ ଅଙ୍କନ କରିଛନ୍ତି । ଆଭାସଗଳ୍ପ ହିସାବରେ ଏ ଗଳ୍ପକୁ ଆଲୋଚନାର ପରିସରଭୁକ୍ତ କରାଯାଇପାରେ । କଥାବସ୍ତୁ ଓ ପ୍ରକାଶନ ଭଙ୍ଗୀରେ ଆଭାସ ଗଳ୍ପର ସକଳ ଲକ୍ଷଣ ଫୁଟି ଉଠିବାର ଆମେ ଦେଖୁ । 'ବଞ୍ଚିତା'ରେ ନାରୀର ଦୁର୍ଭାଗ୍ୟକୁ ଚିତ୍ରଣ କରି ଭଗବନ୍ତୀ ବାବୁ ଗଳ୍ପ ଶେଷରେ ଚୁପ୍ ରହିଛନ୍ତି । ମାତ୍ର ବୈଧବ୍ୟର ଯନ୍ତ୍ରଣାମୟ ଜୀବନକୁ ଏକ ସଂଗ୍ରାମ ରୂପେ ଗ୍ରହଣ କରିଛି 'ନୀଳମାଷ୍ଟ୍ରାଣୀ' ପରବର୍ତ୍ତୀ ଯୁଗାନ୍ତକାରୀ କଥାକାର ଗୋଦାବରୀଶ ମହାପାତ୍ରଙ୍କ ଗଳ୍ପରେ । ଭଗବତୀ ବାବୁଙ୍କ ସମସାମୟିକ ହିନ୍ଦୀ ଲେଖକ ପ୍ରେମଚନ୍ଦଙ୍କ 'ଭଗବାନଙ୍କ ଘର' ଗଳ୍ପର ନାୟିକା ଦୁଃଖିନୀ ସୁଖିଆଘରେ ହାତ ଗୋଡ଼ ଜାକି ଚୁପ୍ କରି ବସି ରହିନାହିଁ ସେ ନିଜ ଜୀବନର ସଙ୍କଟକୁ ସାମନା କରିଛି ଓ ପରିସ୍ଥିତି ପରିବେଶ ସହ ସଂଗ୍ରାମ କରିଛି । ନିଜ ରୋଗ ଗ୍ରସ୍ତ ସନ୍ତାନକୁ ଗାଁ ଠାକୁରଙ୍କ ପାଦତଳେ ତାର ଆରୋଗ୍ୟ କାମନା କରି ଥରୁଟିଏ ଲୁଟାଇଦେବାପାଇଁ ଦଳିତ ଜାତିର ଦୁଃଖିନୀ ନାରୀ ସୁଖିଆ ମନ୍ଦିରର ପୂଜାରୀକୁ ବହୁ

ଅନୁନୟ ଓ ବିନୟ କରିଛି । ନିସ୍ଫଳ ହୋଇ ନିଶାର୍ଦ୍ଧ ଘୋର ରାତିରେ ଠାକୁର ମନ୍ଦିର ଦୁଆର ଭାଙ୍ଗି ରୋଗଗ୍ରସ୍ତ ସନ୍ତାନକୁ ନେଇ ସେ ମନ୍ଦିର ଭିତରକୁ ପଶିଛି । ପ୍ରଚଳିତ ସଂକୀର୍ଣ୍ଣ ମାନସିକତା, ଜାତିଆଣ ଭେଦଭାବ, ଅସ୍ପୃଶ୍ୟତା ବିରୋଧରେ ସୁଖିଆ ପ୍ରତିବାଦ କରି ପାରିଥିବାବେଳେ 'ବସ୍ତୁତା'ର ନାୟିକା ସେପରି ପ୍ରତିବାଦ କରିପାରିନାହିଁ । କିନ୍ତୁ 'ବସ୍ତୁତା' ତାହାର ସହିଷ୍ଣୁତା ଦେଖାଇ ନୀଳମାଷ୍ଟ୍ରାଣୀ ଚରିତ୍ରର ଆବିର୍ଭାବ ନିମନ୍ତେ ଅନୁକୂଳ ଆବହାୱା ସୃଷ୍ଟି କରିଛି ଓ ଗୋଦାବରୀଶଙ୍କୁ ଆଉ ପାଦେ ଆଗକୁ ଯାଇ ବିପ୍ଳବିନୀ ନାରୀ ଚରିତ୍ରଟିଏ ସୃଷ୍ଟି କରିବାକୁ ପ୍ରେରଣା ଯୋଗାଇଛି ।

'ମଜଲିସ୍' ଗଳ୍ପରେ ଭଗବତୀ ବାବୁ ଗୋଟିଏ ଗ୍ରାମ୍ୟ ଗୁଲିଖଟିର ଜୀବନ୍ତ ଦୃଶ୍ୟ ଅବତାରଣା କରିଛନ୍ତି । କଳ୍ପନା ପ୍ରବଣତା ଅପେକ୍ଷା ବାସ୍ତବ ଜ୍ଞାନ ଯେ ଅଧିକ ଉନ୍ନତ ମାନର ଏହା ସେ ତିନୋଟି ଛୋଟ ଛୋଟ କଥନିକା ମାଧ୍ୟମରେ ପ୍ରତିପାଦନ କରିଛନ୍ତି । ପ୍ରଥମ ଉପକାହାଣୀଟିରେ ଜଣେ ପାଦ୍ରୀଙ୍କ କଞ୍ଚା ପଣସ ଖାଇବା ଓ ତାହାର ଅଠାରେ ତାଙ୍କ ଦାଢ଼ୀ ପେଣ୍ଡା ହୋଇଯିବାରୁ ତାହା ଚାଞ୍ଛିବାର ଉପାଖ୍ୟାନ ବର୍ଣ୍ଣିତ । ଦ୍ୱିତୀୟ ଉପକାହାଣୀଟିରେ ପାରସ୍ୟ ରାଜାଙ୍କ ଭାରତୀୟ ଆମ୍ବ ଖାଇବାର ଦୃଶ୍ୟ ହାସ୍ୟକର ପରିସ୍ଥିତି ସୃଷ୍ଟି ଦ୍ୱାରା ବର୍ଣ୍ଣିତ । ତୃତୀୟ ଉପକାହାଣୀରେ ପଣ୍ଡିତ ମିଶ୍ରଙ୍କର ଏକାଥରରେ ଛଅ ଶଗଡ଼ ବାଇଗଣ କିଣା ଓ ଘରେ ସ୍ତ୍ରୀଙ୍କର ପରିବାପତ୍ର ଆଣିବାର ଦାବୀ ପୂରଣ କରି ହାସ୍ୟଦୀପ୍ତ ଦୃଶ୍ୟ ବର୍ଣ୍ଣିତ । ଏସବୁ ଚିତ୍ର ରୁଷିୟ କଥାକାର ଟଲଷ୍ଟୟଙ୍କ 'ସୁରଟର କଫି ହାଉସ' ରେ ବିଶ୍ୱର ବିଭିନ୍ନ ପ୍ରାନ୍ତରରୁ ଆସିଥିବା ପର୍ଯ୍ୟଟକ, ନାବିକ, ଧର୍ମଯାଜକ ଭଗବାନଙ୍କ ଅସ୍ତିତ୍ୱ ଓ ସୂର୍ଯ୍ୟଙ୍କ ସ୍ଥିତି ବିଷୟରେ ଗଳ୍ପ କରିବାର ଦୃଶ୍ୟ ସହିତ ପ୍ରାୟତଃ ସମାନ । ଟଲଷ୍ଟୟ ଜଣେ ଦାର୍ଶନିକ ତଥା ଜୀବନ ବିଦ୍ୟାଳୟର ପୋଖତ ଛାତ୍ର ହୋଇଥିବାରୁ 'କଫି ହାଉସ'ର ବିଭିନ୍ନ ଉପକାହାଣୀରେ ଯେଉଁ ଗଭୀର ଜ୍ଞାନ ଓ ଦାର୍ଶନିକତାର ଚିତ୍ର ଦେଇପାରିଛନ୍ତି, ସେ ତୁଳନାରେ ତରୁଣ ଗାଳ୍ପିକ ଭଗବତୀ ସେ ଦିଗକୁ ସ୍ପର୍ଶ ସୁଦ୍ଧା କରିନାହାନ୍ତି । ମାତ୍ର ଗାଳ୍ପିକ ଭଗବତୀ ସାଧାରଣ କଥାରେ ବିଦ୍ୱାନ ଓ ଗୁଣଗ୍ରାହୀ ଲୋକଙ୍କ ମୂର୍ଖତା ଓ ଅଜ୍ଞତା ପ୍ରଦର୍ଶନକୁ ମୁଖ୍ୟ ପ୍ରସଙ୍ଗ କରି ଗୁଲି ଖଟିର ତର୍ଜମାରେ ତାହାକୁ ତୀବ୍ର ବ୍ୟଙ୍ଗ କରିଛନ୍ତି ।

'ମୃତ୍ୟୁର ବିବେଚନା' ଏକ ମିଳନାନ୍ତକ ଗଳ୍ପ । ମାଧବ ସଂସାର କରିଛି । ମାତ୍ର ବେକାରୀ ଜୀବନରେ ସ୍ତ୍ରୀ ଓ ପୁତ୍ରକୁ ଦୁଇ ଓଳି ଦୁଇ ମୁଠା ଖାଦ୍ୟ ସେ ଯୋଗାଇ ପାରିନାହିଁ । ଦାରିଦ୍ର୍ୟର କଷାଘାତ ସହ୍ୟ କରିନପାରି ସେ ଆତ୍ମହତ୍ୟାପାଇଁ ଜଣେ ସାଙ୍ଗଙ୍କ ପରୀକ୍ଷାଗାରରୁ ଆଣିଥିବା ପଟାସିୟମ ସାଇନାଇଡ୍ ପିଇ ମରିଯିବାପାଇଁ ଚେଷ୍ଟା କରିଛି । ମାତ୍ର ସେ ମରିନାହିଁ । କାରଣ ବନ୍ଧୁ ଜଣକ ପଟାସିୟମ ବ୍ରୋମାଇଡ୍ ଦେଇ ମାଧବକୁ ଠକାଇ ଦେଇଥିଲେ । ଏକାନ୍ତରେ ଘରେ ଆତ୍ମହତ୍ୟା କରୁଥିବାବେଳେ ସ୍ତ୍ରୀ ରମା ଓ ପୁତ୍ର ଥିଲେ ପଡ଼ିଶା ଘରେ । ପରେ ପରେ ଶିକ୍ଷକତା ଚାକିରୀର ନିଯୁକ୍ତି ପତ୍ର ପାଇ ରମାର ପରିବାର ଆନନ୍ଦରେ ମଜଗୁଲ ହୋଇ ଉଠିଛି । ଏହି ଗଳ୍ପରେ ପୁଞ୍ଜିବାଦୀ ସମାଜରେ ଜୀବନ ଯାତ୍ରାର ପ୍ରତିକ୍ଷେତ୍ରରେ ସଙ୍ଗୀନ ପ୍ରତିଯୋଗିତା ଚାଲିଥିବାର ଦେଖାଇଛନ୍ତି । ବେକାରୀ ଦାଉରେ ପିଷ୍ଟ ମାଧବର ଭାବନା ମଧ୍ୟରେ ସାଧାରଣ ନିଷ୍ପେଷିତ ମଣିଷର

ଚିନ୍ତାଭାବନା ଏ ଗଳ୍ପର ସୌର୍ଯ୍ୟକୁ ଅନେକ ମାତ୍ରାରେ ବଢ଼ାଇ ଦେଇଛି। ମାଧବ ଭାବୁଛି – 'ଜୀବନଟା ଯାକ କେବଳ ଲାଞ୍ଛନା, ବିଦ୍ରୁପ, ଉପହାସ। ଜୀବନର ଦୁର୍ବହ ଭାରଟା ବହି ସେ କୌଣସି ମତେ ଏତେ ଦୂର ଆସିଛନ୍ତି। କୌଣସ ଠାରେ ପ୍ରତିଷ୍ଠା ନାହିଁ। ପ୍ରତିପଦକ୍ଷେପରେ କେବଳ ହତାଶା, ହାହାକାର। ଜୀବନ ସହିତ ସବୁବେଳେ କେବଳ ରଫା କରିବା ତାଙ୍କର ଅଭ୍ୟାସ। ପ୍ରତିପଦକ୍ଷେପରେ ନିଜତ୍ୱକୁ ଏପରି ଭାବରେ ପରାସ୍ତ କରି, ଅପମାନିତ କରି, କେତେଦିନ ଆଉ ଚଳିବ। ଆଉ ଆପୋଷରେ ଜୀବନ ସହିତ ଜଳିହେବ ନାହିଁ। (ସଞ୍ଚୟନ-ପୃ ୫୧)

ଅନ୍ୟପକ୍ଷରେ 'ଝଡ଼' ଏକ ଦୁଃଖାନ୍ତକ ଗଳ୍ପ। ଧିବର ଓ ତାର ପତ୍ନୀ ତାରାର ଅମର ପ୍ରେମ ଏ ଗଳ୍ପର ଉପଜୀବ୍ୟ। ଗଙ୍ଗାରେ ନାଆ ମେଲି ମାଛ ଧରିବା ଥିଲା ଧିବରର ନିତ୍ୟ ନୈମିତ୍ତିକ କାର୍ଯ୍ୟ। ଏକ ଭାଦ୍ର ପୂର୍ଣ୍ଣିମାରେ ସେ ପତ୍ନୀ ତାରାକୁ ସାଙ୍ଗରେ ନେଇ ଗଙ୍ଗାରେ ନୌବିହାର ଓ ତା ସହେ ସଙ୍ଗେ ମାଛ ଧରିବାକୁ ଯାଏ। ଅଚାନକ ଏକ ଝଡ଼ ବାଦଲ ମଧ୍ୟରେ ଆକ୍ରାନ୍ତ ହୋଇ ନୌକାଟି ବୁଡ଼ିଯାଏ ଓ ତାରା ନିଜ ସ୍ୱାମୀର ଜୀବନ ରକ୍ଷା କରିବାକୁ ଯାଇ ଝଡ଼ ବିକ୍ଷୁବ୍ଧ ଗଙ୍ଗାରେ ଭାସିଯାଏ।

କଥାକାର ଭଗବତୀ ଚରଣଙ୍କ ଅନ୍ୟଏକ ଅନବଦ୍ୟ ସୃଷ୍ଟି ହେଉଛି 'ଜଙ୍ଗଲୀ'। ଏକ ବନଦସ୍ୟୁର ପାଳିତ ପୁତ୍ରଥିଲା ଏଇ ଜଙ୍ଗଲୀ ମଣିଷଟି। ଶବରକନ୍ୟାଟି ଆସି ତା ଗୁମ୍ଫାରେ ଆଶ୍ରୟ ଗ୍ରହଣ ପୂର୍ବରୁ ସେ ପ୍ରେମ କରୁଥିଲା ବନର ମୃଗିଣୀଟି ସହ। ଶବରକନ୍ୟା ସହିତ ତାର ପ୍ରେମ ସମ୍ପର୍କ ସ୍ଥାପନ ହେବା ପରେ ମୃଗିଣୀ ଓ ଶବରକନ୍ୟା ମଧ୍ୟରେ ସପତ୍ନୀବିବାଦ ଲାଗିଲା। ଶବରକନ୍ୟା ତାର ସଭ୍ୟ ସମାଜର ଆଚାର ବ୍ୟବହାର ଜଙ୍ଗଲୀକୁ ଶିକ୍ଷା ଦେଇ ତାହା ମଧ୍ୟରେ ମାନବୀୟ ସମ୍ବେଦନା ସୃଷ୍ଟି କଲା। ଶେଷରେ ଶବର ଦ୍ୱାରା ଜଙ୍ଗଲୀ ନିହତ ହେଲା। ଜଙ୍ଗଲୀର ଶବକୁ ଶବର କନ୍ୟା ସିନା ଛାଡ଼ି ଚାଲିଗଲା କିନ୍ତୁ ଗଲାନାହିଁ ତାର ଶାଶ୍ୱତ ପ୍ରେମିକା ହରିଣିଟି। ଏ ଗଳ୍ପରେ ଭଗବତୀ ବାବୁ ଫ୍ରୟେଡୀୟ ମନୋସ୍ତତ୍ତ୍ୱର ସାମାନ୍ୟ ପର୍ଯ୍ୟାଲୋଚନ କରିବାକୁ ଚେଷ୍ଟା କରିଛନ୍ତି। ଆରଣ୍ୟକ ସଭ୍ୟତାର ପ୍ରେମ ଥିଲା ଶାଶ୍ୱତ ପ୍ରେମ। ପିତୃକେନ୍ଦ୍ରିକ ସମାଜର ପ୍ରେମ କିନ୍ତୁ ଥିଲା ଆପଣା ସ୍ୱାର୍ଥ ସର୍ବସ୍ୱ। ଏହି ତୁଳନାତ୍ମକ ବିଚାର ଏ ଗଳ୍ପରେ ଭଗବତୀ ପ୍ରଦର୍ଶନ କରିଛନ୍ତି।

ଭଗବତୀ ବାବୁ ଫକୀରମୋହନୀୟ ବାସ୍ତବତାବାଦର ଉତ୍ତରଦାୟଦ ଥିଲେ। ସାଧାରଣ ବର୍ଣ୍ଣନା ମେଳରେ ବସ୍ତୁନିଷ୍ଠ ବର୍ଣ୍ଣନା ତାଙ୍କ ଗଳ୍ପର ରୂପଶ୍ରୀକୁ ଦୀପ୍ତ କରିଥିବାବେଳେ ସ୍ଥଳବିଶେଷରେ ତାହା ରସାଳ ହୋଇ ଉଠିଛି। 'ମିଶ୍ରଙ୍କ କୋପ' ଗଳ୍ପରେ ପୁତ୍ର କୁଳମଣିକୁ ମିଶ୍ର ଓ ମିଶ୍ରାଣୀ ବହୁତ ସ୍ନେହ ଆଦର କରି ପିଲାଟି ଦିନରୁ ବିପଥଗାମୀ କରିଦେଇଛନ୍ତି। କୁଳମଣି ପ୍ରତି ମାତାଙ୍କ ବାତ୍ସଲ୍ୟ ବର୍ଣ୍ଣନାରେ ଏହି ଫକୀରମୋହନୀୟ ବର୍ଣ୍ଣନା ଛଟା ଫୁଟିଉଠିଥିବାର ଦେଖାଯାଏ। ବର୍ଣ୍ଣନାଟିକୁ ଏଠାରେ ଲକ୍ଷ୍ୟ କରାଯାଉ- 'ମିଶ୍ରାଣୀ ଶିଶୁର ସର୍ବାଙ୍ଗରେ ହଳଦୀ ବୋଳି, ତାଳୁରେ ଏପରି ଅତିରିକ୍ତ ତେଲ ମାଲିସ କରିଥାନ୍ତି ଯେ କପାଳ, ଗାଲ ଏବଂ ପଛପାଖ ବେକ ପର୍ଯ୍ୟନ୍ତ ତେଲ ବୋହି ଆସିଥାଏ। ଆଖିପତାରେ ଗୋଟିଏ ଆଙ୍ଗୁଳି ମୋଟାର କଜଳ ଗାର ଦୁଇ କାନ ପର୍ଯ୍ୟନ୍ତ ଟାଣି ଦେଇଥାନ୍ତି। ଏବଂ ଲମ୍ବା ଏକ କଜଳ ଗାର ଶିଶୁର କପାଳରେ ଝଟକୁ ଥାଏ। ମିଶ୍ରେ ପୁଅକୁ ଖଣ୍ଡେ ଛିଟ କନା

ପିନ୍ଧାଇ ଦେଇ କାନ୍ଧରେ ବସାଇ ଯାତ୍ରା ଦେଖାଇ ନିଅନ୍ତି। (ସଞ୍ଚୟନ ପୃ ୨୬)

ଆଲୋଚକମାନେ ଓଡ଼ିଆ କଥାସାହିତ୍ୟର ପ୍ରଥମ ପାହାଚର ନିର୍ମାତାରୂପେ ଫକୀରମୋହନଙ୍କୁ ଚିହ୍ନିତ କରିଥାନ୍ତି। ଭଗବତୀ ଚରଣ ମାତ୍ର ବାରଟି ଗଳ୍ପ ଲେଖି, ବିଶେଷତଃ 'ଶିକାର' ପରି ସାମାଜିକ ବାସ୍ତବତା ଉପାଦାନ ଥିବା ବିପ୍ଳବୀ ଗଳ୍ପଟିଏ ଲେଖି ଜନବାଦୀ ସାହିତ୍ୟ ରାସ୍ତାରେ ନିର୍ମାଣ କଲେ ଦ୍ୱିତୀୟ ପାହାଚ। ଭଗବତୀଙ୍କ କଥାସାହିତ୍ୟର ଉତ୍ତରଦାୟଦ ହେଲେ ଗାଳ୍ପିକ ଗୋଦାବରୀଶ ମହାପାତ୍ର ଓ ପ୍ରାଣବନ୍ଧୁ କର। ଆଜିର କଥା ସାହିତ୍ୟରେ ଯେଉଁ ହେତୁବାଦୀ ଓ ସାମାଜିକ ଚେତନାର ସ୍ଫୁରଣ ଘଟିଛି, ପ୍ରକୃତରେ ତା ଭିତରେ ଆମେ ଦେଖୁ ଭଗବତୀଙ୍କ ଉପସ୍ଥିତି।



# ଭଗବତୀ ପାଣିଗ୍ରାହୀଙ୍କ ସାହିତ୍ୟ ଭାବନା

ଭଗବତୀ ଚରଣ ପାଣିଗ୍ରାହୀ ଥିଲେ କବି କୀଟ୍ସ୍, କବି ସୁକାନ୍ତ ଭଟ୍ଟାଚାର୍ଯ୍ୟ, ଧର୍ମଯାଜକ ବିବେକାନନ୍ଦ, ଗାଳ୍ପିକ କହ୍ନେଇଲାଲଙ୍କ ପରି ସ୍ୱଳ୍ପାୟୁ। ମାତ୍ର ୩୮ ବର୍ଷ ବୟସରେ ସେ ଡିସେଣ୍ଟ୍ରି ରୋଗରେ ପ୍ରାଣତ୍ୟାଗ କରିଥିଲେ। ୧୯୪୩ ମସିହାରେ ଗଞ୍ଜାମ ଜିଲ୍ଲାକୁ ସେ ଯାଇଥିଲେ ଏକ ଜନସେବୀ ଦଳ ଧରି ଦୁର୍ଭିକ୍ଷ ପ୍ରପୀଡ଼ିତ ଲୋକଙ୍କ ସେବା କରିବା ପାଇଁ। ଛତ୍ରପୁର ରେଲଷ୍ଟେସନରେ ସେ ଭୋକପେଟରେ ବାସି ବରା କିଣି ଖାଇଥିଲେ। ତାପରେ ତାଙ୍କୁ ଧରିଲା ଲାଲରକ୍ତ ଝାଡ଼ା। କଟକ ମେଡିକାଲ ସ୍କୁଲର ଚିକିତ୍ସକଙ୍କ ସକଳ ପ୍ରଯତ୍ନ ସତ୍ତ୍ୱେ ସେ ଭଲ ହେଲେ ନାହିଁ ଏବଂ ଇହଧାମ ତ୍ୟାଗ କଲେ।

ସ୍ୱଳ୍ପାୟୁ ହେଲେ ବି ଓଡ଼ିଶାରେ ସେ ରାଜନୀତି, ସମାଜସେବା, ଶ୍ରମିକ ସଙ୍ଗଠନ, କୃଷକ ଛାତ୍ର ସଙ୍ଗଠନ, ଗଡ଼ଜାତ ଅଞ୍ଚଳରେ ପ୍ରଜାମଣ୍ଡଳ ସ୍ୱାଧୀନତା ସଂଗ୍ରାମ ତଥା ସାହିତ୍ୟ ସଙ୍ଗଠନ ଓ ନିଜସ୍ୱ ସାହିତ୍ୟ ସାଧନା କ୍ଷେତ୍ରରେ ଅନେକ ମୌଳିକ ଅବଦାନ ରଖିଯାଇଛନ୍ତି। କଥାକାର ପ୍ରେମଚନ୍ଦଙ୍କ ନେତୃତ୍ୱରେ ୧୯୩୭ ମସିହାରେ ନିଖିଳ ଭାରତର 'ପ୍ରଗତିଶୀଳ ଲେଖକ ସଂଘ' ଗଠନ ହେବାର ବର୍ଷେ ଆଗରୁ ସେ ୧୯୩୫ ଅକ୍ଟୋବର -ନଭେମ୍ବର ମାସରେ କଟକ ଠାରେ ଗଠନ କରିଥିଲେ 'ନବଯୁଗ ସାହିତ୍ୟ ସଂସଦ'। ନବଯୁଗ ସାହିତ୍ୟ ସଂସଦର ଏ ଅଧିବେଶନରେ ପ୍ରବନ୍ଧ ପାଠ କରିଥିଲେ ଗୁରୁଚରଣ ପଟ୍ଟନାୟକ, ମୋହିନୀ ମୋହନ ସେନାପତି ପ୍ରମୁଖ। ଓ ଏହି ଠାରୁ ହିଁ ଓଡ଼ିଆ ସାହିତ୍ୟରେ ଏହା ପ୍ରଗତି ଯୁଗର ସୂତ୍ରପାତ କଲା। 'ଆଧୁନିକ' ଏ ସାହିତ୍ୟ ସଂସଦର ମୁଖପତ୍ର ରୂପେ କେତେମାସ ପରେ ତାହାର ସୃଷ୍ଟିଶୀଳ ଯାତ୍ରା ଆରମ୍ଭ କଲା।

ଭଗବତୀ ବାବୁ ଓଡ଼ିଆ ସାହିତ୍ୟର ନବଯୁଗ ଅଧ୍ୟାୟକୁ ପ୍ରଗତିଶୀଳ ସାହିତ୍ୟ ଆନ୍ଦୋଳନ ବୋଲି ନାମକରଣ ନକରି ବରଂ ତାହାକୁ ଆଧୁନିକ ସାହିତ୍ୟିକ ଆନ୍ଦୋଳନ ବୋଲି କହୁଥିଲେ। ଆଧୁନିକତାର ଅର୍ଥ ସମକାଳୀନତା ନୁହେଁ ବୋଲି ସେତେବେଳକୁ ୟୁରୋପୀୟ ସାହିତ୍ୟରେ ପ୍ରତିପାଦିତ ହୋଇସାରିଥାଏ। ୟୁରୋପରେ ଯେଉଁମାନେ ଗତାନୁଗତିକ ଜୀବନ ପ୍ରବାହ ଦ୍ୱାରା ଉଦ୍‌ବୁଦ୍ଧ ହୋଇ ବା ବିଜ୍ଞାନର ଜୟଯାତ୍ରା ଦ୍ୱାରା ପ୍ରଭାବିତ ହୋଇ ସାହିତ୍ୟ ରଚନା କରୁଥିଲେ ସେମାନେ ସୃଷ୍ଟି କରୁଥିଲେ ସମକାଳୀନ ସାହିତ୍ୟ। ଇ.ଏମ୍. ଫଷ୍ଟର, ଚର୍ଚ୍ଚିଲ, ଏଚ୍.ଜି.ୱେଲ୍ସ ଆଦି ସେହି ଶ୍ରେଣୀୟ ସାହିତ୍ୟିକ ଥିଲେ। ଯେଉଁମାନେ ନିଜ ଚିନ୍ତାଚେତନାରେ ଆଧୁନିକ ଯନ୍ତ୍ରକ୍ଲିଷ୍ଟ ଜୀବନର ଛବି ଦେଖି ପାରୁଥିଲେ ଓ ଅନୁଭବ କରିପାରୁଥିଲେ ହତାଶା ଦୈନ୍ୟ ଅସାରତା; ଯେଉଁମାନେ ନିଜ ସମୟର ଅନ୍ତର୍ଦ୍ୱନ୍ଦ୍ୱକୁ ସ୍ପର୍ଶ କରିଥିଲେ, ଏକ ପ୍ରଳୟ ଗର୍ଭକୁ ବିଶ୍ୱ ଠେଲି

ହୋଇଯାଉଥିବାର ଯେଉଁମାନେ ଅନୁଭବ କରୁଥିଲେ (ଯଥା ଏଲିଅଟ୍ , ପାଉଣ୍ଡ, ଭରଜିନିଆ ଓଲଫ୍) ସେହିମାନେ ଥିଲେ ଆଧୁନିକ। ଆଧୁନିକ ସାହିତ୍ୟକୁ ଡାରଉଇନଙ୍କ ବିବର୍ତ୍ତନବାଦ, ଫ୍ରୟେଡ୍‌ଙ୍କ ମନସ୍ତାତ୍ତ୍ୱିକ ଚିନ୍ତନ, କାର୍ଲମାର୍କସ୍‌ଙ୍କ ଡାଏଲେକଟିକ୍ୟାଲ୍ ବସ୍ତୁବାଦୀ ଚିନ୍ତନ ବିଶେଷ ପ୍ରଭାବିତ କରିଥିଲା। ଭଗବତୀବାବୁ ବିଂଶ ଶତକର ପ୍ରଥମ ଦଶକର ଏଇ ଆଧୁନିକ ସାହିତ୍ୟିକଙ୍କୁ ତଥା ଦାର୍ଶନିକଙ୍କ ଦୃଷ୍ଟିକୋଣ ବିଷୟରେ ବେଶ୍ ପଢ଼ିଥିଲେ ଓ ବିଶ୍ଳେଷଣ କରିଥିଲେ। ମାର୍କସ୍ ଓ ଫ୍ରୟେଡ୍‌ଙ୍କୁ ସେ ତନ୍ନତନ୍ନ କରି ପଢ଼ିଥିବାର ପ୍ରମାଣ ଦିଏ ତାଙ୍କ ସାହିତ୍ୟ ତଥା ସମାଜ ସମ୍ପର୍କରେ ବୈଜ୍ଞାନିକ ବିଶ୍ଳେଷଣର ଧାରା। ପରିବାରର ଗଠନ ସମ୍ପର୍କରେ କହିବାକୁ ଯାଇ ସେ ଯାହା ଲେଖିଥିଲେ, ସେ ବିଶ୍ଳେଷଣରେ ଉଭୟ ମାର୍କସୀୟ ଓ ଫ୍ରୟେଡ଼ୀୟ ଦର୍ଶନର ବୌଦ୍ଧିକ ମିଶ୍ରଣ ଘଟିଥିବାର ଆମେ ଲକ୍ଷ୍ୟ କରୁ। ସେ ଲେଖିଥିଲେ ପରିବାର ଦୁଇଟି ବିଷୟ ଉପରେ ପ୍ରତିଷ୍ଠିତ। ଗୋଟିଏ ଅର୍ଥନୀତିକ ସମ୍ପର୍କ - ଓ ଅନ୍ୟଟି ଯୌନ ପ୍ରବୃତ୍ତି। ପାରିବାରିକ ସ୍ନେହ, ପ୍ରୀତି, ମମତା ଆଦି ଏଇ ଦୁଇଟିରୁ ପ୍ରସୂତ। ପୁତ୍ର ରୋଜଗାର କଲାପରେ ପିତାଙ୍କୁ ଅର୍ଥସାହାଯ୍ୟ କରି ନଥିବାରୁ ପିତା ତା'ର ଜୀବିତାବସ୍ଥାରେ ଶୁଦ୍ଧ ଶ୍ରାଦ୍ଧ କରିଥିବାର ଶୁଣାଯାଇଛି। କେବଳ ଅର୍ଥ ସମ୍ପର୍କ ନୁହେଁ, ମାତା ପ୍ରତି ପୁତ୍ରର ଅନୁରକ୍ତି ଓ ପିତା ପ୍ରତି କନ୍ୟାର ସ୍ନେହାତିଶଯ୍ୟ ଯୌନ ପ୍ରବୃତ୍ତି ଉପରେ ହିଁ ପର୍ଯ୍ୟବସିତ। ଆମର ଏହି ପବିତ୍ର ଅନୁଷ୍ଠାନର ଅବସ୍ଥିତି ଅର୍ଥ ଏବଂ ଇନ୍ଦ୍ରିୟ ଉପରେ ନିର୍ଭର କରେ। ଯେଉଁଠାରେ ସ୍ତ୍ରୀ ନିଜର ସଂସ୍ଥାନ ଚଲାଇବାକୁ ସମର୍ଥ ସେଠାରେ ଛାଡ଼ପତ୍ରର ବ୍ୟବସ୍ଥା ଅଛି। ଯେଉଁଠାରେ ପୁତ୍ର ସ୍ୱାଧୀନ ଭାବରେ ଜୀବିକା ନିର୍ବାହ କରିବାର ସୁବିଧା ଅଛି, ସେଠାରେ ଯୁକ୍ତ ପରିବାର (Joint family) ପ୍ରଥା ନାହିଁ। (ଅର୍ଥ ଓ ପରିମାର୍ଥ, ଭଗବତୀ ସଞ୍ଚୟନ - ପୃ. ୧୧୧)

"ପୁଞ୍ଜିବାଦର ଶ୍ରେଷ୍ଠତମ ପର୍ଯ୍ୟାୟ ହେଉଛି ସାମ୍ରାଜ୍ୟବାଦ" ଗ୍ରନ୍ଥରେ ଲେନିନ୍ ସାମ୍ରାଜ୍ୟବାଦର ଉଦ୍‌ବର୍ତ୍ତନ, ଦୁନିଆକୁ ବଜାର ନିମନ୍ତେ ସାମ୍ରାଜ୍ୟବାଦୀଙ୍କ ଭାଗବଂଟୁଆରା · ଏଥି ନିମନ୍ତେ ସେମାନଙ୍କ ମଧ୍ୟରେ ଲାଗିଥିବା ଦ୍ୱନ୍ଦ୍ୱରୁ ବିଶ୍ୱ ଯୁଦ୍ଧର ଉଦ୍‌ଭବ ଇତ୍ୟାଦି ବିଷୟରେ ଚର୍ଚ୍ଚା ହୋଇଛି। ସାମ୍ରାଜ୍ୟବାଦ ବ୍ୟାପ୍ତ ହେବାର ଫିନାନ୍‌ସ କ୍ୟାପିଟାଲର ଭୂମିକା, କାର୍ଟେଲ ଚକ୍ରର ଭୂମିକା ପରି ଆର୍ଥନୀତିକ ଟେକ୍‌ନିକାଲିଟିର ବ୍ୟାଖ୍ୟା ଲେନିନ୍ କରିଯାଇଛନ୍ତି ଏ ବହିରେ। ଏସିଆର ଅନ୍ୟତମ ବୃହତ୍ ଦେଶ ଭାରତକୁ ବ୍ରିଟେନ ବା ଆଫ୍ରିକାର ଅନୁନ୍ନତ ଦେଶକୁ ବ୍ରିଟେନ୍ କିପରି ନିଜର ବଜାର ପ୍ରସାରଣ କରୁଛି ତାହାର ଅଧ୍ୟୟନ ଦେଇନାହାନ୍ତି ଲେନିନ୍। ଭଗବତ ଚରଣ କିନ୍ତୁ ତାହା ବାଖ୍ୟା କରି ତହିଁର ଭିତରି ତାତ୍ପର୍ଯ୍ୟ (ଅର୍ଥାତ୍-ସାମ୍ରାଜ୍ୟବାଦୀଙ୍କ ନ୍ୟସ୍ତସ୍ୱାର୍ଥୀ ଉଦ୍ଦେଶ୍ୟ) ବୁଝାଇଛନ୍ତି। ବ୍ରିଟିଶ ସାମ୍ରାଜ୍ୟବାଦକୁ ଏସୀୟ ଓ ଆଫ୍ରିକୀୟ ଦେଶଗୁଡ଼ିକ ଭିତରକୁ ଆଣିବା ପାଇଁ କିପରି ଖ୍ରୀଷ୍ଟ ଧର୍ମ ଓ ତଥାକଥିତ ଆଧୁନିକ ସଭ୍ୟତା ସକ୍ରିୟ ଭୂମିକା ଗ୍ରହଣ କରିଥିଲେ - ତାହାର ଏକ ବାସ୍ତବ ଚିତ୍ର ପ୍ରଦାନ କରିଛନ୍ତି ଭଗବତୀ ଚରଣ। "ଆଫ୍ରିକାର ଅସଭ୍ୟ ଲୋକଙ୍କୁ ଧର୍ମ ପ୍ରଚାର ଦ୍ୱାରା ସଭ୍ୟ କରିବାର ଯେଉଁ ପାରମାର୍ଥିକ ଉଦ୍ଦେଶ୍ୟର ବିଜ୍ଞାପନ ଦିଆଯାଇଥିଲା, ତାହା ପଛରେ ଆର୍ଥିକ ଉଦ୍ଦେଶ୍ୟ ଛପି ରହିଥିବାର ଶେଷରେ ଦେଖାଗଲା। ଆଫ୍ରିକାର ନିଗ୍ରୋ କୌପିନବନ୍ତ ହୋଇ ରହିଥିଲା। ସେ ଖ୍ରୀଷ୍ଟିୟାନ୍ ହୋଇ ସଭ୍ୟ ହେଲେ ଅଧିକ ବସ୍ତ୍ର ବ୍ୟବହାର କରିବ। ମାଞ୍ଚେଷ୍ଟର କାରଖାନା ପାଇଁ

ନୂତନ ବଜାର ଖୋଲିଯିବ, ଏଇ ଉଦ୍ଦେଶ୍ୟରେ ବହୁ ଅର୍ଥ ବ୍ୟୟ କରି ଇଂଲଣ୍ଡରୁ ପ୍ରଚାରକ ଦଳ ପଠାଯାଇଥିଲା। ଅସଭ୍ୟକୁ ସଭ୍ୟ କରିବା ଏହାର ମୁଖ୍ୟ ଭିତିରି ଉଦ୍ଦେଶ୍ୟ ଥିଲା।"

(ଭଗବତୀ ସଞ୍ଚୟନ ପୃ ୧୦୪)

ଇଂରେଜ ଶାସନାଧୀନରେ ଥିବା ଭାରତୀୟଙ୍କ ମନସ୍ତତ୍ୱ ଓ ଚାଲିଚଳନକୁ ବାଖ୍ୟା କରି ସେମାନେ ଧର୍ମର ବୋଲକରା ହୋଇ କିପରି ସାମ୍ରାଜ୍ୟବାଦୀଙ୍କ କ୍ରୀତଦାସ ପାଲଟି ଯାଇଛନ୍ତି- ଭଗବତୀବାବୁ ବ୍ୟାଖ୍ୟା କରିଛନ୍ତି। ଏ ପରିପ୍ରେକ୍ଷୀରେ ସେ ଲେଖିଛନ୍ତି- "ସମାଜକୁ ପୌରୁଷ ବିହୀନ କରିବା ପାଇଁ ଈଶ୍ୱର ଭକ୍ତି ଓ ଧର୍ମଭାବର ପ୍ରଚାର ପରି ଆଉ କିଛି ନାହିଁ। ଏହା କେବଳ ସମାଜର ଆର୍ଥିକ ଔଦାସୀନ୍ୟ ପାଇଁ ଦାୟୀ ନୁହେଁ, ସମାଜର କ୍ଲୀବତ୍ୱ ପାଇଁ ମଧ୍ୟ ଏହା ସାମରିକ ସରଞ୍ଜାମ ଅପେକ୍ଷା ଅଧିକ କାର୍ଯ୍ୟକରେ। ଶାସିତ ଯେତିକି ଭକ୍ତି ପରାୟଣ ହେବ, ଧର୍ମଭୀରୁ ହେବ, ଶାସକର ସେତିକି ସୁବିଧା। କାରଣ, ଈଶ୍ୱର ଭକ୍ତି ଶେଷରେ ପରିଣତ ହୁଏ ରାଜଭକ୍ତିରେ, ଧର୍ମ ଭୟ ପରିଣତ ହୁଏ ରାଜ-ଭୟରେ। ରାଜା ଏକ 'ମହତ ଦେବତା' ଶାସକ ରୂପରେ, ନର ଦେହୀ ନାରାୟଣ ରୂପରେ ପୂଜିତ ହୁଏ" (ଭଗବତୀ ସଞ୍ଚୟନ-ପୃ.୧୦୫)

ଭଗବତୀବାବୁ ପ୍ରଥମତଃ ଦେଶଭକ୍ତ ଥିଲେ, ଦ୍ୱିତୀୟତଃ ସେ ମଧ୍ୟ ଥିଲେ ଆନ୍ତର୍ଜାତୀୟତାବାଦୀ। ରୁଷିଆର କମ୍ୟୁନିଷ୍ଟ ଶାସକଙ୍କୁ ସେ ମାନବତାର ପୂଜାରୀ ବୋଲି କହୁଥିଲେ। ଲେନିନ୍‌ଙ୍କୁ ଶୋଷଣ କଷଣ ନିଷ୍ପେଷଣ ଜାଲରୁ ମାନବିକତାର ମୁକ୍ତି ଦାତା ରୂପେ ସେ ଚିତ୍ରଣ କରିଥିଲେ। ଜାର୍ ଶାସକଙ୍କ କବଳରୁ ରୁଷିଆର ଜନଗଣଙ୍କୁ ମୁକ୍ତ କରି ସେ ମୂକ ଜନତାର କଣ୍ଠରେ ନୂଆ ଭାଷା ଭରିଥିଲେ। ଭଗବତୀ 'ଲେନିନ୍' କବିତାରେ ସର୍ବହରାର ଏଇ ଏକନାୟକତ୍ୱ ବ୍ୟବସ୍ଥାର ପ୍ରଶସ୍ତି ବାଢ଼ି ଲେଖିଲେ-

ଯାଆରେ ମନ ଯାଆରେ
          ରୁଷିଆ ଦେଶକୁ ଚାହାଁରେ
ରୁଷିଆ ଦେଶରେ ବସିଛି ଲେନିନ୍
          ଟେକି ଦେଇ ଦୁଇ ବାହାରେ ॥
ମୂକ ଜନତାର ଯୁଗ ଯୁଗ ଧରି
          ଜମିଥିଲା ଯେତେ ରୋଷ
ଦେଲା ତାକୁ ଭାଷା, ଦେଶେ ଦେଶେ ସେ ତ
          ଲଗାଇଲା ନୂଆ ହୋସ।
ଶୋଷଣ ଦାଉରେ ବାଟବଣା ଲୋକେ
          ପାଇଲେ ମୁକତି ଚାହାରେ ॥

ସେହିପରି ସୁଦୂର ସ୍ପେନ୍‌ରେ ନବ ପ୍ରଚଳିତ ଗଣତାନ୍ତ୍ରିକ ବ୍ୟବସ୍ଥା ବିପଦାପନ୍ନ ହେବା ଦେଖି ମାନବତା ଦରଦୀ ଭଗବତୀବାବୁଙ୍କ ଅନ୍ତରାତ୍ମା ସମବେଦନାରେ ବିଳପି ଉଠିଥିଲା। ସେ

ଦେଶରେ ଶାସନ କରୁଥିବା ଗଣତନ୍ତ୍ର ପ୍ରେମୀ ଓ କମ୍ୟୁନିଷ୍ଟଙ୍କ ମିଳିତ ମୋର୍ଚ୍ଚା ଉପରେ ସେତେବେଳେ ଅତର୍କିତ ଆକ୍ରମଣ କରିଥିଲେ ସେ ଦେଶର ସାମରିକ ସେନାପତି ଫ୍ରାଁକୋ। ସରକାରୀ ପକ୍ଷ ଓ ଫ୍ରାଁକୋଙ୍କ ମଧ୍ୟରେ ଲାଗିଯାଏ ପ୍ରବଳ ଗୃହଯୁଦ୍ଧ। ସ୍ପେନ୍ ୟୁରୋପ୍‌ର ଏକ କୃଷି ପ୍ରଧାନ ଦେଶ। ସେ ଦେଶର ମୂଲିଆ, ମଜଦୂର ଓ ଚାଷୀମାନେ ନ୍ୟାୟ ସଙ୍ଗତ ପ୍ରଜାତନ୍ତ୍ରୀ ସରକାର ସପକ୍ଷରେ ଅସ୍ତ୍ର ଧରି ବିଦ୍ରୋହୀ ଫ୍ରାଁକୋ ବାହିନୀ ବିରୁଦ୍ଧରେ ଲଢ଼ନ୍ତି। ସେ ଗୃହଯୁଦ୍ଧରେ ଜର୍ମାନ ଓ ଇଟାଲୀ ଅଯଥା ମୁଣ୍ଡପୁରାଇ ଫ୍ରାଁକୋଙ୍କୁ ସାହାଯ୍ୟ କରନ୍ତି।

ଭଗବତୀବାବୁ ତାଙ୍କ "ବିଶ୍ୱ ପରିକ୍ରମା" ପ୍ରସଙ୍ଗରେ ଏ ବିଷୟରେ ଲେଖିନ୍ତି - "ସ୍ପେନ୍‌ର ଜାତୀୟତାବାଦୀ ଓ କମ୍ୟୁନିଷ୍ଟମାନେ ସତ୍ୟ ଓ ନ୍ୟାୟର ରକ୍ଷା ନିମନ୍ତେ ତଥା ଗଣତନ୍ତ୍ରର ମହତ ରକ୍ଷା ପାଇଁ ପ୍ରାଣପଣେ ଲଢ଼େଇ କରନ୍ତି। ପ୍ରଧାନମନ୍ତ୍ରୀ କମ୍ୟୁନିଷ୍ଟ ନେତା କ୍ୟାବାଲୋରୀଙ୍କ ବାଇଶି ବର୍ଷର ପୁତ୍ର ଯୁଦ୍ଧରେ ନିହତ ହୁଏ। ସ୍ପେନ୍‌ର ବହୁ ସାମ୍ୟବାଦୀଙ୍କ ରକ୍ତରେ ଧରଣୀ ଆର୍ଦ୍ର ହୁଏ। ତଥାପି ଭ୍ରୂକ୍ଷେପହୀନ ଚିତ୍ତରେ ଶହଶହ ଯୁବକଯୁବତୀ ଆଗୁସାର ହୁଅନ୍ତି। ଶ୍ରମିକମାନେ ସଶସ୍ତ୍ର ଲଢ଼େଇରେ ମାତିଛନ୍ତି। ଏଇ ଯେଉଁ ପ୍ରେରଣା, ଆଦର୍ଶ ପ୍ରତି ଆକର୍ଷଣ ଭବିଷ୍ୟତରେ ଦିନେ ବିଶ୍ୱରେ ଫାସିଷ୍ଟ୍ ଯୁଦ୍ଧଖୋରଙ୍କୁ ଉପଯୁକ୍ତ ଶିକ୍ଷା ଦେବ।" (ଭଗବତୀ ସଞ୍ଚୟନ ପୃ. ୧୫୭)

ସ୍ପେନ୍‌ର ଗୃହଯୁଦ୍ଧରେ କମ୍ୟୁନିଷ୍ଟ ଶାସକ ପକ୍ଷଙ୍କୁ ସାହାଯ୍ୟ କରିବାକୁ ରସେଲ୍, ହେମିଂଓ୍ୱେ, ଲୁଇଁ ଆରାଗ୍ ପରି ବିଶ୍ୱସ୍ତରୀୟ ଲେଖକଙ୍କ ଆବାହକତ୍ୱରେ ଗଢ଼ାହୁଏ " ଇଣ୍ଟର ନ୍ୟାସ୍‌ନାଲ୍ ରାଇଟରସ୍ ବ୍ରିଗ୍ରେଡ୍।" ଏ ଲେଖକ ସଂଘ ସାମ୍ରାଜ୍ୟବାଦ ଓ ଫାସିଜିମ୍ ବିରୁଦ୍ଧରେ ଯୁଦ୍ଧ କରି ଚାଲିବ ବୋଲି ଘୋଷଣା କରେ। ବିଶ୍ୱର ବିଭିନ୍ନ ଦେଶରୁ ଲେଖକ, ଶିଳ୍ପୀ, ନାଟ୍ୟକାର, ସାମ୍ବାଦିକ ଗୃହଯୁଦ୍ଧ କ୍ଲାନ୍ତ ସ୍ପେନ୍‌ରେ ପହଞ୍ଚନ୍ତି। ଭାରତରୁ ଯାଆନ୍ତି ନେହେରୁଙ୍କ ସଂଦେଶ ଧରି ମୁଲ୍‌କ ରାଜ୍ ଆନନ୍ଦ ଓ ଫଇଜ୍ ଅହମ୍ମଦ୍ ଫଇଜ୍। ଓଡ଼ିଶାରେ ଥାଇ ଏ ଗୃହଯୁଦ୍ଧ ବିରୁଦ୍ଧରେ ବିଶେଷତଃ ଫାସିବାଦ୍ ବିରୁଦ୍ଧରେ ଜନମତ ସୃଷ୍ଟି କରନ୍ତି ଭଗବତୀଚରଣ ପାଣିଗ୍ରାହୀ।

ଭଗବତୀବାବୁ ଯୁବକ ହୋଇଥିଲେ ମଧ୍ୟ ଦୁନିଆକୁ ଭଲଭାବେ ଚିହ୍ନିଥିଲେ। ବୈଜ୍ଞାନିକ ବିଶ୍ଳେଷଣ ରୀତିରେ ଦୁନିଆର ବିଭିନ୍ନ ଦେଶ ଓ ତା'ର ଶାସନ ଚିତ୍ର, ଆର୍ଥନୀତିକ ବ୍ୟବସ୍ଥା, ସାଂସ୍କୃତିକ ଚଳଣିକୁ ତର୍ଜମା କରିଥିଲେ। ସେ ଏ କ୍ଷେତ୍ରରେ ଯେତିକି ଜ୍ଞାନୀ ଥିଲେ, ନିଜ ପାଠକୁ କର୍ମରେ ପରିଣତ କରିବା ପାଇଁ ସେତିକି ଥିଲେ ଉତ୍ସାହୀ। ସେ ପଣ୍ଡିତଟିଏ ବନି ଘରେ ହାତଗୋଡ଼ ଜାକି ବା ପଢ଼ା ଟେବୁଲକୁ କୁଣ୍ଢେଇ ବସି ରହୁନଥିଲେ। ତାଙ୍କୁ ସଦାସର୍ବଦା ଦେଖିବାକୁ ମିଳୁଥିଲା ସାଧାରଣ ଲୋକଙ୍କ ମେଳରେ। ଗୋପବନ୍ଧୁଙ୍କ ଭଳି ସେ ଥିଲେ ଜଣେ ଉଚ୍ଚ ଧରଣର ସମାଜସେବୀ। ପୁଞ୍ଜିବାଦୀ ଗଣତାନ୍ତ୍ରିକ ସରକାର ଓ ତା'ର ଶାସନକୁ ସେ ଗୋଟାଏ ରାଜନୀତିକ ସୁଆଙ୍ଗ କହୁଥିଲେ। ସୁଆଙ୍ଗ ବା ଯାତ୍ରା ପାଲାରେ ଅଭିନେତାଙ୍କୁ ପାର୍ଟ୍ ମନେ ପକାଇ ଦେବା ପାଇଁ ଜଣେ ପ୍ରମ୍ପଟର୍ ଥାଆନ୍ତି। ତାଙ୍କ ହାତରେ ପ୍ରାୟ ଅଭିନେତାଙ୍କ ସୁନିର୍ଦ୍ଦିଷ୍ଟ ଭାଗ୍ୟଲିପି। ରାବଣ ପରି ଚରିତ୍ର ଯେତେ ବାହାସ୍ଫୋଟ ମାରି ନାଚି କୁଦି ଗର୍ଜି ତର୍ଜି ହେଲେ ସେ ନାଟକ ଶେଷରେ ମରିବାକୁ ବାଧ୍ୟ। ଓସ୍ତାଦ୍

ଓ ପ୍ରମ୍ପଟରଙ୍କ ହାତରେ ସମଗ୍ର ନାଟକ ଚାଲୁଥାଏ ଗୋଟାଏ ସଖୀ କଣ୍ଢେଇ ପରି। ସେମିତି ଆଜିର ମନ୍ତ୍ରୀ, ବିଧାୟକ ହେଉଛନ୍ତି ଜଣେ ଜଣେ ଅଭିନେତା। ଏମାନେ ଦେଶର ଧନୀକ ଶ୍ରେଣୀ ଓ ପୁଞ୍ଜିପତିଙ୍କ ବୋଲ ମାନି ଅଭିନୟ କରନ୍ତି ବା ସରକାର ଚଳାନ୍ତି। ଭଗବତୀ ଚରଣ ଲେଖିଛନ୍ତି - "ପ୍ରତ୍ୟେକ ଦେଶରେ ଶାସନ କଳର ମୋଡ଼ିବା ବାଲା ହେଉଛନ୍ତି ଧନୀକ ଶ୍ରେଣୀ। ଏମାନଙ୍କ ଇଚ୍ଛାନୁଯାୟୀ ଶାସନ ଚଳେ। ଏମାନେ ନିଜ ନିଜର କଳକାରଖାନାକୁ ଖାଲି ନିଜ ଇଚ୍ଛାନୁସାରେ, ବ୍ୟକ୍ତିଗତ ସ୍ୱାର୍ଥ ଦୃଷ୍ଟିରୁ ଚଳାନ୍ତି ନାହିଁ, ସମଗ୍ର ଶାସନ କଳକୁ ମଧ୍ୟ ଅନୁରୂପ ଚଳାନ୍ତି। ଭୋଟ୍ ଜିଣିବା ପାଇଁ ଏହି ଲୋକଙ୍କ ଦୁଆରେ ପ୍ରାର୍ଥୀମାନେ ଅଧିଆ ପଡ଼ନ୍ତି। ରକ୍‌ଫେଲର୍ ହେନେରୀ ଫୋର୍ଡ୍ ପରି ଲୋକଙ୍କୁ ନମସ୍ତେ ନମସ୍ତେ ହୁଅନ୍ତି। ଅଥଚ ବୁଭୁକ୍ଷୁ ଦଳଙ୍କୁ ପୋଲିସ୍ ଫଉଜଦ୍ୱାରା ଘଉଡ଼ାଇ ଦିଅନ୍ତି। ଏସବୁ ଦେଶର ଭୋଟର୍, ମେମ୍ବର ଓ ମନ୍ତ୍ରୀ ଆଦି ସମସ୍ତେ ବ୍ୟକ୍ତିଗତ ଧନର ଅନୁବର୍ତ୍ତୀ। ଏସବୁ ଦେଶର ଶାସନ, ଗଣତନ୍ତ୍ର ଶାସନ ନୁହେଁ - ଧନତନ୍ତ୍ର ଶାସନ।"

(ଭଗବତୀ ସଞ୍ଚୟନ-ପୃ.୧୪୯)

'ନବଯୁଗ ସାହିତ୍ୟ ସଂସଦ' ମାଧ୍ୟମରେ ଭଗବତୀବାବୁ ଲେଖକ, କବି, କଳାକାର, ମଞ୍ଚଶିଳ୍ପୀଙ୍କୁ ସାମ୍ରାଜ୍ୟବାଦ ବିରୋଧୀ ଆନ୍ଦୋଳନର ପୁରୋଧା ହେବାକୁ ଇଚ୍ଛା ପ୍ରକାଶ କରିଥିଲେ। ଦେଶ ଉପରେ ଚାଲିଥିବା ବିଲାତୀ ସାମ୍ରାଜ୍ୟବାଦର ଶୋଷଣକୁ ହଟାଇବା ପାଇଁ ଲେଖକମାନେ ବଜ୍ର କଣ୍ଠରେ ବିପ୍ଳବର ଡାକରା ଦେବା ଦରକାର ବୋଲି ସେ ଭାବୁଥିଲେ। ଓଡ଼ିଶା ସମାଜକୁ ଗ୍ରାସିଥିବା କୁସଂସ୍କାର, କୁପ୍ରଥା, ଅସ୍ପୃଶ୍ୟତା ଓ ଯାବତୀୟ ଅଲୌକିକତା ଭଗବତୀଙ୍କ ଅନ୍ତରରେ ଶୋକର ବନ୍ୟା ପ୍ଳାବିତ କରିଥିଲା। 'ନବଯୁଗ ସାହିତ୍ୟ ସଂସଦ' ଏହି ସବୁ ସାମାଜିକ ଅର୍ଥବତା ବିରୁଦ୍ଧରେ ଲଢ଼ିବାକୁ ପ୍ରତିବଦ୍ଧ ଥିଲା। ତାହା ମଧ୍ୟ ଲଢ଼ିବାକୁ ବଦ୍ଧ ପରିକର ଥିଲା ଅପସଂସ୍କୃତି ବିରୁଦ୍ଧରେ।

'ନବଯୁଗ ସାହିତ୍ୟ ସଂସଦ' ବିଷୟରେ ବିଶଦ୍ ବିବରଣୀ ଦେବାକୁ ଯାଇ ସଂଗ୍ରାମୀ ଗୋକୁଳ ମୋହନ ଚୂଡ଼ାମଣି ଲେଖନ୍ତି- "୧୯୩୫ ମସିହାର ନଭେମ୍ବର ଶେଷ ଦୁଇଦିନ ଓ ଡ଼ିସେମ୍ବର ପ୍ରଥମ ୭ଦିନ ରାମଚନ୍ଦ୍ର ଭବନରେ ଏକ ସାହିତ୍ୟ ଆଲୋଚନାଚକ୍ର ଭଗବତୀ ପାଣିଗ୍ରାହୀଙ୍କ ଆବାହନ କ୍ରମେ ଅନୁଷ୍ଠିତ ହେଲା। ଭଗବତୀ ବାବୁ ଓ ଗୁରୁଚରଣ ପଟ୍ଟନାୟକ ଧର୍ମ ସମ୍ପର୍କରେ ଓ ପ୍ରଫେସର ମୋହନୀ ମୋହନ ସେନାପତି ବିବାହ ସଂସ୍କାର ସମ୍ପର୍କରେ ପ୍ରବନ୍ଧମାନ ପାଠ କଲେ। "ନବ ଭାରତ"ର ଏକ ବିଶେଷ ସଂଖ୍ୟାରେ ପଣ୍ଡିତ ନୀଳକଣ୍ଠ ଦାସ ଏ ସମ୍ମିଳନୀର ଧାରା ବିବରଣୀ ପ୍ରକାଶ କଲେ। ୧୯୩୬ ମସିହାରେ ନବଯୁଗ ସାହିତ୍ୟ ସଂସଦର ମୁଖପତ୍ର "ଆଧୁନିକ" ପ୍ରକାଶ ପାଇଲା। ଓଡ଼ିଶା ପ୍ରଗତିଶୀଳ ଲେଖକ ସଂଘ ମଧ୍ୟ ଗଠିତ ହେଲା ୧୯୩୬ରେ। ଓଡ଼ିଶା ସାହିତ୍ୟରେ ସୃଷ୍ଟି ହେଲା ଏକ ନୂତନ ଦିଗନ୍ତ। ଯୁବ ଲେଖକଙ୍କୁ ତାହା ଅନୁପ୍ରାଣିତ କଲା। ସାମନ୍ତବାଦୀ ସାହିତ୍ୟକୁ ଭାଙ୍ଗି ତାକୁ ଖଟିଖିଆ ଲୋକଙ୍କ ମୁକ୍ତିର ସାହିତ୍ୟରେ ପରିଣତ କରିବାକୁ ଏ ସଂସଦ ଡାକରା ଦେଲା ଆଦର୍ଶବାଦୀ ଦର୍ଶନ (ଭାବବାଦୀ ଦର୍ଶନ)ରୁ ଏହା ବାସ୍ତବବାଦୀ ସାହିତ୍ୟ ବା ବସ୍ତୁବାଦୀ

ଦ୍ୱନ୍ଦ୍ୱାତ୍ମକ ସାହିତ୍ୟ ସୃଷ୍ଟି ଆଡ଼କୁ ବାଟ କଢ଼ାଇଲା" (ଓଡ଼ିଶାରେ କମ୍ୟୁନିଷ୍ଟ ପାର୍ଟିର ଜନ୍ମ- ପୃ.୨୬)।

'ଆଧୁନିକ' ଥିଲା ଯୁବ ଲେଖକଙ୍କୁ ସଂଗଠିତ କରିବା ପାଇଁ ଏକ ସୁଦୃଢ଼ ମଞ୍ଚ, ଯାହା ଏକ ହାତରେ ଯୁଦ୍ଧ କରିବାକୁ ବଦ୍ଧପରିକର ଥିଲା ଆମ ଭାରତୀୟ ସମାଜରେ ବଦ୍ଧମୂଳ ଅଜସ୍ର ଅପସଂସ୍କୃତି ବିରୁଦ୍ଧରେ ଓ ଅନ୍ୟ ହାତରେ ଦମନ କରିବାକୁ ଚାହୁଁଥିଲା ସାମ୍ରାଜ୍ୟବାଦୀ ପରକୀୟା ସଂସ୍କୃତିର ସଂକ୍ରମଣକୁ ଓ "ସାମ୍ରାଜ୍ୟବାଦୀ ଯୁଦ୍ଧ ନୁହେଁ, ଆମେ ଚାହୁଁ ବିଶ୍ୱଶାନ୍ତି" ର ପରମାର୍ଥ ସେ ବୁଝାଇବାକୁ ଚାହୁଁଥିଲା। ଭଗବତୀବାବୁ 'ଆଧୁନିକ'ର ସମ୍ପାଦକୀୟ ଲେଖିଥିଲେ - ଉଭୟ ଚିନ୍ତା ରାଜ୍ୟରେ ଓ କର୍ମକ୍ଷେତ୍ରରେ ଯେଉଁସବୁ ବିପ୍ଳବର ସୂତ୍ରପାତ ହେଉଛି, ତାହା ଅଧିକାଂଶର ଅଗୋଚରରେ ହିଁ ହେଉଛି। ଜନସାଧାରଣଙ୍କୁ ଏ ଦିଗରେ ସଚେତନ କରିବା ଓ ତାହା ଗ୍ରହଣ କରିବା ଲାଗି ପ୍ରସ୍ତୁତ ରହିବାକୁ ସଂକେତ ଦେବା ଏହାର ଅଭିପ୍ରାୟ। ଏହି ପରିବର୍ତ୍ତନର ଗତିରୋଧ କରିବାକୁ ଯେଉଁମାନେ ଠିଆ ହେବେ, ସେମାନେ ସମାଜର ପ୍ରଗତିବିରୋଧୀ ଶତ୍ରୁ।" (ନିଜକଥା- ଭଗବତୀ ସଞ୍ଚୟନ ପୃ.୧୪)।

'ଆଧୁନିକ' ପ୍ରଗତିଶୀଳ ସାହିତ୍ୟ ସୃଷ୍ଟିରେ ସାହାଯ୍ୟ କରିବ ବୋଲି ଭଗବତୀବାବୁ ମତ ଦେଉଥିଲେ। ପ୍ରଗତିଶୀଳ ସାହିତ୍ୟର ଚରିତ୍ର ବିଷୟରେ ଆଭାସ ଦେଇ ସେ ତାଙ୍କ ସମ୍ପାଦକୀୟରେ ଲେଖିଲେ "ଆଧୁନିକ" ଏପରି ଲେଖାର ପୋଷକତା କରିବ ଯାହା ମାନବର ମନକୁ କର୍ମତତ୍ପର ହେବା ପାଇଁ ଚଞ୍ଚଳ କରିବ। ପ୍ରବନ୍ଧ ହେଉ, କବିତା ହେଉ, ଗଳ୍ପ, ଉପନ୍ୟାସ, ନାଟକ ହେଉ, ଯାହା ମାନବକୁ କର୍ମ କ୍ଷେତ୍ରକୁ ପ୍ରଧାବିତ କରିବ, ଯାହା କର୍ମର ଉଦ୍ଦୀପନା ମାନବ ମନରେ ଆଣିଦେବ, ସେହିପରି ଲେଖା ବସ୍ତୁତଃ 'ଆଧୁନିକ'ରେ ପ୍ରକାଶ ପାଇବ। ଆରାମ ଚୌକିରେ ବସି ପଢ଼ିବା ଯୋଗ୍ୟ ସୂକ୍ଷ୍ମ ସୌଖୀନ୍ ସାହିତ୍ୟ ପାଇଁ 'ଆଧୁନିକ'ର ସ୍ଥାନ ପ୍ରଶସ୍ତ ନୁହେଁ।" (ନିଜକଥା - ଭଗବତୀ ସଞ୍ଚୟନ-ପୃ.୧୧୪)

ଭଗବତୀବାବୁ ଗାଉଁଲି ଢଗ ଢମାଳି ପ୍ରୟୋଗ କରି ଚିତ୍ରକାଳ୍ପିକ ରୀତିରେ ସମସ୍ୟାର ମୂଳ ରହସ୍ୟଟିକୁ ବୁଝାଇବାରେ ଧୂରନ୍ଧର ଥିଲେ। ଓଡ଼ିଶାରେ ସେତେବେଳେ ବାହାରୁଥିବା ଅନ୍ୟାନ୍ୟ ବାରଜାତି ତେର ଗୋଲା ରୀତିର ପତ୍ରିକା ଓ ନିଜ ପତ୍ରିକାର ଆଭିମୁଖ୍ୟର ତୁଳନାତ୍ମକ ବିଚାର କରି ଭଗବତୀବାବୁ ତାଙ୍କ ପ୍ରଥମ ସମ୍ପାଦକୀୟ ଲେଖାର ଉପସଂହାର ଟାଣିଥିଲେ। ସେ ଲେଖିଥିଲେ - "ସାହିତ୍ୟ ପତ୍ରପତ୍ରିକାଙ୍କର ସାଧାରଣ ନୀତି ହେଉଛି 'ସାପ ମରିବ ନାହିଁ କି ବାଡ଼ି ଭାଙ୍ଗିବ ନାହିଁ। ସାପ ସହିତ ସେମାନଙ୍କର କୌଣସି ସମ୍ପର୍କ ନାହିଁ। ନିଜର ବାଡ଼ିଟି ବଜାୟ ରଖିବା ହିଁ ସେମାନଙ୍କର ଲକ୍ଷ୍ୟ। 'ଆଧୁନିକ'ର କିନ୍ତୁ ତାହା ନୁହେଁ। ବାଡ଼ି ଭାଙ୍ଗି ଯାଉ ପଛେ ସାପ ମରୁ। ଏହାହିଁ ତା'ର ନୀତି। ତା'ର ପ୍ରଧାନ ଲକ୍ଷ୍ୟ ହେଉଛି ସାପକୁ ମାରିବା। ବାଡ଼ି ଉଞ୍ଚେଇ ସାପକୁ ଘଉଡ଼େଇ ଦେଲେ ଖାଲି ହେଲା ନାହିଁ। ସେ ଆଘାତ କରିବାକୁ ଚାହେଁ, ବାଡ଼ି ଭାଙ୍ଗୁ ଅବା ରହୁ। ଯେଉଁସବୁ ବଦ୍ଧମୂଳ ଧାରଣା ଓ ସଂସ୍କାର ମାନବର ସାମାଜିକ ବ୍ୟକ୍ତିଗତ ଜୀବନକୁ ଆଚ୍ଛନ୍ନ କରି ରଖିଛି, ତାହାରି ମୂଳରେ ଏହାର ପ୍ରଥମ ଆଘାତ" (ଭଗବତୀ ସଞ୍ଚୟନ - ପୃ.୧୧୫)।

ଭଗବତୀବାବୁ କିନ୍ତୁ ପ୍ରଚାରମୂଳକ ସାହିତ୍ୟର ସୃଷ୍ଟି ପାଇଁ କୌଣସି ସ୍ଥାନରେ ଓକିଲାତି କରିନାହାନ୍ତି । ସବୁ ପ୍ରକାର ଚିନ୍ତନର ମୂଳ ଉଦ୍ଦେଶ୍ୟ ଥିବା ପରି ସାହିତ୍ୟର ମୂଳ ଲକ୍ଷ୍ୟ ଅଛି । ଏହା "କଳା ନିମନ୍ତେ କଳା" ଚର୍ଚ୍ଚା କରିବାକୁ ସୃଷ୍ଟ ନୁହେଁ । ଏହା ଉଦ୍ଦେଶ୍ୟହୀନ ନୁହେଁ । ଏହା ବରଂ ଏକ ଲକ୍ଷ୍ୟ ହାସଲ ନିମନ୍ତେ ଏକ ମାଧ୍ୟମ ବା ପଥ । ସଂସ୍କୃତି ସମ୍ପନ୍ନ ସମାଜଟିଏ ନିର୍ମାଣ କରିବା ବା ସର୍ବପ୍ରକାର ଶୋଷଣ ରହିତ ସାମାଜଟିଏ ଗଢ଼ିବା ସାହିତ୍ୟର ମୂଳ ଲକ୍ଷ୍ୟ । ସେଥିପାଇଁ ମଣିଷର ମନୋଜଗତକୁ ବଦଳାଇବା ବା ତାକୁ ସତ୍ୟ ଶିବ ସୁନ୍ଦରର ଲୀଳାଭୂମି ତିଆରି କରିବା ସାହିତ୍ୟର କାର୍ଯ୍ୟ । ଏ କାର୍ଯ୍ୟ ସେ କରିବ – ପ୍ରଚାରମୂଳକ ଭାଷା ଓ ଭାବ ବ୍ୟବହାର ନକରି । ଯଦି ସାହିତ୍ୟିକର ପାଠକଙ୍କୁ କୌଣସି ସଂଦେଶ ଦେବାକୁ ଥିବ ତେବେ ତାହା ସେ ଇଙ୍ଗିତ ମାଧ୍ୟମରେ ଦେଇପାରେ । ସାହିତ୍ୟରେ କଳାଚର୍ଯ୍ୟା ନିଶ୍ଚିତ ଭାବେ କରଣୀୟ । ସାହିତ୍ୟଟି ଯଦି ପାଠକଙ୍କୁ ସମ୍ମୋହିତ ନକଲା, ତଲ୍ଲୀନ ନକଲା, କଳ୍ପନାପ୍ରବଣ କରି ନ ପାରିଲା, ତେବେ ସେ କି ସାହିତ୍ୟ ? ଏସବୁ କରିବାକୁ ହେଲେ ସାହିତ୍ୟ ଲିଖନର ଭାବଭଙ୍ଗୀ କଳାର ପୁଟରେ ରସସିକ୍ତ ହେବା ଦରକାର । ରସଚର୍ଯ୍ୟା ବିନା ଭାରତୀୟ ସାହିତ୍ୟ ରଚନା ଅସମ୍ଭବ । ଭିନ୍ନ ପ୍ରସଙ୍ଗରେ ମାର୍କସ୍, ଲେନିନ୍, ଗୋର୍କୀ ପ୍ରାୟ ସମସ୍ତେ ଏହି କଥା ହିଁ କହିଛନ୍ତି । ଗୋର୍କୀ ସାହିତ୍ୟ କିପରି ପାଠକଙ୍କୁ ମତାଇଦେବ ବା ତତାଇ ଦେବ ସେ ସମ୍ପର୍କରେ "ଜଣେ ପାଠକଙ୍କୁ" ଶୀର୍ଷକ ରମ୍ୟରଚନାରେ ସୂଚନା ଦେଇଛନ୍ତି । ଲେଖକଙ୍କୁ ଉପଦେଶ ଦେଇ ଗୋର୍କୀ ଲେଖିଛନ୍ତି - 'ତୁମେ ବୁଝିବାକୁ ଚେଷ୍ଟା କର ଯେ, ଲୋକଙ୍କୁ ଉପଦେଶ ଦେବାର ଯେଉଁ ଅଧିକାର ତୁମେ ପାଇଛ, ସେହି ଅଧିକାରର ଉତ୍ସ ହେଉଛି ମଣିଷ ପ୍ରାଣର ଆନ୍ତରିକ ଚେତନା ଉଦ୍ରେକ କରି ପାରିବାର ତୁମର ସାମର୍ଥ୍ୟ, ଯେଉଁ ଚେତନା ଏକ ଜୀବିତ ହାତୁଡ଼ି ପରି ଭାଙ୍ଗି ଚୁରମାର୍ କରିଦେବ ଜୀବନର ପୁରାତନ ଶୃଙ୍ଖଳକୁ, ଜୀବନର କରାଗାରକୁ । କ୍ରୋଧ, ଘୃଣା, ବୀରତ୍ୱ, ଲଜ୍ଜା, ବିରକ୍ତି ଆଉ ଅବଶେଷରେ ବହ୍ନିମାନ୍ ହତାଶା, ଏସବୁ ହେଉଛି ଗୋଟିଏ ଗୋଟିଏ ଆୟୁଧ, ଯେଉଁଥିରେ ତୁମେ ପୃଥିବୀର ଯେ କୌଣସି ଜିନିଷକୁ ଧ୍ୱଂସ କରିଦେଇପାରିବ । ହେ ଲେଖକ ! ପାରିବ ତୁମେ ସୃଷ୍ଟି କରି ଏସବୁ ଆୟୁଧ ? ପାରିବ ତୁମେ ପ୍ରୟୋଗ କରି ଏସବୁ ଆୟୁଧ ? ତୁମେ ଯଦି ମଣିଷକୁ କିଛି କହିବାର ଅଧିକାର ଲାଭ କରିବାକୁ ଚାହଁ, ତେବେ ମଣିଷର ଦୋଷଦୁର୍ବଳତାକୁ କିପରି ଘୃଣା କରିବାକୁ ହୁଏ, ତାହା ତୁମକୁ ଶିଖିବାକୁ ହେବ, ନହେଲେ ସାଧାରଣ ମଣିଷକୁ ପ୍ରାଣ ଦେଇ ସ୍ନେହ କରିବାକୁ ଶିଖିବାକୁ ହେବ, ଯେଉଁ ସ୍ନେହର ଉତ୍ସ ହେଉଛି ତା'ର ଦୁଃଖ, ତା'ର ଦୈନ୍ୟ ଓ ତା'ର ଯନ୍ତ୍ରଣା । ଏଇ ଦୁଇଟି ଭିତରୁ କୌଣସି ଗୋଟିଏ ଆବେଗ ପାଇଁ ଯଦି ତୁମ ପ୍ରାଣରେ ସ୍ଥାନ ନାହିଁ, ତେବେ ତୁମେ ଚୁପ୍ ରହିବା ହିଁ ଶ୍ରେୟସ୍କର ।' (ଅନୁ - କୃଷ୍ଣଚରଣ ପଟ୍ଟନାୟକ, 'ଗୋର୍କୀଙ୍କ ଶ୍ରେଷ୍ଠ ଗଳ୍ପ' - ନବଯୁଗ - ପ୍ରକାଶ - ମଇ ୧୯୬୮, ପୃ.୭୪) ।

ମହାନ୍ ଗୋର୍କୀ ପରି ପ୍ରେମ୍‌ଚନ୍ଦ୍ ଭାରତୀୟ କଥା ସାହିତ୍ୟରେ ଜଣେ ଦିଗ୍‌ଗଜ ଥିଲେ । ସେ ମଧ୍ୟ ଲେଖକଙ୍କ କର୍ତ୍ତବ୍ୟ ବିଷୟରେ ତାଙ୍କ ଅନୁଗାମୀ ଲେଖକଙ୍କୁ କିଛି ଉପଦେଶ ଦେବା ପାଇଁ ଗୋର୍କୀଙ୍କ ପରି ସାହସ କରିଥିଲେ । ୧୯୩୬ ମସିହାରେ (ଓଡ଼ିଶାରେ 'ନବଯୁଗ ସାହିତ୍ୟ ସଂସଦ' ପ୍ରତିଷ୍ଠାର ଠିକ୍ ବର୍ଷେ ପରେ) 'ଭାରତୀୟ ପ୍ରଗତିଶୀଳ ସଂଘ' ପ୍ରେମଚନ୍ଦ ପ୍ରତିଷ୍ଠା କରିଥିଲେ

ଲକ୍ଷ୍ନୌଠାରେ ଏକ ସାଧାରଣ ସାହିତ୍ୟିକ ଅଧିବେଶନ ମାଧ୍ୟମରେ। ସେଠାରେ ତାଙ୍କ ସଭାପତିତ୍ୱ ଅଭିଭାଷଣରେ ସେ ଏକ ତାତ୍ପର୍ଯ୍ୟପୂର୍ଣ୍ଣ କଥା କହିଥିଲେ। ଆମ ସମାଜରେ ମଣିଷର ଚିନ୍ତନ ଓ ଆଚରଣ ଭିତରକୁ ବିଦେଶୀ ସଂସ୍କୃତିର ଅନେକ ମଇଳା ନିତିପ୍ରତି ପଶି ଆସୁଛି। ସେହିପରି ମଣିଷର ଚିନ୍ତା ଓ ଚେତନାକୁ ତମସାଗ୍ରସ୍ତ କରିଛି ଆମ ଦେଶର ପୁରୁଣାକାଳିଆ କୁସଂସ୍କାର, ଜାତିଆଣବାଦ ଇତ୍ୟାଦି। ଏ ଦୁଇଙ୍କ ଷଣ୍ଢଆସୀ ଆକ୍ରମଣରୁ ସାଧାରଣ ମଣିଷର ମନକୁ ସାହିତ୍ୟ ମୁକୁଳାଇବାକୁ ଚେଷ୍ଟା କରିବା ଉଚିତ। ଲେଖକ ନିଜ କଲମ ସାହାଯ୍ୟରେ ସାମାଜିକ ଚିନ୍ତନ ଓ ଚେତନାର କଳୁଷିତ ନଦୀସ୍ରୋତ ମଧ୍ୟରେ ଭାସି ଆସୁଥିବା ଏ ଦୁଇ ପ୍ରକାର ଆବର୍ଜନାକୁ ଛାଣି ବାହାର କରିଦେବା ଉଚିତ ବୋଲି ପ୍ରେମ୍‌ଚନ୍ଦ୍ କହିଥିଲେ। ସମାଜର ପ୍ରଗତି ଏହା ଫଳରେ ସମ୍ଭବ ହେବ। ସମାଜର ସ୍ଥାଣୁତ୍ୱକୁ ଭାଙ୍ଗି ତା'ର ବିନାଶକୁ ଯେଉଁ ସାହିତ୍ୟ ତ୍ୱରାନ୍ୱିତ ବା ଗତିଶୀଳ କରେ, ତାକୁ ପ୍ରଗତିଶୀଳ ସାହିତ୍ୟ କହନ୍ତି ବୋଲି ପ୍ରେମ୍‌ଚନ୍ଦ୍ ଉଲ୍ଲେଖ କରିଥିଲେ।

ଭଗବତୀ ଚରଣ ଏସବୁ ମହାନାୟକଙ୍କ ସଂଦେଶରୁ ଆଗକୁ ପାଦେ ବଢ଼ି ସାହିତ୍ୟର ବଡେଇ ଦେବାର ସାମର୍ଥ୍ୟ ଲେଖକ ସୃଷ୍ଟି କରିବା ଉଚିତ ବୋଲି କହିଲେ। ସେ ଏଇ କଳା କୌଶଳକୁ ବାଖ୍ୟା କରି ଲେଖିଛନ୍ତି- "ଇଙ୍ଗିତ (ସଜେଷ୍ଟିଭ୍‌ନେସ୍) ସାହିତ୍ୟର କଳାକୁଶଳତାର ଅନ୍ୟତମ ପରିଚ୍ଛାୟକ। ଲେଖକ ବର୍ଣ୍ଣନା ଓ ବିଶ୍ଳେଷଣ କରି ଚାଲିଥିବ ଭାଷାର ଐଶ୍ୱର୍ଯ୍ୟ ଓ ଗାରିମା ଦେଇ। ଶେଷରେ ଗୋଟିଏ ଜାଗାରେ ସେ ଚୁପ୍ କରିଯିବ, ଯେଉଁଠାରେ କହି କହି ଭାଷା ଅନଟନ ହେବା କଥା। ଏ ନୀରବତା ବାଚାଳତା ଅପେକ୍ଷା ଅଧିକ ମୁଖର ହୋଇ ଉଠେ।" (ଭଗବତୀ ସଞ୍ଚୟନ - ପୃ.୯୪)

ଭଗବତୀଙ୍କ ସାହିତ୍ୟ ଦୀକ୍ଷା ଥିଲା ବାସ୍ତବବାଦୀ ସାହିତ୍ୟିକ ଦୀକ୍ଷା। ସାମାଜିକ ଦ୍ୱନ୍ଦରାଜିକୁ ଅନ୍ତରଙ୍ଗ ଭାବେ ଚିତ୍ରଣ କରିବା ଲେଖକର ପହିଲା କର୍ତ୍ତବ୍ୟ। ସାହିତ୍ୟିକ କଲମ ଚାଳନା ବେଳେ ସେ ନିଜର ଅଜାଣତରେ ଠିଆ ହୋଇଯାଏ - ଧନ କୁବେର ପଟରେ ବା ପାଇଟିଆଳଙ୍କ ପଟରେ। ଏହା ଘଟେ ଲେଖକର ଅନ୍ତର୍ନିହିତ ଶ୍ରେଣୀ ଚରିତ୍ର ଯୋଗୁଁ। କିନ୍ତୁ ସମାଜ ସଚେତନ ଲେଖକ ନିଜ ମଧ୍ୟରେ ନିଜ ଶ୍ରେଣୀଚ୍ୟୁତ ପ୍ରକ୍ରିୟାକୁ ପାଥେୟ କଲେ, ସେ ପହଞ୍ଚେ ସର୍ବହରାର ସ୍ୱାର୍ଥ ପାଖରେ - ସେ ହୋଇଯାଏ De - Class ବା ଶ୍ରେଣୀଚ୍ୟୁତ। ତାହାର କଲମ ସାଜେ ସର୍ବହରା ସାହିତ୍ୟର ନାନ୍ଦିକାର। ସମାଜରେ ସାଧାରଣ ଜନଗଣଙ୍କୁ ନାନାବିଧ ଶୋଷଣରୁ ମୁକ୍ତ କରିବାକୁ ଜଣେ ଅଙ୍ଗୀକାରବଦ୍ଧ ଲେଖକ ଆଗରେ ଯଥା ବ୍ୟତୀତ ଅନ୍ୟ ରାସ୍ତା ନାହିଁ। ଜଣେ ସାହିତ୍ୟିକ ଦଳିତ ଜୀବନ ଚର୍ଯ୍ୟା ସହିତ ଘନିଷ୍ଠ ହୋଇ ସେହି ମହାନ ଭାବକୁ ନିଜ ଭାବ ରାଜ୍ୟରେ ଅଭିକର୍ଷଣ କଲେ, ସେ ନେଇ ପାରିବ ଦଳିତ ସାହିତ୍ୟର ଦୀକ୍ଷା। ନତୁବା ଜନବାଦୀ ସାହିତ୍ୟ ତା ପାଖରେ ଏକାନ୍ତ ଅପହଞ୍ଚ।



# ଧରଣୀଧରଙ୍କ ପ୍ରଜାମେଳି : ପୂର୍ବାପର ସଙ୍ଗତି ସହ

୧୮୬୮ ମସିହାରୁ ଆରମ୍ଭ ହୋଇ ୧୮୯୪ ପର୍ଯ୍ୟନ୍ତ ଚାଲିଥିବା କେନ୍ଦୁଝର ରାଜ୍ୟର ଭୂୟାଁ ମେଳି ଓଡ଼ିଶା ଇତିହାସରେ ଏକ ବିଛିନ୍ନ ଘଟଣା ନଥିଲା। ଏହା ବରଂ ଥିଲା ୧୮୧୭ ମସିହାରେ ଆରମ୍ଭ ହୋଇଥିବା ପାଇକ ବିଦ୍ରୋହ ଓ ତା'ପରେ ଅନ୍ୟାନ୍ୟ ପ୍ରଜା ବିଦ୍ରୋହର ଏକ ଭୟାବହ ପରିଣତି। ପାଇକ ବିଦ୍ରୋହ ସାଥେ ସାଥେ ଓଡ଼ିଶାରେ ମୟୂରଭଞ୍ଜ, ବଣାଇ ଓ ସିଂହଭୂମ୍ ଅଞ୍ଚଳରେ କୋହ୍ଲ ବିଦ୍ରୋହ (୧୮୨୧-୧୮୩୬), ଘୁମୁସରର କନ୍ଧ ବିଦ୍ରୋହ (୧୮୧୮-୧୮୫୭), ସମ୍ବଲପୁର ବୀର ସୁରେନ୍ଦ୍ର ସାଏଙ୍କ ବିଦ୍ରୋହ (୧୮୪୮-୧୮୮୪), ନୀଳଗିରିର ଖିଡ଼ପୁର ପ୍ରଜାମେଳି (୧୮୮୩) ଓଡ଼ିଶାରେ ଇଂରେଜ ଶାସନ ମୂଳରେ କରିଥିଲା ନିଷ୍ଠୁର କୁଠାରାଘାତ। ସିପାହୀ ବିଦ୍ରୋହର ଯଥେଷ୍ଟ ଆଗରୁ ଏଇ ବିଦ୍ରୋହ ଗୁଡ଼ିକ ଆମ ରାଜ୍ୟର ଲୋକମାନଙ୍କ ସାଧୀନାକାଂକ୍ଷା ଓ ଦେଶପ୍ରେମର ଅପୂର୍ବ ଉନ୍ମେଷର ସୂଚନା ଦିଏ। ଧରଣୀଧରଙ୍କ ଭୂୟାଁମେଳି ଯେ ଓଡ଼ିଶା ବିଦ୍ରୋହର ଏ·ଅବାରିତ ପ୍ରବାହ ଦ୍ୱାରା ପ୍ରଭାବିତ ହୋଇଥିଲା, ଏଥିରେ ସାମାନ୍ୟତମ ସନ୍ଦେହର ଅବକାଶ ନାହିଁ। ନିମ୍ନରେ ସଂକ୍ଷେପରେ ଏ ବିଦ୍ରୋହ ଗୁଡ଼ିକର ଗତି ପ୍ରକୃତିକୁ ସମୀକ୍ଷା କରାଗଲା।

**ଖୋରଧାର ପାଇକ ବିଦ୍ରୋହ**

୧୮୦୩ ମସିହାରେ ଇଂରେଜ ଓଡ଼ିଶା ଦଖଲ କରିବା ପରେ ଏ ରାଜ୍ୟରେ ଦିନେ ବୋଲି ଶାନ୍ତିରେ ରାଜତ୍ୱ କରି ପାରିନଥିଲେ। ୧୮୧୭ରେ ଇଂରେଜ ବିରୁଦ୍ଧରେ ଆରମ୍ଭ ହୁଏ ଖୋରଧାର ପାଇକ ବିଦ୍ରୋହ। ମେଜ୍ର ଫ୍ଲେଚରଙ୍କ ଅଭିସନ୍ଧିମୂଳକ ଶାସନ ଯୋଗୁଁ ଖୋରଧାର ପାଇକମାନଙ୍କ ଜାଗିରୀ ଉଚ୍ଛେଦ ହୋଇଥିଲା। ସମୁଦ୍ରରୁ ଲୁଣ ମାରିବାକୁ ସେମାନଙ୍କୁ ମନାକରାଗଲା। ସେମାନଙ୍କୁ ବେଠିରେ ସରକାରଙ୍କ ପାଇଁ ଖଟିବାକୁ ବାଧ କରାଗଲା। ଜାଗିରୀ ଜମି ଫେରି ପାଇବାକୁ ସେମାନେ ଆନ୍ଦୋଳନ ଆରମ୍ଭ କଲେ। ବକ୍ସିଙ୍କ ଜମିଦାରୀ ଟିକସ୍ କଟକରେ ସାଧାରଣତଃ ଦିଆଯାଉଥିଲା। ସେହି ବର୍ଷ ଠାରୁ ପୁରୀ କଚେରୀରେ ଜମିଦାରୀ ଟିକସ୍ ଦିଆଯାଇ ପାରିବ ବୋଲି କୁହାଗଲା। ବକ୍ସି ଜଗବନ୍ଧୁ ପୁରୀରେ ଟିକ୍ସ ପଇଠ କଲେ। ଏଣେ କଟକରେ ଟିକ୍ସ ଅନାଦେୟ ଦେଖାଇ ସରକାର ସେ ଜମିଦାରୀକୁ ନିଲାମ୍ କଲେ ଓ କୃଷ୍ଣଚନ୍ଦ୍ର ସିଂହ ନାମକ ଜଣେ ବଙ୍ଗାଳୀ ଅମଲା ତାହା ନିଲାମରେ ଧରିଲେ। ବହୁଥର ଆପତ୍ତି ସତ୍ତ୍ୱେ ଜଗବନ୍ଧୁ ବିଦ୍ୟାଧର ନ୍ୟାୟ ପାଇଲେ ନାହିଁ। ସେ ବିଦ୍ରୋହ ଆରମ୍ଭ କଲେ। ଖୋରଧାର ପାଇକମାନେ ଇଂରେଜମାନଙ୍କ ବିରୋଧରେ ଏ ବିଦ୍ରୋହରେ ସାମିଲ୍ ହେଲେ। ଜଣକର ଅସନ୍ତୋଷ ସହସା ଅନେକର ଅସନ୍ତୋଷର

ରୂପ ନେଲା । ବକ୍‌ସି ମୁଣ୍ଡଟେକିଥିବା ଏଇ ବିଦ୍ରୋହର ନେତା ବନିଗଲେ । ସିପାହୀ ବିଦ୍ରୋହର ଚାଳିଶ ବର୍ଷ ଆଗରୁ ଆରମ୍ଭ ହୋଇଥିବା ଏଇ ବ୍ରିଟିଶ ବିରୋଧୀ ମହାସଂଗ୍ରାମ ୧୮୨୪ ଯାଏ ଚାଲିଥିଲା । ଗରିଲା ଯୁଦ୍ଧର ରୂପ ନେଇ ଚାଲିଥିବା ଏହି ମହାସଂଗ୍ରାମ ବସ୍ତୁତଃ ଥିଲା ଭାରତର ପ୍ରଥମ ସ୍ୱାଧୀନତା ସଂଗ୍ରାମ ।

## ଘୁମୁସରର କନ୍ଧ ବିଦ୍ରୋହ - (୧୮୧୭-୧୮୫୭)

ଘୁମୁସର କନ୍ଧ ମେଳିର ମୁଖ୍ୟ ମେଳିଆ ହେଲେ ଦୋରା ବିଶୋୟୀ ଓ ତାଙ୍କ ମୃତ୍ୟୁପରେ ତାଙ୍କ ପୁତୁରା ଚକରା ବିଶୋୟୀ । ୧୮୧୫ ମସିହାରେ ଘୁସୁସର ରାଜା ଧନଞ୍ଜୟ ଭଞ୍ଜଙ୍କ ମୃତ୍ୟୁ ପରେ ଇଂରେଜ ସରକାର ସେଠାରେ ରାଜା ନିଯୁକ୍ତି ନକରି ଦୋରାଙ୍କୁ ଜମିଦାରୀର ଦାୟିତ୍ୱ ଦେଲେ । ୧୮୧୭ରେ ମରହଟ୍ଟା ସୈନ୍ୟଗଣ ପିଣ୍ଡାରୀମାନଙ୍କ ସହ ମିଶି ଘୁମୁସରର ଅଞ୍ଚଳକୁ ଲୁଟ୍‌ତରାଜ କଲେ । ଇଂରେଜମାନେ ଏଥିରେ ଦୋରାଙ୍କୁ ସାହାଯ୍ୟ ନକରି ବରଂ ପିଣ୍ଡାରୀମାନଙ୍କ ଦୌରାତ୍ମ୍ୟର ଦେଖଣାହାରୀ ସାଜିଲେ । ୧୮୧୮ରେ ଏଥିର ପ୍ରତିବାଦରେ କନ୍ଧମାନେ ଇଂରେଜଙ୍କୁ ଆକ୍ରମଣ କଲେ ଓ ବିଦ୍ରୋହୀ ହୋଇ ଉଠିଲେ । ଗଞ୍ଜାମର କଲେକ୍ଟର୍ ସ୍ୱଟିସ୍ ଉଡ୍ ବିଦ୍ରୋହକୁ ଦମନ କରିବା ପାଇଁ ସସୈନ୍ୟେ ଘୁମୁସର ଗସ୍ତ କଲେ । ତାଙ୍କ ସଶସ୍ତ୍ର ଅତ୍ୟାଚାର ଯୋଗୁଁ ପ୍ରତିକ୍ରିୟା ସ୍ୱରୂପ ବିଦ୍ରୋହ ନୂଆଗାଁ, ବେଲଗୁଣ୍ଠା, ନିମପଦର, ଛାମୁଣ୍ଡା, ବୁଗୁଡ଼ା, ବଡ଼ବଡ଼ ସିଂରେ ବ୍ୟାପିଗଲା । କୁରମିସିଙ୍ଗା, ଆମାଝର ଓ ଜିରିପଦର ପାର୍ବତ୍ୟ ଅଞ୍ଚଳରୁ ବିଦ୍ରୋହୀ ମାନେ ଗରିଲା ଆକ୍ରମଣ କରି ଘୁସୁସରର ବିଶେଷ କମିଶନର ଜର୍ଜ ଏଡ୍‌ୱାର୍ଡ୍ ରସେଲଙ୍କ ସୈନ୍ୟବାହିନୀକୁ ବାରମ୍ବାର ପରାସ୍ତ କଲେ । କନ୍ଧମାନଙ୍କୁ ବିଭିନ୍ନ ପୁରସ୍କାରର ପ୍ରଲୋଭନ ଦେଖାଇ ମଧ ବିଦ୍ରୋହ ଦମନ କରି ପାରିନଥିଲା ଇଂରେଜ । ୧୮୩୭ରେ ଦୋରା ବିଶୋୟୀ ଅନୁଗୁଳ ଜଙ୍ଗଲରେ ଆତ୍ମଗୋପନ କରିଥିବା ବେଳେ ଅନୁଗୁଳର ବ୍ରିଟିଶ୍ ଅନୁଗତ ରାଜା ସୋମନାଥ ସିଂ ତାଙ୍କୁ ଧରାଇଦେଲେ । ମାନ୍ଦ୍ରାଜ୍ ଜେଲ୍‌ରେ ୧୮୩୮ରେ ଦୋରାଙ୍କ ମୃତ୍ୟୁ ହୋଇଥିଲା ।

ଘୁମୁସରର ଭଞ୍ଜବଂଶକୁ ରାଜତ୍ୱ ଫେରେଇ ଦେବାକୁ ଦାବୀ କରି ଚକରା ବିଶୋୟୀ ୧୮୩୮ରେ ବ୍ରିଟିଶ୍ ବିରୋଧୀ ମେଳି ଆରମ୍ଭ କରିଥିଲେ । ୧୮୩୮ରେ ମେଳିର ପ୍ରାରମ୍ଭରେ ଘୁମୁସରର ରାଜା ବଂଶର ଏକ ଯୁବକ ପୀତାମ୍ବର ଭଞ୍ଜଙ୍କୁ କନ୍ଧମାନେ ଡକାଇ ଆଣି ସିଂହାସନରେ ବସାଇଥିଲେ । ମାତ୍ର ସେ ଇଂରେଜକୁ ଭୟ କରି ତାଙ୍କ ଠାରେ ଆତ୍ମ ସମର୍ପଣ କଲେ ଓ ବିଦ୍ରୋହୀ ପ୍ରଜାଙ୍କ ପକ୍ଷ ତ୍ୟାଗ କଲେ । ଘୁମୁସର ରାଜ୍ୟର ପ୍ରଶାସନକୁ କନ୍ଧମାନେ ଚଳାଇବାର ଦାବୀ ନେଇ ଚକରା ବିଶୋୟୀଙ୍କ ନେତୃତ୍ୱରେ ଘୁସୁସର ଓ ଖେମୁଣ୍ଡିର ବନ ପାହାଡ଼ରେ ବିଦ୍ରୋହ କଲେ । ପ୍ରଜାମାନେ ଟିକସ୍ ନଦେଇ ଇଂରେଜ ଫଉଜକୁ ବିଭିନ୍ନ ସ୍ଥାନରେ ଆକ୍ରମଣ କଲେ । କନ୍ଧମାନଙ୍କ ଚାଷ ପୂର୍ବରୁ କିଆରୀରେ ମେରିଆ ବଳୀ ଦେବାର ଅଧିକାର ଅବ୍ୟାହତ ରହୁ ବୋଲି ସେମାନେ ଦାବୀ କଲେ । ୧୮୪୮ ମସିହାରେ ଲର୍ଡ଼ ଡେଲହାଉସି ଚକରାର ବିଦ୍ରୋହରେ ବିବ୍ରତ ହୋଇ ଇଷ୍ଟଇଣ୍ଡିଆ କମ୍ପାନୀର ଲଣ୍ଡନସ୍ଥ ପରିଚାଳନା ଦପ୍ତରକୁ ପତ୍ର ଲେଖିଥିଲେ । ଇଂରେଜମାନଙ୍କର

ସୈନ୍ୟ ନାଗପୁର ଓ ମାନ୍ଦ୍ରାଜରୁ ପାରଳାଖେମୁଣ୍ଡି, କନ୍ଧମାଳ ଓ ଗଜପତିର ବନ ପାହାଡ଼ ଅଞ୍ଚଳରେ ବିଛାଇ ଯାଇ କନ୍ଧ ବିଦ୍ରୋହକୁ ଦମନ କଲେ। ୧୮୫୭ ମସିହା ବେଳକୁ ବୀର ଚକରା ବିଶୋୟୀ ବନ ପାହାଡ଼ ଭିତରେ କେଉଁ ଅଜ୍ଞାତବାସରେ ପ୍ରାଣତ୍ୟାଗ କରିଥିଲେ। କନ୍ଧମାନଙ୍କ ଏ ବିଦ୍ରୋହ ଓଡ଼ିଶାରେ ଆଦିବାସୀଙ୍କ ମନରେ ଅଶେଷ ଉତ୍ସାହ ଉଦ୍ଦୀପନା ଯୋଗାଇଥିଲା। ଏ ବିଦ୍ରୋହର ଗୌରବଗାଥା କୁଇ, କନ୍ଧ, ମୁଣ୍ଡାରୀ ଭାଷାରେ ଗୀତ ଆକାରରେ ତୁଣ୍ଡରୁ ତୁଣ୍ଡକୁ ଡେଇଁ ଭୂୟାଁ ଓ ଜୁଆଙ୍ଗ ଅଧ୍ୟୁଷିତ କେନ୍ଦୁଝରର ପାହାଡ଼ ବନ କନ୍ଦରରେ ପ୍ରଚାରିତ ହୋଇଥିଲା।

## ମୟୂରଭଞ୍ଜ କୋହ୍ଲ ବିଦ୍ରୋହ (୧୮୨୧-୧୮୩୬)

କେନ୍ଦୁଝର ପଡ଼ୋଶୀ ରାଜ୍ୟ ମୟୂରଭଞ୍ଜ, ବଣାଇ, ସିଂହଭୂମ୍‌ରେ ୧୮୨୧ ମସିହାରେ ଆରମ୍ଭ ହୋଇଯାଏ କୋହ୍ଲ ବିଦ୍ରୋହ। କୋହ୍ଲମାନଙ୍କୁ ରାଜାମାନେ ଦେଇଥିବା ଅଧିକାରକୁ ଅନେକବାର  ରାଜଦରବାର ଉଲଂଘନ କରିଥିବା ଯୋଗୁଁ କୋହ୍ଲମାନେ ବିଦ୍ରୋହ କରିଥିଲେ। ଦକ୍ଷିଣ ପଶ୍ଚିମ ରାଜ୍ୟମାନଙ୍କର ପଲିଟିକାଲ୍ ଏଜେଣ୍ଟଙ୍କ ତତ୍ତ୍ୱାବଧାନରେ କୋହ୍ଲ ଅଧ୍ୟୁଷିତ ଅଞ୍ଚଳକୁ ଇଂରେଜ ସରକାର ରଖିଲା ଓ ସମସ୍ତଙ୍କୁ ଗୋଟାଏ  ପ୍ରକାର ଆଇନ୍‌ର ସୁବିଧା ଦେଲା। ୧୮୩୧ ମସିହାରେ କୋହ୍ଲ ପୀରମାନଙ୍କୁ ବାରିପଦା ରାଜା କେତେକ ଅଧିକ ସୁବିଧା ଦେଲେ। ବ୍ରିଟିଶ୍ ଶାସକ ସାଧାରଣ କୋହ୍ଲଙ୍କୁ ଦେଉଥିବା ସୁବିଧାଠାରୁ ଏହା ଉତ୍କୃଷ୍ଟମାନର ଥିଲା। ପୁଣି କୋହ୍ଲପୀଢ଼ ଗୁଡ଼ିକରେ ବିଦ୍ରୋହ ତେଜି ଉଠିଲା। କୋହ୍ଲମାନଙ୍କ ନେତା ଲୁର୍‌କା କୋହ୍ଲ ବ୍ରିଟିଶ୍ ଶାସନ ପକ୍ଷେ ମହାବିପଦ ହୋଇ ଉଠିଲା। ଲୁର୍‌କାଙ୍କ ସାଙ୍ଗଠନିକ କ୍ଷମତା ଓ ନିଜ ଜାତିଭାଇଙ୍କୁ ବୁଝାଇବା କ୍ଷମତା ଅପୂର୍ବ ଥିଲା। କୋହ୍ଲ ବିଦ୍ରୋହୀଙ୍କ ଦାବୀରେ ବ୍ରିଟିଶ୍ ସରକାର ନତୀ ସ୍ୱୀକାର କରି ବାମନଘାଟି ଅପରପାର୍ଶ୍ୱକୁ କୋହ୍ଲ ଅଞ୍ଚଳ ବୋଲି ଘୋଷଣା କଲେ ଓ ତାକୁ ସିଧାସଳଖ ନିଜ ଶାସନାଧୀନ ରଖିଲେ। ସାଧାରଣ କୋହ୍ଲ ଓ ତାଙ୍କ ପୀରଙ୍କ ମଧ୍ୟରେ ଫାଟ ସୃଷ୍ଟିକରି ଏମିତି କଳହ ଭିଆଇ ଦେଲେ ଯେ ଅଚିରେ ଏକ ଶ୍ମଶାନର ଶାନ୍ତି ସେ ଅଞ୍ଚଳରେ ଓହ୍ଲାଇ ଆସିଲା। ଲୁର୍‌କା କୋହ୍ଲଙ୍କ ମୃତ୍ୟୁ ପରେ ମଧ୍ୟ ଏ ବିଦ୍ରୋହ ୧୮୩୬ ଯାଏ ଲାଗିରହିଲା।

## ସମ୍ବଲପୁର ବୀର ସୁରେନ୍ଦ୍ର ସାଏଙ୍କ ବିଦ୍ରୋହ -

୧୮୪୮ ଓ ୧୮୫୪ ମସିହାରେ ଇଂଜେମାନେ ସମ୍ବଲପୁରରେ ଲାଗ୍ ଲାଗ୍ ଦୁଇଥର ଜମି ବନ୍ଦୋବସ୍ତ କରିଥିଲେ। ଭୂମିକର ଏତଦ୍ୱାରା ଚାରିଗୁଣ ବୃଦ୍ଧି ହୋଇଥିଲା। ଅନେକ ଜମିର ହିତାଧିକାରୀଙ୍କ ନିଷ୍କର ଓ ଜାୟଗିରି ଇତ୍ୟାଦି ବାତିଲ୍ ହୋଇ ଯାଇଥିଲା। ସମ୍ବଲପୁରର ପ୍ରଜା ବିଦ୍ରୋହ ଏଇ ଅସନ୍ତୋଷରୁ ଜନ୍ମିଥିଲା। ସମ୍ବଲପୁରର ମହାରାଜ ସାଏଙ୍କ ମୃତ୍ୟୁ ପରେ ରାଜଗାଦି ପାଇଁ ଅନେକ ଦାବୀଦାର୍ ବାହାରିଲେ। ଇଂରେଜ ସରକାର ଜୀବିତା ମହାରାଣୀ ମୋହନ କୁମାରୀଙ୍କ ନାମରେ ଶାସନ ଚଳାଇଯିବାକୁ ଶ୍ରେୟସ୍କର ମଣିଲେ। ସିଂହାସନରେ ଦାବୀଦାର୍‌ମାନଙ୍କ ମଧ୍ୟରେ ଖିଣ୍ଡା ରାଜବଂଶର ଧର୍ମ ସିଂହଙ୍କ ପୁତ୍ର ସୁରେନ୍ଦ୍ର ସାଏ ପ୍ରଧାନ ଥିଲେ। ସେ ସମ୍ବଲପୁରର ଚତୁର୍ଥ ରାଜା ମଧୁକର ସାୟଙ୍କ ବଂଶଧର ଓ ବିଶୁଦ୍ଧ ଚୌହାଣ ରକ୍ତରୁ ଜାତ

ଥିଲେ। ସୁରେନ୍ଦ୍ର ସାଏ ଏ ବିଦ୍ରୋହକୁ ବା ଉଲୁଗୁଲାନ୍‌କୁ ନିଜର ନୀଚ ସ୍ୱାର୍ଥ ଚରିତାର୍ଥରେ ବ୍ୟବହାର କରି ନଥିଲେ। ଜନଗଣ, ଗୌନ୍ତିଆ, ଶିକ୍ଷିତ ଚାକିରୀଆ ସମସ୍ତେ ତାଙ୍କ ଶାସନକୁ ଯେ ଚାହାଁନ୍ତି, ଏହା ସେ ବ୍ରିଟିଶ୍ ଆଗରେ ଦର୍ଶାଇଥିଲେ। ସମ୍ବଲପୁର ବିଦ୍ରୋହର ଏହି ନେତାଙ୍କ ସ୍ୱଭାବ ଓ ଆଚାର ବ୍ୟବହାର ବିଷୟରେ ଐତିହାସିକ ଶିବ ପ୍ରସାଦ ଦାଶ ଲେଖିଛନ୍ତି - "ସମସ୍ତଙ୍କୁ ମିଳାଇ ନେବାକୁ, ଆପଣାର କରି ନେବାକୁ, ତଥା ସଂଗଠିତ କରିବାକୁ ତାଙ୍କର (ସୁରେନ୍ଦ୍ର ସାଏଙ୍କର) ଅଦ୍ଭୁତ ଶକ୍ତି ଥିଲା। ସେ ପିଲାଦିନୁ ଅଶ୍ୱ ଚଢ଼ିବା ଓ ମଲ୍ଲବିଦ୍ୟା ମଧ ଭଲ ରୂପେ ଶିଖିଥିଲେ। ତାଙ୍କ ଦେହରେ ସିଂହର ପରାକ୍ରମ ଥିଲା। ସର୍ବୋପରି ବିପକ୍ଷକୁ କିପରି କାବୁ କରିବାକୁ ହୁଏ, ସେ ବିଷୟରେ ସେ ଅତି ବିଚକ୍ଷଣ ଥିଲେ।" (ସମ୍ବଲପୁର ଇତିହାସ-ପୃ.୫୮୩) ନିଜ ରାଜବଂଶ, ସାଧାରଣ ଜନଗଣଙ୍କ ଅଦ୍ଭୁତ ସମର୍ଥନ ଲାଭ କରି ସୁରେନ୍ଦ୍ର ସାଏ ବ୍ରିଟିଶ ବିରୋଧୀ ସଂଗ୍ରାମ ୧୮୫୭ ମସିହା ପରବର୍ତ୍ତୀ କାଳରେ ବି ଚଳାଇ ରଖିଥିଲେ। ବିଦ୍ରୋହୀମାନେ ଗରିଲା ଯୁଦ୍ଧର ରାସ୍ତା ଧରିଥିବାରୁ ଅଗମ୍ୟ ଅରଣ୍ୟ ଓ ପାହାଡ଼ୀ ଘାଟି ସେମାନଙ୍କର ଅଭେଦ୍ୟ ଦୁର୍ଗ ଥିଲା। ସେମାନଙ୍କ ଆସ୍ଥାନ ସାଧାରଣତଃ ପାହାଡ଼, ଖିଣ୍ଡା, ଡେବିରିଗଡ଼, ଝାରଘାଟି, ସିଂହୋଡ଼ା ଘାଟି ଅଞ୍ଚଳରେ ଥିଲା। ବିଦ୍ରୋହର ପ୍ରଥମ ଭାଗରେ ବ୍ରିଟିଶ୍ ସରକାର ସୁରେନ୍ଦ୍ର ତାଙ୍କ ସମର୍ଥକ ଉଦନ୍ତ, ଉଜ୍ୱଳ, ଛବିଳ ଓ ପୁତ୍ର ମିତ୍ରଭାନୁଙ୍କୁ କୌଶଳକ୍ରମେ ବନ୍ଦୀ କରି ହଜାରୀବାଗ ଜେଲ୍‌ରେ ଆବଦ୍ଧ କରିଥିଲେ। ୧୮୫୭ରେ ସିପାହୀ ବିଦ୍ରୋହର ବୀର ସିପାହୀମାନେ ହଜାରୀବାଗ ଜେଲ୍ ଭାଙ୍ଗି ଦବା ଫଳରେ ସୁରେନ୍ଦ୍ର ଓ ତାଙ୍କ ସାଥୀମାନେ ସେଠାରୁ ମୁକ୍ତ ହୋଇ ସମ୍ବଲପୁରକୁ ଫେରିଲେ ଓ ବିପ୍ଳବକୁ ପୁନଃସଙ୍ଗଠିତ କଲେ। ବିପ୍ଳବର ମଧବର୍ତ୍ତୀ କାଳରେ ସମ୍ବଲପୁର ଅଞ୍ଚଳର ଗଣ୍ୟମାନ୍ୟ ଲୋକମାନେ ଯେତେଥର ସଙ୍ଗଠିତ ହୋଇ ପଶ୍ଚିମ ଓଡ଼ିଶାରେ ଶାନ୍ତି ସ୍ଥାପନ ନିମନ୍ତେ ସରକାରଙ୍କୁ ଅନୁରୋଧ କରିଛନ୍ତି, ପ୍ରତିଥର ସେମାନେ ସୁରେନ୍ଦ୍ର ସାଏ ସମ୍ବଲପୁରର ପ୍ରକୃତ ଶାସକ ହେବାର ଦାବୀଦାର୍ ବୋଲି ସୂଚାଇ ଅଛନ୍ତି। ୧୮୮୪ ମସିହାରେ ଜନଗଣର ଏ ବିଦ୍ରୋହ ଦମିତ ହୁଏ। ବନ୍ଦୀ ଅବସ୍ଥାରେ ସୁରେନ୍ଦ୍ର ସାଏ ସେଇ ବର୍ଷ ଅସୁରଗଡ଼ ଜେଲ୍‌ରେ ପ୍ରାଣତ୍ୟାଗ କରନ୍ତି। ସମ୍ବଲପୁରର ଏ ବିଦ୍ରୋହ ତେଣୁ ଜଣେ ବ୍ୟକ୍ତିର ସିଂହାସନ ପାଇବା ଦାବୀରେ ହୋଇନଥିଲା। ଏହାଥିଲା ସେ ଭୂଖଣ୍ଡର ସମଗ୍ର ଜନଗଣର ବିଦ୍ରୋହ-କୃଷକର ବିପ୍ଳବ ତଥା ଆଦିବାସୀ, ଗରିବ-ଗୁରୁବାର ଇଂରେଜ କୁଶାସନ ବିରୁଦ୍ଧରେ ରୋଷରୁଷ୍ଟ ବଜ୍ରନାଦ।

## ନୀଳଗିରି ରାଜ୍ୟର ଖଡ଼ପୁର ପ୍ରଜାମେଳି (୧୮୮୩)

ଫକୀରମୋହନ ୧୮୭୨ ମସିହାରୁ ୧୮୭୫ ମସିହା ଯାଏ ନିଳିଗିରିରେ ଦେଓ୍ୱାନ ହିସାବରେ କାର୍ଯ୍ୟ କରିଥିଲେ। ତତ୍‌କାଳୀନ ରାଜା କୃଷ୍ଣଚନ୍ଦ୍ର ମର୍ଦ୍ଦରାଜ ତାଙ୍କର ପରାମର୍ଶ ମାନି ନୀଳଗିରିରୁ ସେରଗଡ଼ ଯାଏ ପକ୍କା ସଡ଼କ ତିଆରି କରାଇଥିଲେ। ଫକୀରମୋହନଙ୍କ ଯୋଜନାକ୍ରମେ ନୀଳଗିରି ରାଜ୍ୟର ସଦର ମହକୁମାରେ କଚେରୀ, ବଜାର, ପୋଲ, ଜେଲଖାନା ଓ ଥାନା ଆଦି ନିର୍ମାଣ କରାଯାଇଥିଲା। ଫକୀରମୋହନ ରାଜ୍ୟରେ ସଂସ୍କୃତ ଶିକ୍ଷା ଅଭାବ ଯୋଗୁଁ

ପୁରୋହିତମାନେ ଯଜନ ଓ ଯାଜନରେ ମନ୍ତ୍ର ଉଚ୍ଚାରଣରେ ବହୁ ତ୍ରୁଟି କରୁଥିବାର ଲକ୍ଷ୍ୟ କରି ସଂସ୍କୃତ ଟୁଲ୍‌ମାନ ବସାଇବାକୁ ପରାମର୍ଶ ଦେଲେ। ସେ ପାଇଁ ବ୍ରାହ୍ମଣମାନଙ୍କର ନିଷ୍କର ଜମିରୁ କର ଆଦାୟ ପାଇଁ ଯୋଜନା କଲେ। ଏହା ରାଜ୍ୟର ବ୍ରାହ୍ମଣ ସମ୍ପ୍ରଦାୟକୁ କ୍ଷୁବ୍ଧ କଲା। ଖଡ଼ପୁର ଓ ବଉଳଗଡ଼ିଆ ଅଞ୍ଚଳରେ ପାହାଡ଼ରୁ ମିଳୁଥିବା ମୁଗୁନି ପଥର ଖାଦାନ ପଟ୍ଟା ଦେବାବେଳେ ରାଜା ପଥୁରିଆଙ୍କ ଠାରୁ ବାର୍ଷିକ ଖଜଣା ଆଦାୟ କରୁଥିଲେ। ଗୋଟିଏ ପରିବାର ଦେଉଥିବା ଖଜଣାରେ ସେ ପରିବାରର ସକ୍ଷମ ପୁରୁଷମାନେ ଯେତେ ଇଚ୍ଛା ପଥର କାଟି ପାରୁଥିଲେ। ନୂଆ ପଟ୍ଟାଦାର କାହ୍ନୁ ମିଶ୍ର ଖଜଣା ଦାନକାରୀ ପରିବାର ପିଛା ଜଣେ ଲୋକମାତ୍ର ପଥର କାଟି ନେଇପାରିବ ବୋଲି ଆଇନ୍ କଲେ। ଏହା ପଥୁରିଆଙ୍କୁ ବହୁ ସଂଖ୍ୟାରେ ବେକାର କରିଦେଲା। 'ରାଜାଙ୍କର ଅତ୍ୟଧିକ ଖଜଣା ସାଙ୍ଗକୁ ଜଙ୍ଗଲ କଟକଣା, ହାଟବଟି, ଉତ୍ପନ୍ନ ଫସଲ ରପ୍ତାନୀ, ଗୋରୁଗାଈ ବିକ୍ରୟ ଉପରେ ପଟ୍ଟାଦାରଙ୍କ କଟକଣା ଓ ପାଉଣା ଆଦାୟ, ଶିକାର ବେଠି, କଳା ବାଡ଼ି ଗଛ ଉପରେ ଅଧିକାର ଇତ୍ୟାଦି ଦାବୀ ଉପରେ କରବନ୍ଦ ଆନ୍ଦୋଳନ ହେଲା। ଖଡ଼ପୁରର ଜୟ ରଣ ସିଂ, ଭଗବାନ ଭୁଜବଳ, ହରି ମତ୍ତଗଜ, ପବନ ଦଳ ସିଂ, ମଧୁ ମହାପାତ୍ର, ହରି ମାନ୍‌ଧାତା - ଏହି ଛଅଜଣ ମୁଖ୍ୟଙ୍କ ନେତୃତ୍ୱରେ ମେଳି ହୋଇ ଈଶ୍ୱରପୁର, ବଉଳଗଡ଼ିଆ ହାଟବଟି ଆଦାୟ ବନ୍ଦ୍ ଓ ପଥର ଖଣିରୁ ଜବରଦସ୍ତ ପଥରକଟା ଆରମ୍ଭ ହେଲା। ଏ ପ୍ରଜାମେଳିକୁ ଦମନ କରିବା ପାଇଁ ଇଂରେଜ ସରକାର ରାଜ୍ୟ ସାରା ଯଥେଷ୍ଟ ଫଉଜ ମୁତୟନ କଲେ। ମେଳିଆଙ୍କ ଘରସବୁ ରାଜା ହାତୀ ଲଗାଇ ଭାଙ୍ଗି ମାଟିରେ ମିଶାଇ ଦେଲେ। ସେମାନଙ୍କ ସ୍ଥାବର ଅସ୍ଥାବର ସମ୍ପତ୍ତିକୁ ନିଲାମ କଲେ। ମେଳିର ନେତା ହରି ମତ୍ତଗଜକୁ ବାରବର୍ଷ ସଶ୍ରମ କାରାଦଣ୍ଡ ଦିଆଗଲା। ଅନ୍ୟ ପାଞ୍ଚଜଣ ମେଳିଆଙ୍କୁ ରାଜଦ୍ରୋହ ଅପରାଧରେ କଳାପାଣି ପଠାଇ ଦିଆଗଲା। ଛୋଟ ଏହି କରଦ ରାଜ୍ୟରେ ଏହି ପ୍ରଜାମେଳି ବାସ୍ତବରେ ସୁପ୍ତ ଜନଗଣଙ୍କ ସ୍ଥବିରତାର ଘୁମ୍ ଭାଙ୍ଗି ଦେଇଥଲା। (ଦ୍ରଷ୍ଟବ୍ୟ - 'ନୀଳଗିରି ପ୍ରଜା ଆନ୍ଦୋଳନର ଇତିହାସ' - ପୃ୩୨ - ୩୩)

## କେନ୍ଦୁଝରର ଭୂୟାଁ ବିଦ୍ରୋହ- (୧୮୬୧-୧୮୯୪)

କେନ୍ଦୁଝରର ଭୂୟାଁ ଓ ଜୁଆଙ୍ଗ ମାନଙ୍କ ବିଦ୍ରୋହ ଉନବିଂଶ ଶତାବ୍ଦୀର ଦ୍ୱିତୀୟ ଭାଗରେ ବ୍ରିଟିଶ୍ ସରକାରର ଶାସନର ମୂଳପିଣ୍ଡ ଦୋହଲାଇ ଦେଇଥିଲା। ୧୮୬୧ ମସିହାରୁ ଭୂୟାଁମାନଙ୍କ ପ୍ରଥମ ପର୍ଯ୍ୟାୟର ମେଳି ଆରମ୍ଭ ହୋଇଯାଏ ରାଜଗାଦୀର ଅଧିକାର ପ୍ରସଙ୍ଗରେ। "୧୮୬୧ରେ କେନ୍ଦୁଝରର ରାଜା ଗଦାଧର ନାରାୟଣ ଭଞ୍ଜଙ୍କ ଦେହାନ୍ତ ହେବା ବେଳକୁ ତାଙ୍କର ଏକମାତ୍ର ବିବାହିତା ରାଣୀ ବିଷ୍ଣୁପ୍ରିୟା ନିଃସନ୍ତାନ ଥିଲେ। କିନ୍ତୁ ରାଜାଙ୍କ ରକ୍ଷିତାଙ୍କର ଦୁଇ ପୁତ୍ର ଥିଲେ। ଓଡ଼ିଶାର ରାଜାମାନଙ୍କ ଉତ୍ତରାଧିକାର ବିଷୟକ "ପଚିଶ୍ ସୱାଲ୍"ରେ ସ୍ୱୀକୃତ ବିଧି ଅନୁସାରେ ଦୁହିଁଙ୍କ ମଧ୍ୟରେ ଜ୍ୟେଷ୍ଠ ଧନୁର୍ଜୟ ରାଜଗାଦୀ ପାଇବା କଥା। ମହାରାଣୀ ବିଷ୍ଣୁପ୍ରିୟା ଧନୁର୍ଜୟଙ୍କ ଦାବିକୁ ଅସ୍ୱୀକାର କରି ମୟୂରଭଞ୍ଜ ରାଜବଂଶର ବୃନ୍ଦାବନ ଭଞ୍ଜଙ୍କୁ ପୋଷ୍ୟପୁତ୍ର ସ୍ୱୀକାର କରି ରାଜା କରାଇବା ଯୋଗାଡ଼ କଲେ। ବୃନ୍ଦାବନ ପିତାମହ ମୟୂରଭଞ୍ଜର ରାଜା ଯଦୁନାଥ ଭଞ୍ଜ ତାଙ୍କ

ପୌତ୍ରଙ୍କୁ ଗାଦିରେ ବସାଇବା ପାଇଁ ଯତ୍‌ପରୋନାସ୍ତି ପ୍ରଯତ୍ନ ଚଳାଇଲେ। ଗଡ଼ଜାତର କମିଶନର୍ ୧୮୧୬ର ୧୧ଶ ରେଗୁଲେସନ୍ ଅନୁସାରେ ଧନୁର୍ଜୟ ଓ ବୃନ୍ଦାବନଙ୍କ ଦାବିର ବିଚାର କରି ଧନୁର୍ଜ୍ଜୟ ହିଁ ଆଇନ ସମ୍ମତ ଉତ୍ତରାଧିକାରୀ ବୋଲି ରାୟ ଦେଲେ X X X। ଧନୁର୍ଜୟ ୧୮୬୭ରେ ପ୍ରାପ୍ତ ବୟସ୍କ ହେଲେ ଓ ଗଡ଼ଜାତର କମିଶନରଙ୍କ ଠାରୁ ସଶସ୍ତ୍ର ବଳ ସାହାଯ୍ୟ ନେଇ ଗାଦିନସୀନ ହେଲେ X X X। ଧନୁର୍ଜ୍ୟ ଅଭିଷେକ ବେଳେ ମହାରାଣୀ ବିଷ୍ଣୁପ୍ରିୟା ଓ ଭୂୟାଁ ସର୍ଦ୍ଦାର ରତ୍ନା ନାୟକ ଅସହଯୋଗ କରିଥିଲେ। ମହାରାଣୀ ବିଷ୍ଣୁପ୍ରିୟାଙ୍କ ଇଙ୍ଗିତରେ ଓ ମୟୂରଭଞ୍ଜ ରାଜାଙ୍କ ମଦତ୍‌ରେ ଭୂୟାଁମାନେ ୧୮୬୮ରେ ରତ୍ନା ନାୟକଙ୍କ ନେତୃତ୍ୱରେ ମେଳିଆ ହେଲେ।" (ପ୍ରବନ୍ଧ -'ବିବ୍ରତ ସେନାପତିଙ୍କ ପାନଗୁଆ ବରାଦ୍'- ସଚ୍ଚିଦାନନ୍ଦ ମିଶ୍ର - ଝଙ୍କାର - ଡିସେମ୍ବର ୧୯୯୯-ପୃ.୧୧୯୩)। ଏ ମେଳିକୁ ଇଂରେଜ ସରକାର ଦୃଢ଼ ହସ୍ତରେ ଦମନ କଲେ। ମହାରାଣୀ ବିଷ୍ଣୁପ୍ରିୟାଙ୍କୁ ଭତ୍ତା ଦେଇ କେଉଁଝର ରାଜ୍ୟରୁ ଅନ୍ତର କରିଦିଆଗଲା।

ରତ୍ନା ନାୟକ ଓ ପାବୁଡ଼ି ଭୂୟାଁମାନେ ମେଳି କରିବାର ଅନେକ କାରଣ ମଧ୍ୟରୁ ଭୂୟାଁ ଜାତିର ଜାତିଆଣ ସେଣ୍ଟିମେଣ୍ଟର୍ ସୁରକ୍ଷା ଥିଲା ଶ୍ରେଷ୍ଠ କାରଣ। କେନ୍ଦୁଝର ରାଜ୍ୟ ଯେତେବେଳେ ସ୍ଥାନୀୟ ବପୁବାନ୍ ସର୍ଦ୍ଦାରଙ୍କ ଦ୍ୱାରା ଅଧିକୃତ ଥିଲା ଓ ସେମାନଙ୍କ ମଧ୍ୟରେ ବଳ କଷାକଷି ଯେତେବେଳେ ପ୍ରଜାଙ୍କ ଉତ୍ପୀଡ଼ିତ ହେବାର କାରଣ ହେଉଥିଲା, ପାବୁଡ଼ି ଭୂୟାଁମାନେ ନିଜ ନିଜ ନୈରାଜ୍ୟ ଲୋପ୍ କରିବା ନିମନ୍ତେ ବାଟ ଖୋଜିଲେ। ମୟୂରଭଞ୍ଜର ହରିହରପୁର ରାଜଉଆସରୁ ସାନ ରାଜକୁମାର ଜ୍ୟୋତି ଭଞ୍ଜଙ୍କୁ ଲୁଚେଇ ନେଇ ତାଙ୍କ ହାତରେ ରାଜ୍ୟଭାର ଦେଲେ ମୂଲକରେ ଶାନ୍ତି ଫେରିବ ବୋଲି ସେମାନେ ଭାବିଲେ। ଜ୍ୟୋତି ଭଞ୍ଜଙ୍କୁ ଅପହରଣ କରି ଆଣି ସେମାନେ ବାଂଶପାଳ ଓ କାଳିଆହତାର ନିବିଡ଼ ଅରଣ୍ୟ ଭିତରେ ରଖିଲେ। ସେଇ ରାଜାଙ୍କ ସୈନ୍ୟ ସାମନ୍ତ ବନି ସେମାନେ ରାଜାଙ୍କ ତରଫରୁ ରାଜ୍ୟ ଶାସନ କଲେ। ରାଜଗାଦିରେ ରାଜା ବସିବାବେଳେ ବା ଅଭିଷେକ ହେବାବେଳେ ଯେଉଁ ଦୃଶ୍ୟର ଅବତାରଣା କରିଛନ୍ତି ଫକୀରମୋହନ, ସେଇ ପରମ୍ପରା ଭୂୟାଁମାନେ ଜ୍ୟୋତିଭଞ୍ଜଙ୍କ ଅଭିଷେକ ବେଳରୁ ଚଳାଇଥିଲେ। ଭୂୟାଁମାନଙ୍କ ପ୍ରଥାନୁଯାୟୀ ଜଣେ ଭୂୟାଁ ଆଣ୍ଠେଇ ପଡ଼ି ଘୋଡ଼ା ହୁଏ। ଜଣେ ଭୂୟାଁ ଆଣ୍ଠୁମାଡ଼ି ବସି ସିଂହାସନ ପରି ହୁଏ। ରାଜା ଗାଧୋଇ ପାଧୋଇ ଶୁକ୍ଳ ବସ୍ତ୍ର ଧାରଣ କରି ଘୋଡ଼ା ହୋଇଥିବା ଭୂୟାଁଟି ପିଠିରେ ଆସି ସିଂହାସନ ଆରୋହଣ କରନ୍ତି। ଭୂୟାଁଙ୍କ ପୂଜକ ରାଜାଙ୍କୁ ପୂଜାର୍ଚ୍ଚନା କରି ଅଭିଷେକ କରେ। ଅନ୍ୟଜଣେ ଭୂୟାଁ ଅନୁଗତ ପ୍ରଜାର ଅଭିନୟ କରି ରାଜସିଂହାସନ ଆଗରେ ମୁଣ୍ଡ ଝୁଙ୍କାଇ ରହେ। ରାଜା ସେ ଭୂୟାଁ ବେକରେ ଦୁଇଥର ତରବାରି ଛୁଆଁଇ ଦେଇ ନିଜେ ଦଣ୍ଡ ଦେବାର ଅଧିକାରୀ ବୋଲି ସାବ୍ୟସ୍ତ କରନ୍ତି। ଭୂୟାଁଙ୍କ ରାଜା ମନୋନୟନ ଓ ତାଙ୍କୁ ଶାସନ କ୍ଷମତା ସଅଁପି ଦେବା ଓ ଅତ୍ୟାଚାରୀ ହେଲେ ତାଙ୍କ ହାତରୁ କ୍ଷମତା ବାହାର କରିନେବା ଦାର୍ଶନିକ ରୁଷୋଙ୍କ "ଜେନେରାଲ୍ ଉଇଲ" ପ୍ରଥାର ରୀତିନୀତି ଅନୁରୂପ ହେଉଥିବାର ଦେଖାଯାଏ। ଯେଉଁ ରାଜାଙ୍କୁ ସର୍ବସାଧାରଣଙ୍କ ସଦିଚ୍ଛା ବଳରେ କ୍ଷମତା ଦିଆଯାଏ, ଶାସନଭାର ଦିଆଯାଏ, ସେ ଅତ୍ୟାଚାରୀ ହେଲେ ତାହା ମଧ୍ୟ କାଢ଼ି ନିଆଯାଇପାରେ। "ସରସ୍ୱତୀ ଫକୀରମୋହନ" ପୁସ୍ତକରେ ବିଶିଷ୍ଟ ଆଲୋଚକ

ଡକ୍ଟର ମାୟାଧର ମାନସିଂହ ଏଇ ମନୋଭାବକୁ ସ୍ୱୀକାର କରି ମଧ ଲେଖିଛନ୍ତି - "ବିଶେଷ କରି କେନ୍ଦୁଝର ରାଜ୍ୟଟା ଯାକ ଯେ ତାଙ୍କରି (ଅର୍ଥାତ୍ - ଭୂୟାଁମାନଙ୍କର), ରାଜାଙ୍କୁ ରଖିବା ଓ ତଡ଼ିବା ଯେ ତାଙ୍କରି ସ୍ୱାଧୀକାର, ଏପ୍ରକାର ଗଣଚେତନା ଭୂୟାଁମାନଙ୍କ ଭିତରେ ଜୀବନ୍ତ ଭାବରେ ପରିବ୍ୟାପ୍ତ ଥିଲା।" (ପୃ. ୧୧୯) ଏଇ ସାଧାରଣ ଗ୍ରାମ୍ୟ ବିଗ୍ଚର କେନ୍ଦୁଝର ଭୂୟାଁମାନଙ୍କୁ ବାରମ୍ବାର ଅତ୍ୟାଚାରୀ ରାଜାଙ୍କ ବିରୁଦ୍ଧରେ ମେଳି କରିବାକୁ ପ୍ରରୋଚନା ଯୋଗାଇଛି। ତେଣୁ ଭୂୟାଁ ମେଳି ମୂଳରେ ଭୂୟାଁ ଜାତିର ସେଣ୍ଟିମେଣ୍ଟ୍ ଭୀଷଣ ଭାବେ କାର୍ଯ୍ୟ କରୁଥିଲା। ରତ୍ନା ନାୟକର ବିଦ୍ରୋହ ପରିଶେଷତଃ ବ୍ରିଟିଶ୍ ବିରୋଧୀ ବିଦ୍ରୋହରେ ପର୍ଯ୍ୟବସିତ ହୋଇଥିବାର ଐତିହାସିକମାନେ କହନ୍ତି। "The Bhuyans and Juangos were vociferous against their native chiefs. Even they did not hesitate to resist the alien rulers who overlooked their traditions and felt needs." (Essay-Tribal resistance movement in Orissa-1821-1942. P.K. Mishra, Book - 'People movement in Orissa during the colonial era', P163)

ଭୂୟାଁ ବିଦ୍ରୋହର ଦ୍ୱିତୀୟ ପର୍ଯ୍ୟାୟର ସୂତ୍ରଧର ଥିଲେ ଧରଣୀଧର ଭୂୟାଁ। ଧରଣୀଧର ଜଣେ ଜ୍ଞାନ ପିପାସୁ ଛାତ୍ର ଥିବାରୁ ରାଜଦରବାରର ସହାୟତାରେ କଟକରୁ ସର୍ଭେୟର୍ ତାଲିମ ପ୍ରାପ୍ତ ହୋଇ ରାଜ୍ୟର ବନ୍ଦୋବସ୍ତ ବିଭାଗରେ କାର୍ଯ୍ୟ କରୁଥିଲେ। ରାଜ ଦରବାରର କାର୍ଯ୍ୟ ପ୍ରଣାଳୀକୁ ସେ ଅତି ପାଖରୁ ଲକ୍ଷ୍ୟ କରୁଥିଲେ। ବିପ୍ଳବୀ ଭୂୟାଁନେତା ରତ୍ନା ନାୟକ ଓ ତାଙ୍କ ଛଅଜଣ ସହଯୋଗୀଙ୍କର ଫାଶୀ ଦଣ୍ଡ ଧରଣୀଧରଙ୍କୁ ବାସ୍ତବରେ ବିଚଳିତ କରି ଦେଇଥିଲା ଓ ନିଜ ଜାତିମନସ୍କ କରି ଦେଇଥିଲା। ତା' ଆଗରେ ତା'ର ଭାଇ ଗୋପାଳକୁ ରାଜବନ୍ଦୀ କରି ଜେଲ୍‌ରେ ମଧ ଅକଥନୀୟ ଅତ୍ୟାଚାର କରାଗଲା। ଧନୁର୍ଜୟ ଭଞ୍ଜଙ୍କଠାରୁ ବୃତ୍ତି ଲାଭ କରି ପାଠ ପଢ଼ିଥିଲେ ମଧ ସେ ମନେ ମନେ ତାଙ୍କ କାର୍ଯ୍ୟକଳାପ ପ୍ରତି ଘୃଣାଭାବ ପୋଷଣ କରିଥିଲା। ମାଛ କାନ୍ଦଣା ଜୋରକୁ ବାନ୍ଧି ସେଇ ଜଳ ଭଣ୍ଡାରରୁ ନିଜ ଗଡ଼କୁ ପାଣି ସରବରାହ କରିବାର ଯୋଜନାରେ ଧରଣୀଧର ସର୍ଭେ କାର୍ଯ୍ୟକରି ଆସିଷ୍ଟାଣ୍ଟ୍ ମ୍ୟାନେଜର୍ ବିଚିତ୍ରାନନ୍ଦ ଦାସଙ୍କୁ ସ୍ଥାନ ନିରୂପଣରେ ସାହାଯ୍ୟ କରିଥିଲା। ଏଇ ଯୋଜନାରେ ଭୂୟାଁମାନଙ୍କୁ ବେଠି ଖଟାଇ କାର୍ଯ୍ୟ ଆଦାୟ କରିଥିଲେ ଏଇ ବିଚିତ୍ରାନନ୍ଦ ଦାସ ମଧ। "ପେସ୍କାର୍‌ରୁ ଉଠିଥିବା ଆସିଷ୍ଟାଣ୍ଟ ମେନେଜର ବିଚିତ୍ରାନନ୍ଦ ନିଜର ମହତ୍ତର କର୍ମଠତା ପ୍ରମାଣିତ କରିବା ପାଇଁ ସମଗ୍ର ଯୋଜନାଟି କେବଳ ମାଗଣା ଓ ବେଠିରେ କରାଇନେବାକୁ ବସିଲେ। ଯେଉଁ ରାଜା ପଥରର ସୁପ୍ରାପ୍ୟତା ସତ୍ତ୍ୱେ ଦେ'ଗାଁର ବୈତରଣୀ ବନ୍ଧ ଉଠାଇବା ପାଇଁ ଗନ୍ତାଘରୁ ସେ କାଳରେ ମଧ ଦେଢ଼ଲକ୍ଷ ଟଙ୍କା ଖର୍ଚ୍ଚ କରିଥିଲେ, ସେ ମାଛ କାନ୍ଦଣା ଜୋର ଯୋଜନାରେ ଦଶ ହଜାର ଟଙ୍କା ବ୍ୟୟକୁ ଯେ ନାକ ଟେକିଲା, ଏଥିରୁ ଜଣା ପଡୁଛି, ରାଜାଟା ଅବ୍ୟବସ୍ଥିତ ଚିତ୍ର ଏବଂ ଅଗ୍ର-ପଶ୍ଚାତ୍-ବିଗ୍ଚରହୀନ।" (ସରସ୍ୱତୀ ଫକୀରମୋହନ-ଡକ୍ଟର ମାୟାଧର ମାନସିଂହ-ପୃ.୧୨୧)

ଧରଣୀଧର ବିଦ୍ରୋହର ମାଛକାନ୍ଦଣା ବନ୍ଧ ନିର୍ମାଣ କାଳରେ ହୋଇଥିବା ଅତ୍ୟାଚାର ହୋଇଥିଲା ପ୍ରଥମ ପ୍ରସଙ୍ଗ - ଯାହା ଭୂୟାଁଙ୍କ ବିଦ୍ରୋହୀ ମନରେ ଅଗ୍ନି ସଂଯୋଗ କରିଥିଲା। ଧରଣୀଧର ନିଜକୁ "ମହାରାଣୀଙ୍କ ପୁତ୍ର" ରୂପେ ପ୍ରଚାର କରି ବିଦ୍ରୋହର ନେତୃତ୍ୱ ନେଇଥିଲେ। ସେତେବେଳେ ବ୍ରିଟିଶ ସାମ୍ରାଜ୍ୟ ଭିକ୍ଟୋରିଆଙ୍କୁ କେବଳ 'ମହାରାଣୀ' କୁହାଯାଉଥିଲା। ଦେଶୀୟ ରାଜ୍ୟର କରଦ ରାଜା ୧୮୫୭ର ବିଦ୍ରୋହ ପରେ ସିଧାସଳଖ ମହାରାଣୀଙ୍କ ସନନ୍ଦ ବଳରେ ନିଯୁକ୍ତି ହୋଇଥିବା ଦୃଷ୍ଟେ 'ମହାରାଣୀଙ୍କ ପୁତ୍ର' ରୂପେ ଧରଣୀଧର ନିଜକୁ ପରିଚିତ କରାଇବା ତାତ୍ପର୍ଯ୍ୟପୂର୍ଣ୍ଣ। କିନ୍ତୁ ଧରଣୀର ଏଇ ଆତ୍ମ ପ୍ରଚାର ଅଭିଯାନକୁ ଅଫିସିଆଲ୍ ରେକର୍ଡ଼ରେ ଦୃଢ଼ୀଭୂତ କରିଥିଲେ ଫକୀରମୋହନ।

୧୮୯୧ ମସିହା ମେ'ମାସର୧୮ ତାରିଖରୁ ସେଇ ମାସ ଅଣତିରିଶ ତାରିଖ ଯାଏ ଫକୀରମୋହନ ଧରଣୀଧରଙ୍କ ଅଧୀନରେ ନିଜର ବନ୍ଦୀର ଜୀବନଯାପନ କରିଥିଲେ। ସେତେବେଳେ ସେ ଧରଣୀଙ୍କ ତରଫ୍‌ଦାରୀ କରି ନୂଆ ମ୍ୟାନେଜର୍ ହିସାବରେ ଯେଉଁସବୁ ପତ୍ରାଳାପ କରିଥିଲେ ପ୍ରତି ପତ୍ରରେ ଧରଣୀଙ୍କୁ ସେ "ମହାରାଣୀଙ୍କ ପୁତ୍ର" ବୋଲି ଚିତ୍ରିତ କରିଥିଲେ। ପ୍ରସିଦ୍ଧ ଗୁଆପାନ ସରବରାହ କରିବାର ଚିଠିରେ ସେ ଲେଖିଥିଲେ- "ମହାରାଣୀଙ୍କ ପୁତ୍ର ସକାଶେ ନିତାନ୍ତ ଦରକାର। ଅତିଶିଘ୍ର ଶହେ ହେଲେ ମଧ ପାନ, ଦୁଇଶ' ଗୁଆ ପଠାଇବୁ....." ଇତ୍ୟାଦି ପୁଣି ରାଇସୁଆଁ ଆଡୁ ଧରଣୀକୁ ଆରେଷ୍ଟ କରିବାକୁ ଆସୁଥିବା ସାହେବମାନଙ୍କୁ ଫକୀରମୋହନ ମହାରାଣୀଙ୍କ ସେବକ ବୋଲି କହି ସେମାନେ ଧରଣୀଙ୍କୁ ବା ମହାରାଜାଙ୍କ ପୁତ୍ରଙ୍କୁ ସଙ୍ଖୋଳିବାକୁ ଆସୁଛନ୍ତି ବୋଲି କହିଥିଲେ। ମହାରାଣୀଙ୍କ ପୁତ୍ର କିଛି ବାଟ ଆଗେଇ ଯାଇ ସେମାନଙ୍କୁ ପାଛୋଟି ଆଣିବା ଉଚିତ୍ ବୋଲି ସେ କହିଥିଲେ। ତେଣୁ 'ମହାରାଣୀଙ୍କ ପୁତ୍ର' ଶବ୍ଦ ଦିଓଟି ଫକୀରମୋହନଙ୍କ ଉର୍ବର ମସ୍ତିଷ୍କ ପ୍ରସୂତ। ଏହି ଶବ୍ଦଦ୍ୱୟକୁ ସେ ଧରଣୀର ଆତ୍ମ-ପୌଢ଼ୀକୁ ସନ୍ତୁଷ୍ଟ କରିବା ପାଇଁ ବା ନିଜର କୁଟନୈତିକ ଚାଲ୍ ଚରିତାର୍ଥ କରିବା ପାଇଁ ବାରମ୍ବାର ବ୍ୟବହାର କରିଥିଲେ।

ଧରଣୀଧରଙ୍କୁ ରାଜଦ୍ରୋହ ଅପରାଧରେ ଜେଲ୍ ଦଣ୍ଡ ହେବା ପରେ ମଧ ଭୂୟାଁ ମେଳି ଦମିତ ହୋଇନଥିଲା। ୧୮୯୪ ମସିହା ଯାଏ ଏ ମେଳି ଚାଲୁ ରହିଥିଲା। ବ୍ରିଟିଶ୍ ସରକାରଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ କେନ୍ଦୁଝର ରାଜ୍ୟର ଆଦିବାସୀମାନଙ୍କର ବିକାଶ ନିମନ୍ତେ ଅନେକ ପଦକ୍ଷେପ ରାଜଦରବାର ନେଇଥିଲେ। ମେଳିର ସାଫଲ୍ୟ ବିଷୟରେ ଉଲ୍ଲେଖ କରି ଐତିହାସିକ ମତ ଦିଅନ୍ତି - "The condition of the tribal dominated Keonjhar gradually improved under the liberal administrative guidance of the Paramount Power. Viewed from this angle, the tribal resistance movement in Keonjhar was probably the most successful one. (P.K. Mishra's essay-P.164)



# ନବ୍ୟ-ସାମ୍ରାଜ୍ୟବାଦର ଈଗଲ : ଲେଖକ ଆଗରେ ଚ୍ୟାଲେଞ୍ଜ୍

"ସଭ୍ୟତାର ଗଳ୍ପ" ପୁସ୍ତିକାରେ ଲେଖକ ଜୋଡ୍ ମହାଶୟ ସଭ୍ୟତାକୁ ମାନବ ଜୀବନ ଯାତ୍ରାର ମୂଳଧାର ବୋଲି ଅଭିହିତ କରନ୍ତି। ପୃଥିବୀରେ ସିନ୍ଧୁ, ମେସୋପଟାମିଆ, ସେମିଟିକ୍, ମଙ୍ଗୋଲ ଆଦି ଯେତେ ସଭ୍ୟତା ଆମେ ଦେଖୁ, ଏସବୁ ନଦୀମାତୃକ ସଭ୍ୟତା। ନଦୀର ଅବବାହିକା ଅଞ୍ଚଳକୁ ଭିତ୍ତିଭୂମି କରି ଏଗୁଡ଼ିକ ଗଢ଼ିଉଠିଥିଲା। ସଭ୍ୟତା ମୂଳ ପାଠ ହେଲେ, ସଂସ୍କୃତି ହେଲା ତାହାର ପ୍ରତିଫଳନ। ଗୋଟିଏ ନିର୍ଦ୍ଦିଷ୍ଟ ସଭ୍ୟତାର ଲୋକଙ୍କ ସ୍ୱଭାବ, ଆଚାର ବିଚାର, ବିଶ୍ୱାସ, ରୀତିନୀତି, ପରମ୍ପରା ଇତ୍ୟାଦିକୁ ମିଶାଇ ସେଇ ଇଲାକାର ସଂସ୍କୃତି ଗଠିତ ହୋଇଥାଏ। ସଭ୍ୟତା ଗଛର ମୂଳ ହେଲେ, ସେଇ ଗଛରେ ଫୁଟୁଥିବା ଫୁଲର ବାସ୍ନା ହେଲା ସଂସ୍କୃତି।

ଆଧୁନିକ ସମାଜ ବିଜ୍ଞାନୀମାନେ (ଯଥା : କାର୍ଲ ମାର୍କସ୍, ଲେନିନ୍ ଓ ମାଓ-ସେ-ତୁଙ୍ଗ୍) ସଂସ୍କୃତିକୁ ଗୋଟିଏ ଭୂଖଣ୍ଡର ସାମାଜିକ ଅର୍ଥନୀତିକ ଢ଼ାଞ୍ଚାର ପ୍ରତିଫଳନ ବୋଲି କହନ୍ତି। ନିର୍ଦ୍ଦିଷ୍ଟ ସମୟ ଖଣ୍ଡରେ ଗୋଟିଏ ରାଷ୍ଟ୍ରତାନ୍ତ୍ରିକ ଭୂଖଣ୍ଡରେ ରାଜନୀତିକ-ସାମାଜିକ ସ୍ଥିତିରୁ ସୃଷ୍ଟି ହୋଇଥାଏ ତାହାର ଅନୁରୂପ ଏକ ଅର୍ଥନୈତିକ ଧାରା। ଏଇ ଅର୍ଥନୈତିକ ଧାରା ହିଁ ସୃଷ୍ଟି କରିଥାଏ ତାହାରି ଗୁଣାବଳୀ ଯୁକ୍ତ ଏକ ନୂଆ ସଂସ୍କୃତି। ଗତାୟୁ ଅର୍ଥନୈତିକ ଜୀବନର ମୂଲ୍ୟବୋଧ ଓ ନୂଆ ଆସୁଥିବା ଅର୍ଥନୈତିକ ମୂଲ୍ୟବୋଧ ମଧ୍ୟରେ କ୍ରମାଗତ ସଂଘର୍ଷ ଓ ସମନ୍ୱୟ ମଧ୍ୟରୁ ନୂଆ ସଂସ୍କୃତି ଗଢ଼ିଉଠେ। ଏଇ ସଂଘର୍ଷକୁ ସାଧାରଣ ମଣିଷ କଦାପି କରାୟତ୍ତ କରି ରଖି ପାରେନା। ବରଂ ସଂଘର୍ଷ ଓ ସମନ୍ୱୟର ଗୋଳିଆ ପାଣିରେ ସେ କାଠ ଗଣ୍ଡିଟେ ଭଳି ଭାସି ଚାଲେ। ନୂଆ-ପୁରୁଣାର ସଂଘର୍ଷରେ ମଣିଷ ଏତେ ଉବୁଟୁବୁ ହୁଏ ଯେ ଆସ୍ତେ ଆସ୍ତେ ତା' ଚିନ୍ତା ଓ ଚେତନାରେ ଏକ ନୂଆ ଧାରା ପ୍ରବାହିତ ହେବାର ସେ ଅନୁଭବ କରେ।

ବେଦକୁ ଯଦି ତତ୍‌କାଳୀନ ସମାଜରେ ଚଳୁଥିବା ସଂସ୍କୃତିର ଫଳଶ୍ରୁତି ବୋଲି ଆମେ ବିଚାର କରୁ, ତେବେ ସେ ସମୟରେ ସମାଜର ଅର୍ଥନୈତିକ ଚରିତ୍ର ଅର୍ଦ୍ଧ-ଭ୍ରାମ୍ୟମାଣ ଓ ଅର୍ଦ୍ଧ-କୃଷିଜୀବୀ ବୋଲି ଆମେ କହିପାରୁ। ବେଦ ରଚନା କାଳରେ ସମାଜ ଥିଲା ଏକ ପ୍ରାଚୀନ ସାମ୍ୟବାଦୀ ସମାଜ - ଯେଉଁଥିରେ ମଣିଷ ଜୀବନ ଧାରଣ ପାଇଁ ପ୍ରକୃତି ଉପରେ ସମ୍ପୂର୍ଣ୍ଣ ନିର୍ଭର କରୁଥିଲା। ମଣିଷ State of Natureର ବା ପ୍ରକୃତିର ସାମ୍ରାଜ୍ୟରେ ବସବାସ କରୁଥିଲା। ଜଙ୍ଗଲର ପ୍ରାକୃତିକ ପରିବେଶକୁ ଆବାଦ୍ କରି ନିଜ କ୍ଷମତା ଅନୁସାରେ ଯାହା ଉତ୍ପାଦନ କଲା, ସେଇଥିରୁ ହିଁ ସେ ତା'ର ଗୁଜୁରାଣ ମେଣ୍ଟାଇଲା। ପ୍ରକୃତିର ମୂର୍ତ୍ତ ପ୍ରତିନିଧି ଅଗ୍ନି, ବରୁଣ, ସୂର୍ଯ୍ୟ, ପବନକୁ ଦେବତା ବୋଲି ସମ୍ବୋଧନ କରି ମଣିଷ ସେଇମାନଙ୍କ ପୂଜା କଲା। ବେଦର ନାୟକ ହେଲେ

ସେଇମାନେ - ମାତ୍ର 'ଈଶ୍ୱର' ନୁହେଁ। ବେଦ ରଚନାର ଅପରାହ୍ନରେ ବା ଅଥର୍ବ ବେଦ ରଚନା କାଳରେ ଆରଣ୍ୟକ ସଂସ୍କୃତିର ଘୋରତର ପରିବର୍ତ୍ତନମାନ ହେଲା। ମଣିଷ ମନରେ ଲୋଭ ଓ କାମନାମାନ ବିରାଜମାନ କଲା। ଯଜ୍ଞକୁଣ୍ଡରେ ବ୍ରାହ୍ମଣ ସନ୍ତାନ ସୁନ୍‌ସେପ୍‌କୁ ବଳିରୂପେ ଗ୍ରହଣ କରିବା ପାଇଁ ଲୋଭୀ ବରୁଣ ଅଡ଼ି ବସିଲା। ଇନ୍ଦ୍ରଙ୍କ ଭର୍ତ୍ସନା ଶୁଣି ବରୁଣ ଏଥିରୁ ନିବୃତ୍ତ ହେଲେ। ସମାଜରେ ସେତେବେଳକୁ ମଣିଷ ମନରେ ଲୋଭର ସଞ୍ଚାର ହେଲାଣି ବୋଲି ଏଇ ଘଟଣାରୁ ଜଣାପଡ଼େ। ଲୋଭ ଓ ବିଦ୍ୱେଷ ବଢ଼ିବା ସଙ୍ଗେ ସଙ୍ଗେ ସମାଜର କୋଠ ଭୂସମ୍ପତ୍ତି ଓ ଗୋସମ୍ପଦକୁ ଦଳେ ଚତୁର ଲୋକ ଅକ୍ତିଆର କରିବାକୁ ଚେଷ୍ଟା କଲେ। ଦୁର୍ବଳ ଦଳଟି ବଞ୍ଚିବା ପାଇଁ ଜମି ମାଲିକଙ୍କ ବଶ୍ୟତା ସ୍ୱୀକାର କଲେ ଓ କ୍ରୀତଦାସର ଜୀବନ ଧାରଣ କଲେ। କୃଷି ଜମିର ପ୍ରସ୍ତୁତିକରଣ ଓ ଲଙ୍ଗଳର ଆବିଷ୍କାର ପିତୃକେନ୍ଦ୍ରିକ ସଂସ୍କୃତିର ନବପର୍ବକୁ ତ୍ୱରାନିତ କଲା। ଆରଣ୍ୟକ ସଂସ୍କୃତିର ମୂଳ ମନ୍ତ୍ର ଥିଲା ସ୍ୱାଭାବିକତା (ଋତ) କିନ୍ତୁ ପିତୃକେନ୍ଦ୍ରିକ ନୂଆ କୃଷିଗାମୀ ସଂସ୍କୃତିର ଚାଳିକା ଶକ୍ତି ହେଲା ନୈତିକତା। ନାରୀର ଇଜ୍ଜତ ଓ ତତ୍‌ସମ୍ପର୍କିତ ନୈତିକତାର ରକ୍ଷା ନିମନ୍ତେ ବିରାଟ କୁରୁକ୍ଷେତ୍ର ଯୁଦ୍ଧ ଅନୁଷ୍ଠିତ ହେଲା - ଯହିଁରେ ସ୍ୱଭାବବାଦ ବା ଋତ ବିଦାୟ ନେଲା ଓ ନୈତିକତାର ବିଜୟ ହେଲା।

ପଠାଣ ଓ ମୋଗଲ ରାଜତ୍ୱ କାଳରେ ହିନ୍ଦୁ ସଂସ୍କୃତି ସହିତ ମଧ୍ୟପ୍ରାଚ୍ୟର ବିଦେଶୀ ସଂସ୍କୃତିର ମହାମିଳନର ଅବକାଶ ଆସିଲା। ଆମ ମଠ ଓ ମନ୍ଦିରର ଢାଞ୍ଚା ଓ ଆକାର ପ୍ରକାରରେ ଆଫଗାନ୍ ସଂସ୍କୃତିର ପ୍ରଭାବ ପଡ଼ିଲା। ଗୃହର ଭିତିରି ସାଜସଜ୍ଜାରେ ମୋଗଲକଳା ଓ ଶିଳ୍ପ ପରମ୍ପରା ପ୍ରାଧାନ୍ୟ ବିସ୍ତାର କଲା। ଦୁଇ କୃଷ୍ଟି ଓ ସ୍ରୋତର ମହାମିଳନ ସଂଘଟିତ କରିବାକୁ ମୁଣ୍ଡ ଟେକିଲା ମଧ୍ୟଯୁଗର ଭକ୍ତି ଆନ୍ଦୋଳନ। ଏହା ସମନ୍ୱୟକାରୀର ଭୂମିକା ପାଳନ କଲା। ଦୁଇ ସାଂସ୍କୃତିକ ଧାରାର ମହାମିଳନ ଘଟାଇଲା। ଭକ୍ତି ଆନ୍ଦୋଳନରେ ଯେଉଁ ସନ୍ଥମାନେ କର୍ଣ୍ଣଧାର ସାଜିଲେ ସେମାନଙ୍କ ମଧ୍ୟରେ ନାନକ, ତୁକାରାମ୍, କବୀର, ରାମଦାସ, ତୁଳସୀ ଦାସ, ସାଲବେଗ- ଏ ସମସ୍ତେ ଥିଲେ ଶୂଦ୍ର ! କେବଳ ଚୈତନ୍ୟ ଥିଲେ ବ୍ରାହ୍ମଣ। ତେଣୁ ଭକ୍ତି ଆନ୍ଦୋଳନର ଚାଳିକା ଶକ୍ତି ରୂପେ ବ୍ରାହ୍ମଣେତର ଜାତିର ଭୂମିକା ଅତୀବ ଗୁରୁତ୍ୱପୂର୍ଣ୍ଣ ଥିଲା। ଏହା ହିନ୍ଦୁ ଓ ମୁସଲମାନୀ ପରମ୍ପରାକୁ ଭଲଭାବେ ସହବନ୍ଧିତ କରିଦେଲା।

ତା'ପରେ ଆସିଲା ଗୋରା ଶାସନ। ସେମାନେ ପହିଲେ ଭାରତକୁ ଜଳ ପଥରେ ବାଣିଜ୍ୟ ବ୍ୟବସାୟ କରିବାକୁ ଆସିଥିଲେ ଏବଂ ଏ ଦେଶରେ ତରଳ ସାମାଜିକ ଓ ରାଜନୈତିକ ଅବସ୍ଥା ଦେଖି ଏଠାରେ କୂଟନୀତି ଚଳାଇ ଦେଶର ଶାସକ ବନିଗଲେ। ନିଜ ଦେଶର ସାମନ୍ତବାଦୀ ଛାଞ୍ଚରେ ସେମାନେ ଏ ଦେଶର ଜମିଜମା ବ୍ୟବସ୍ଥାକୁ ଚଳାଇଲେ। ତାଙ୍କ ଢାଞ୍ଚାର ଅନୁକରଣରେ ଅମଲାତନ୍ତ୍ରଟିଏ ମାକ୍‌ଲେ ତିଆରି କଲେ। ପୋଲିସ୍ ଓ ଜେଲ୍ ବ୍ୟବସ୍ଥା ମଧ୍ୟ ତାଙ୍କ ଶୈଳୀରେ ଗଢ଼ି ଉଠିଲା। ଶାସକ ଓ ଜନସାଧାରଣଙ୍କ ମଧ୍ୟରେ ଖଜଣା ଆଦାୟକାରୀ ରୂପେ ଜମିଦାର ମଧ୍ୟସ୍ଥ ବନିଗଲା। ଶିକ୍ଷା ଓ ସଂସ୍କୃତିର କୌଣସି ଅଂଶ କେଉଁଟା ବି ଭାରତୀୟତାର ଗୁଣ ଧରି ରହି ପାରିଲା

ନାହିଁ। ତାଙ୍କ ଇଚ୍ଛାନୁସାରେ ସବୁ ଜିନିଷ ଗଠିତ ଓ ବର୍ଦ୍ଧିତ ହେଲା। ଖ୍ରୀଷ୍ଟିୟାନ୍ ଧର୍ମକୁ ସେମାନେ ପୃଷ୍ଠପୋଷକତା କରି ଆମ ଦେଶର ଗରିବଗୁରୁବା ଓ ନୀଚ ଜାତିର ଲୋକଙ୍କୁ ଧର୍ମାନ୍ତରୀକରଣ କଲେ। ଦେଶରେ ଧର୍ମାନ୍ତରୀ ଖ୍ରୀଷ୍ଟିୟାନ୍‌ଙ୍କ ସଂଖ୍ୟା ବଢ଼ିବାରୁ ତାଙ୍କ ସମର୍ଥକ ସଂଖ୍ୟା ବଢୁଛି ବୋଲି ସେମାନେ ଭାବିଲେ ତାଙ୍କ ଦେଶରୁ ସାହିତ୍ୟ, ରାଜନୀତି, ଦର୍ଶନ, ମନୋବିଜ୍ଞାନ ଓ ବିଜ୍ଞାନର କେତେ କେତେ ନବଜ୍ଞାନ ସେମାନେ ଆମପାଇଁ ମଧ୍ୟ ଆଣିଲେ। ପାଶ୍ଚାତ୍ୟ ଶିକ୍ଷାର ପ୍ରସାର ଫଳରେ ଦେଶରେ ଆସିଲା ନବଜାଗରଣ ପର୍ବ। ସେଲି, ବାଇରନ୍, ସେକ୍ସପିଅର୍ ଆମର ଘୁମ୍ ଭାଙ୍ଗିଦେଲେ। ମଧ୍ୟବିତ୍ତ ଶ୍ରେଣୀର ଚିନ୍ତା ମାନସରେ ସେମାନେ ସୂର୍ଯ୍ୟପରି ଉଇଁଲେ। ୧୯୪୭ ମସିହାର ଅଗଷ୍ଟ ମାସରେ ସେମାନଙ୍କର ଏଠାରୁ ବିଦାୟ ସତ୍ତ୍ୱେ ତାଙ୍କ ସଂସ୍କୃତିର ମହକ ଆମ ମାଟିରୁ କମିଲା ନାହିଁ। ଗାନ୍ଧି ଶାନ୍ତିପୂର୍ଣ୍ଣ ମାର୍ଗରେ ଭାରତରୁ ବ୍ରିଟିଶ ଶାସକମାନଙ୍କୁ ତଡ଼ି ଦେଇଥିବାରୁ ସେମାନେ ଗାନ୍ଧିଙ୍କ ପ୍ରତି ବହୁତ କୃତଜ୍ଞ ଥିଲେ। ଗାନ୍ଧିଙ୍କ ଶିଷ୍ୟମାନେ ସ୍ୱାଧୀନତା ପରେ ୟୁରୋପର ସେହି ମେଟ୍ରୋପଲିପୂର୍ଣ୍ଣ ଦେଶଗୁଡ଼ିକ ସହ ରାଜନୈତିକ ତଥା ଅର୍ଥନୈତିକ ସହଯୋଗ ରକ୍ଷା କଲେ। ଆମ ଦେଶୀ କମ୍ପାନୀଗୁଡ଼ିକ ଅନାୟାସରେ ବେପାର ବଣିଜ କ୍ଷେତ୍ରରେ ସେ ଦେଶର ବଡ଼ ବଡ଼ କମ୍ପାନୀମାନଙ୍କ ସହ ଅର୍ଥନୈତିକ ସହବନ୍ଧନରେ ଅନୁବନ୍ଧିତ ହୋଇ ରହିଥିଲେ। ରାଷ୍ଟ୍ର ବ୍ୟବସ୍ଥାର ଚରିତ୍ର ତେଣୁ ଅର୍ଦ୍ଧ-ସାମନ୍ତବାଦୀ ତଥା ଅର୍ଦ୍ଧ-ଉପନିବେଶବାଦୀ ହୋଇ ରହିଗଲା। ଦେଶର ଦକ୍ଷିଣପନ୍ଥୀ ରାଜନୈତିକ ଦଳଗୁଡ଼ିକ ବାସ୍ତବରେ ସମାଜରେ ଥିବା ସାମନ୍ତବାଦୀ ପ୍ରବଣତା ଓ ବିଦେଶୀଙ୍କ ଗୋଡ଼ାଣିଆପଣର ଫଳଶ୍ରୁତି ଥିଲେ। ନେହେରୁଙ୍କ ଉଦ୍ୟମରେ ଦେଶର ତଥାକଥିତ ଜାତୀୟ ସଂସ୍କୃତିକୁ ସୁବ୍ୟବସ୍ଥିତ କରିବାକୁ ଉଦ୍ୟମ ହେଲା - ନିଜ ନିଜ ମଧ୍ୟରେ ଧର୍ମଧାରଣାର ସହନଶୀଳ ଆଚରଣ, ଶାନ୍ତିପୂର୍ଣ୍ଣ ସହାବସ୍ଥାନ, ମାନବବାଦର ଅଭିକର୍ଷଣକୁ ଅଗ୍ରାଧିକାର ଦିଆଗଲା। ପୁରୁଣା ସ୍ଲୋଗାନ - "ବସୁଧୈବ କୁଟୁମ୍ବକମ୍"କୁ ଲୋକ ଦେଖାଣିଆ ଭାବେ 'ପଞ୍ଚଶୀଳ' ମହାଯଜ୍ଞ ମଞ୍ଚରେ ବାରମ୍ବାର ଦୋହରାଗଲା। କିନ୍ତୁ ୟୁରୋପରୁ ବହି ଆସୁଥିବା ଆଧୁନିକତାର ହାୱା ଏସବୁ ମୂଲ୍ୟବୋଧକୁ ନିଜସ୍ୱ ଗପଦ୍ୱାରା କରିଦେଲା ଉର୍ଦ୍ଧ୍ୱଶ୍ୱାସ। ବାହାରିଆ ଚାପ ଓ ଭିତରର ସମାଜର ଉଦ୍‌ବେଳନକୁ ସୁସମୀକରଣ କରି ରଖିବାପାଇଁ ନେହେରୁ 'ମିଶ୍ର ଅର୍ଥନୀତି'ର ସ୍ୱର୍ଣ୍ଣପ୍ରଭ ମାର୍ଗ ବାଛି ନେଲେ। ନିଜେ ନିଜ ମତବାଦ ନେଇ ବଞ୍ଚ ଅନ୍ୟକୁ ମଧ୍ୟ ତାହାର ବିଶ୍ୱାସ ଓ ମତକୁ ଧରି ବଞ୍ଚିବାର ଅଧିକାର ଦିଅ - ଏଇ ହେଲା ଜୀବନ ଧାରଣର ଫର୍ମୁଲା।

ଆମେରିକାର ବିଶ୍ୱ ତମାମ୍ ବଜାର ବିଜୟର ମସୁଧାକୁ କାର୍ଯ୍ୟକାରୀ କରିବା ପାଇଁ GATT ରାଜିନାମା ଦୁନିଆବାସୀଙ୍କ ଆଗରେ ମେଲେଇ ହୋଇ ପଡ଼ିଲା। ଆମେରିକା କହିଲା - ଏଥିରେ ଭଲରେ ଭଲରେ ସମସ୍ତେ ଦସ୍ତଖତ କର, ନ ହେଲେ ଏକଘରିକିଆ ହୋଇଯିବ। ସୋଭିଏତ୍ ୟୁନିୟନ୍‌ର ବିଘଟନ ଯୋଗୁଁ ଏ ବିଶ୍ୱଗ୍ରାସୀ ମସୁଧାକୁ ବିରୋଧ ଓ ପ୍ରତିହତ କରିବା ପାଇଁ ପୃଥିବୀରେ ତାକ୍‌ତ କାହାର ନଥିଲା। ପ୍ରାୟ ସମସ୍ତେ ସୁନାପିଲା ପରି GATT ଚୁକ୍ତିରେ ସ୍ୱାକ୍ଷର କଲେ ଓ WTO ର ସଦସ୍ୟ ବନିଗଲେ। ବ୍ରିଟିଶର ଆସିବା ପୂର୍ବରୁ ଆମ ଗାଁ ଗହଳିର ପରିବାରଗୁଡ଼ିକ ଏକାନ୍ନବର୍ତ୍ତୀ ଚରିତ୍ରର ଥିଲା। ବ୍ରିଟିଶ ଶାସନ ଫଳରେ ଏ ଦେଶରେ ଗଢ଼ିଉଠିଲା ଅଣୁ-ପରିବାର।

ବାପା, ମା ଓ ପିଲାପିଲିଙ୍କୁ ନେଇ ଏ ପରିବାର ଘୂରି ବୁଲିଲା ରୋଜଗାରକ୍ଷମ ବାପା ବା ମା'ଙ୍କ ଘରି ପାଖରେ। ଯୌଥପରିବାରର ଅବକ୍ଷୟ ଦେଖି ଆମ ଭାଷାର ଉପନ୍ୟାସକାର ଫକୀରମୋହନ, କାହ୍ନୁଚରଣ ପ୍ରଭୃତି ତାଙ୍କ ଲେଖାମାନଙ୍କରେ କମ୍ ପାଟି କରି ନାହାନ୍ତି। ଆମେରିକୀୟ ନବ୍ୟ ସାମ୍ରାଜ୍ୟବାଦୀ ପ୍ରଭାବ ଆମ ସମାଜ ଉପରେ ପଡ଼ିବା ଫଳରେ ଏଠି ଏକକ ପରିବାର ବ୍ୟବସ୍ଥା ଭାଙ୍ଗିବାରେ ଲାଗିଛି ଓ ମିଳିତବାସ ବ୍ୟବସ୍ଥା ବା Living Together ରୀତି ପ୍ରଚଳିତ ହେଲାଣି। 'ବିବାହ ନାମକ ଅନୁଷ୍ଠାନକୁ ଏକବାରେ ଉଡ଼େଇ ଦେଇ ପ୍ରେମୀଯୁଗଳ ଏକ ଘରତଳେ ଦେହ ବିନିମୟ କରି ବସ୍ଥି ରହିବାକୁ ଲିଭିଂ ଟୁଗେଦର ରୀତି କହନ୍ତି'। ସମାଜର ଅନୁମୋଦନକୁ ଏ ଦମ୍ପତି ସମୂଳେ ବେଖାତିର ଓ ବିନଷ୍ଟ କରି ଦେଉଛନ୍ତି। ଏତଦ୍ୱାରା ମଣିଷ ପୁଣି ଆରଣ୍ୟକ ଜୀବନକୁ ଫେରିଯିବା ଭଳି ଜଣାପଡୁଛି।

ୟୁରୋପରେ ବିଜ୍ଞାନର ଅଭ୍ୟୁଦୟ କାଳରେ ଚିରାଚରିତ ଧର୍ମ ଓ ବିଜ୍ଞାନ ମଧ୍ୟରେ ତୁମୂଳ ବିରୋଧାଭାସ ଦେଖା ଦେଇଥିଲା। କସମ୍‌ଲୋଜି ଓ ଧର୍ମ ମଧ୍ୟରେ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ହୋଇ ପାରିନଥିଲା। କିନ୍ତୁ ଭାରତରେ ବିଜ୍ଞାନର ପ୍ରସାର କରାହେବାବେଳେ ଏଠାକାର ଧର୍ମ ତଥା ଦର୍ଶନ ବେଶ୍ ସହନଶୀଳ ନୀତି ଅବଲମ୍ବନ କଲେ। ବୁଢ଼ାବୁଢ଼ୀ ରକ୍ଷଣଶୀଳ ମହନ୍ତ, ଗୃହସ୍ଥମାନେ ଏଥିପ୍ରତି ପ୍ରଦର୍ଶନ କଲେ ଏକ ବନ୍ଧୁତ୍ୱପୂର୍ଣ୍ଣ ଦୃଷ୍ଟିଭଙ୍ଗୀ। ମୁସଲମାନ୍ ମାନେ ଦେଶକୁ ଆସିବା ବେଳେ ଲୋକଙ୍କ ମନୋଭାବ ଯେମିତି ସହନଶୀଳତାରେ ସିକ୍ତ ହୋଇଥିଲା, ବିଜ୍ଞାନ ସହିତ ସେହିପରି ଘଟିଲା। ସାଧୀନତା ଲାଭର ପ୍ରାକ୍-କାଳରେ ବ୍ରିଟିଶ ସାମ୍ରାଜ୍ୟବାଦୀଗଣ କପଟପାଶା ଖେଳି ମୁସଲମାନ ଓ ହିନ୍ଦୁଙ୍କ ମଧ୍ୟରେ ବିଭେଦ ସୃଷ୍ଟି କଲେ। ଜାତିଆଣ ଦଙ୍ଗାରେ ଭାରତର ଗଗନ ପବନ ମଥିତ ହେଲା। ସେଇ କପଟପାଶା ଏବେ ନବ୍ୟ ସାମ୍ରାଜ୍ୟବାଦୀ ଆମେରିକାର ହାତରେ ପଡ଼ିଛି। ଗତ ଶତାବ୍ଦୀର ନବମ ଦଶକରେ ପାକିସ୍ତାନର ଆଜାଦ୍ କାଶ୍ମୀର ଅଞ୍ଚଳରେ ଯେଉଁ ଧର୍ମାନ୍ଧ ତାଲିବାନ୍‌ମାନେ ଆଫଗାନିସ୍ତାନ ଦଖଲ ନିମନ୍ତେ ଆମେରିକାର ସାମରିକ ଅଫିସରଙ୍କଠାରୁ ଯୁଦ୍ଧାସ୍ତ୍ର ପ୍ରୟୋଗର ଟ୍ରେନିଂ ନେଉଥିଲେ ଓ ଅର୍ଥ-ଅସ୍ତ୍ରର ସାହାଯ୍ୟ ନେଉଥିଲେ, ସେମାନେ ଘଟଣାଚକ୍ରରେ ନବ୍ୟ-ସାମ୍ରାଜ୍ୟବାଦୀଙ୍କ ନୂଆ ଶତ୍ରୁ ହୋଇଗଲେ। ଯିଏ ଥିଲା କାଲିର ତାଲିବାନ୍- ଆଜି ସିଏ ହେଲା ଅଲ୍-କାଏଦା। ଅଲ-କାଏଦା ଉପରେ ଏବେ ବିଶ୍ୱବ୍ୟାପୀ ସନ୍ତ୍ରାସ ଜାରି କରିଛି ଆମେରିକା- ବହୁ କାଇଦା କୌଶଳ କରି ତାହାର ଗୁରୁ ଦ୍ରୋଣାଚାର୍ଯ୍ୟ ଉସ୍‌ମା - ବିନ୍ - ଲାଡ଼େନ୍‌ଙ୍କୁ ଧରିବା ପାଇଁ ଉଦ୍ୟମ କରୁଛି। ନିଜ ସୁବିଧାନୁସାରେ ଏହିପରି ଆମେରିକା ଉଗ୍ରବାଦୀମାନଙ୍କ ପ୍ରତି ଘୃଣା ଓ ପ୍ରେମର ନୀତି ଅବଲମ୍ବନ କରିଚାଲିଛି।

ମାନବ ଓ ମାନବ ମଧ୍ୟରେ ସୌହାର୍ଦ୍ଦ୍ୟପୂର୍ଣ୍ଣ ସମ୍ପର୍କ ଭଲ ପାଇବା ସ୍ନେହଶ୍ରଦ୍ଧା ଏସବୁ ଇତିହାସ ହୋଇଗଲାଣି। ଏବେ ନବ୍ୟ-ସାମ୍ରାଜ୍ୟବାଦୀଙ୍କ "Use and throw" ବା "hire and fire" ହେଲାଣି ସମ୍ପର୍କର ମୂଳସୂତ୍ର। ଏଇଥିପାଇଁ ଚିରାଚରିତ ମାନବିକତାବୋଧର ଦୁର୍ଗ ପତନ ଘଟିଛି। ସୋଭିଏତ୍ ୟୁନିୟନ୍‌ର ପତନ ପରେ ସାରା ବିଶ୍ୱରେ କ୍ଷମତାର ସମୀକରଣ ନୀତି ଖତମ୍

ହୋଇଛି । ଏକକ ଅଧିନାୟକତ୍ୱରେ ସମଗ୍ର ବିଶ୍ୱ ରହିଛି । ଶାନ୍ତି ଓ ନିରସ୍ତ୍ରୀକରଣନୀତି ବାଜ୍ୟାପ୍ତ ହୋଇଛି । ଯୁଦ୍ଧ ଓ ସନ୍ତ୍ରାସ ନୀତି ପ୍ରଚଳିତ ହୋଇଛି । ମଣିଷ ପୁଣି ବଳ ପ୍ରୟୋଗକରି ପ୍ରତି କଥାର ସମାଧାନ କରିବ ବୋଲି ମସୁଧା କରିଛି । ଗୋଟିଏ ଲୋକ - ବିନ୍ ଲାଡ଼େନ୍‌କୁ ଧରିବା ପାଇଁ ଲାଗ୍ ଲାଗ୍ ଦୁଇଟି ଦେଶ (ଆଫଗାନିସ୍ତାନ ଓ ଇରାକ) ବୋମା ବର୍ଷଣର ଶିକାର ହେଲେ ଓ ଲକ୍ଷ ଲକ୍ଷ ନିରପରାଧ ଲୋକ ମଲେ । ଜାତିସଂଘ ନିର୍ମୋକ ହୋଇ ଏ ନାରକୀୟ ଲୀଳା ଓ ନରମେଧ ଯଜ୍ଞ ଦେଖିଲା । ଆମେରିକାର ଅର୍ଥନୀତି ଏବେ ସେଠାକାର ଯୁଦ୍ଧାସ୍ତ୍ରର ଗଦିୟାନ୍ ମହାଜନଙ୍କ କୋଟି କୋଟି ଡଲାର୍‌ର ମୁନାଫା ଉପରେ ନିର୍ଭରଶୀଳ ହୋଇ ଚାଲିଛି । ଯୁଦ୍ଧାସ୍ତ୍ର ଓ ନରସଂହାରକାରୀ ମାରଣାସ୍ତ୍ର ତଥା ତତ୍‌ସମ୍ପର୍କିତ ଜ୍ଞାନ କୌଶଳ ଅଧିକ ସଂଖ୍ୟାରେ ବିକ୍ରି ନ ହେଲେ ଆମେରିକା ଲୋକଙ୍କ ହାଣ୍ଡି ଚୂଲାରେ ବସି ପାରିବ ନାହିଁ । ତେଣୁ ନବ୍ୟ ସାମ୍ରାଜ୍ୟବାଦୀଙ୍କ କୁଟନୀତିଜ୍ଞମାନେ ଚତୁରତାର ସହିତ ଦେଶ ଓ ଦେଶ ମଧ୍ୟରେ ବିବାଦର ମଞ୍ଜି ପୋତି ଚାଲିଛନ୍ତି । କୌଣସି ବିବାଦ ବଢ଼ିବଢ଼ି କଳହ ଓ ଯୁଦ୍ଧର ରୂପ ନେଲେ, ଏମାନେ ମନେ ମନେ ଆନନ୍ଦିତ ହୁଅନ୍ତି - କାରଣ ଯୁଦ୍ଧାସ୍ତ୍ର ବଜାରରେ ଏଇଥିଯୋଗୁଁ ଗ୍ରାହକ ସଂଖ୍ୟା ବଢ଼ିଯାଏ ।

ବିଶ୍ୱବ୍ୟାପୀ ବଢ଼ି ଉଠିଥିବା ଏଇ 'ଯୁଦ୍ଧଂ ଦେହି' ମନସ୍କତାକୁ ଖଣ୍ଡନ କରିବାକୁ ଜନଗଣଙ୍କ ମଧ୍ୟରେ ଯୁଦ୍ଧ ବିରୋଧୀ ପ୍ରଚାରାଭିଯାନ କରିବାର ବେଳ ଆସିଛି । ଦିଗେ ଦିଗେ ଯୁଦ୍ଧଂ ଦେହି ଡାକରାର କେବଳ ପ୍ରତ୍ୟୁତ୍ତର ଦେଇ ପାରିବ ବିଶ୍ୱବ୍ୟାପୀ ଗଢ଼ିଉଠୁଥିବା ଏକ ଶାନ୍ତି ସଂଗ୍ରାମ । ଆଜି ବିଶ୍ୱ ଶାନ୍ତିର ପାଖେ ପାଖେ ଚାଲିଛି ଅନ୍ୟ ଏକ ମହାନ୍ ଆନ୍ଦୋଳନ - ତାହା ହେଲା 'ସବୁଜ ଶାନ୍ତି ଆନ୍ଦୋଳନ' । କଳକାରଖାନାର ସଂଖ୍ୟା ବୃଦ୍ଧି ହେତୁ ପ୍ରତିନିୟତ ପ୍ରଚୁର ଅଙ୍ଗାରକାମ୍ଳ ବାଷ୍ପ ବିଶ୍ୱ ବାୟୁମଣ୍ଡଳକୁ ଦୂଷିତ କରୁଛି । ଦିନୁଦିନ ଅସୁମାରି ବୃକ୍ଷ ଛେଦନ ଏପ୍ରକାର ଚାପକୁ ଅଧିକ ଓଜନଦାର କରୁଛି । ତେଣେ ପୋଲିସ ଓ ଜେଲ୍ ହାଜତରେ ପ୍ରତିଦିନ କେତେ କେତେ ବିଚାରାଧୀନ ବନ୍ଦୀର ବୃକ୍ଷକୁ ଭୂପତିତ ଓ ନିଷ୍ପ୍ରାଣ କରି ଦେଉଛି ରାଷ୍ଟ୍ରର ଆଇନ୍ ଶୃଙ୍ଖଳାର ତଥାକଥିତ ରକ୍ଷାକର୍ତ୍ତା । ଏହା ମୁକ୍ତିପ୍ରେମୀ ଜନଗଣଙ୍କ ମନକୁ ପ୍ରତିବାଦୀ ସଜାଉଛି ।

ମାନବିକ ଅଧିକାର ସୁରକ୍ଷା ନିମନ୍ତେ ବିଶ୍ୱସ୍ତରୀୟ ଜନାଦୃତ ସଂସ୍ଥା "ଆନ୍ତର୍ଜାତୀୟ କ୍ଷମା ପରିଷଦ"ର ସାହାଯ୍ୟ ନିଆଯାଇପାରେ । ଶିଳ୍ପ ପ୍ରତିଷ୍ଠା ନାମରେ ସ୍ପେସିଆଲ ଇକୋନମିକ୍ ଜୋନ୍ (SEZ)ର ଗଠନ ଓ ସେଥିପାଇଁ ଆଦିବାସୀ ଓ ହରିଜନଙ୍କ ଭିଟାମାଟିର ଅପହରଣ ଓଡ଼ିଶାରେ ବଡ଼ ସମସ୍ୟା ହୋଇଉଠିଛି । କାଶୀପୁର, ନୃସିଂହନାଥ, କଳିଙ୍ଗ ନଗର ଓ ଲାଞ୍ଜିଗଡ଼ରେ ଏଇଥିପାଇଁ ଦାବାନଳ ଜଳି ଉଠିଛି । ପ୍ରାକୃତିକ ପରିବେଶ ସୁରକ୍ଷା ଆଇନ୍‌କୁ ବିଦେଶୀ ପୁଞ୍ଜିପତିମାନେ ଆଦୌ ଖାତିର୍ କରୁନାହାନ୍ତି । ଓଡ଼ିଶା ସରକାର ଧନୀକମାନଙ୍କ ସପକ୍ଷରେ ଭାଉପୁର ନ୍ୟାୟରେ ସମ୍ମତ ସୂଚକ ଆଖିମିଟିକା ମାରୁଛନ୍ତି । ଦଳିତ ନିରନ୍ନ ଜନତାଙ୍କ ସପକ୍ଷରେ ଏଇ ଦୃଷ୍ଟିରୁ କବି, ଲେଖକ, ନାଟ୍ୟକାରଗଣ କଲମ ଉଠାଇବା ଉଚିତ ।

ନବ୍ୟ ସାମ୍ରାଜ୍ୟବାଦ ଶାସିତ ସମାଜରେ ଅବାଧ ଯୌନଚର୍ଯ୍ୟା, ଖୋଲାଖୋଲି ଧର୍ଷଣ ତଥା ହତ୍ୟାକାଣ୍ଡ ଜୀବନଧାରଣର ପନ୍ଥାରେ ପରିଣତ ହୋଇଗଲାଣି। ଯୌନ ଚର୍ଯ୍ୟାକୁ ଏକ ବ୍ୟକ୍ତିଗତ ବ୍ୟାପାର କହି ବ୍ୟକ୍ତିସ୍ତରରେ ଅନ୍ତରାଳରେ ରଖିବା ଅଭ୍ୟାସ ଏବେ ମରହଟିଆ ଚଳଣି ହେଲାଣି। ଆଜି ପ୍ରତି ଟିଭି ଚ୍ୟାନେଲ୍‌ରେ କଥା କଥାରେ ଆଲିଙ୍ଗନ, ପ୍ରକାଶ୍ୟ ଚୁମ୍ବନ ଓ ସମ୍ଭୋଗ ଆଦି ଚାଲିଲାଣି। ସେ ପୁଣି ଟିଭି ସ୍କ୍ରିନ୍‌ରେ ସାରା ପରିବାରର ଆଖି ସାମ୍ନାରେ। ଲୋକଙ୍କ ମାନସିକତାକୁ ଉଚ୍ଚାଟିତ କରି ରଖିବା ନିମନ୍ତେ ରେପ୍ ଓ ମର୍ଡ଼ରକୁ ଖୁବ୍ ଉଗ୍ରଭାବରେ ମିଡ଼ିଆରେ ଚିତ୍ରଣ କରାଯାଉଛି।

ଦରିଦ୍ରକୁ ଦୟା କରିବା, ବୟସ୍କମାନଙ୍କୁ ସମ୍ମାନ କରିବା, ଅସହାୟକୁ ସହାୟ ହେବା ଆମର ଯୁଗ ଯୁଗର ଚଳଣି ଥିଲା। ମାର୍କିନ୍ ସ୍ୱାର୍ଥବାଦୀ ସଂସ୍କୃତି ଏ ଚଳଣି ମୂଳରେ କୁଠାରାଘାତ କରିଛି। ସତ୍ୟ, ଦୟା, କ୍ଷମା ପାଇଁ ଯେଉଁ ଭାରତୀୟ ସଂସ୍କୃତି ଖ୍ୟାତ, ତାହା ଆସ୍ତେ ଆସ୍ତେ ବ୍ୟକ୍ତିବାଦୀ ସଂସ୍କୃତିରେ ରୁଦ୍ଧଶ୍ୱାସ ହୋଇ ପଡୁଛି।

ଭାରତକୁ ବହୁ ଭାଷା, ବହୁ ସଂସ୍କୃତି ଓ ବହୁଜାତିକ ସହାବସ୍ଥାନର ମହାନ୍ ସାଗରତୀର୍ଥ ବୋଲି ବିଶ୍ୱକବି କହନ୍ତି। ଏ ଦେଶର ସୀମା ସବୁକାଳେ ବିଦେଶୀ ଜ୍ଞାନ, ଦର୍ଶନ, ଜୀବନଚର୍ଯ୍ୟାକୁ ଆପଣାଇବା ପାଇଁ ଖୋଲା ରହିଆସିଛି। କାଳ କାଳର ଏ ସମନ୍ୱୟବାଦୀ ଅଭ୍ୟାସକୁ ନବ୍ୟ ସାମ୍ରାଜ୍ୟବାଦୀ ସଂସ୍କୃତି ଧୂଳିସାତ୍ କରିଦେବାକୁ ଚାହେଁ। ତା'ର ଇଙ୍ଗିତରେ ଏ ମାଟିରେ ମୁଣ୍ଡ ଟେକୁଥିବା ଜାତିଆଣବାଦ, ସାଂପ୍ରଦାୟିକତାବାଦ, ଆଞ୍ଚଳିକତାବାଦ ଓ ବର୍ଣ୍ଣବୈଷମ୍ୟବାଦକୁ ଲେଖକ ତାହାର କଲମ ମୂନରେ ବିଦ୍ଧ କରିବା ଦରକାର। ଆମେ ଗୁଜୁରାଟ ଦଙ୍ଗାର ପୁନରାବୃତ୍ତି ଚାହୁଁନା। ଯେଉଁମାନେ ଭାରତରେ ଏ ପ୍ରକାର ଅମାନୁଷିକତାର ଜାଲ ବିଛାଇ ଦେବାକୁ ଚାହାନ୍ତି, ସେମାନଙ୍କ ବିରୁଦ୍ଧରେ ସଚେତନ ଲେଖକର କଲମ ଆପୋଷହୀନ ସଂଗ୍ରାମ କରିଯାଉ।

ଘରକୋଣରେ ବସି ମାନବିକତା ସପକ୍ଷରେ କବିତା ଲେଖିବାର ଦିନକାଳ ଏବେ ଶେଷ ହୋଇଯାଇଛି। ଏବେ ଲୋକଙ୍କୁ ରାଜରାସ୍ତାକୁ ବାହାରି ଆସିବାକୁ ପଡ଼ିବ। ଏବେ ତୁଚ୍ଛା ପ୍ରତିବାଦ କରିବାର ଦିନକାଳ ମଧ୍ୟ ଶେଷ୍ ହୋଇଛି। ଆସିଛି ପ୍ରତିରୋଧର ସମୟ। ଲେଖକ ସେଇଥିପାଇଁ ଅଣ୍ଟାଭିଡ଼ି ଠିଆ ହେବା ଦରକାର।



# ଅଭିବ୍ୟକ୍ତିର ସ୍ୱାଧୀନତା

ମନର କଥା ଖୋଲି କହିବାକୁ ବା ଲେଖା ବା ଗୀତ, ନାଟକ ବିଭିନ୍ନ ପ୍ରକାର କଳା କୃତିରେ ପ୍ରକାଶ କରିବାକୁ ଅଭିବ୍ୟକ୍ତି କହନ୍ତି । ଅଭିବ୍ୟକ୍ତିର ପ୍ରକାଶକ ବ୍ୟତୀତ ତାହାର ଗ୍ରହୀତା ମଧ ଥାଏ । ଦାତା ଓ ଗ୍ରହୀତା ମଧରେ ସମାନତା ଓ ସମଭାବାପନ୍ନତା ନଥିଲେ ଅଭିବ୍ୟକ୍ତି ପ୍ରକାଶନର ସାର୍ଥକତା ନଥାଏ । ଯେଉଁ ଦେଶରେ ଏକ ଦଳୀୟ ଶାସନ ବ୍ୟବସ୍ଥାରେ ସାଧୀନ ମତ ବ୍ୟକ୍ତ କରିବା ବିଡ଼ମ୍ବିତ ସେ ଦେଶରେ ମଧ ମଣିଷର ଅନ୍ତର ତଳର କଥାକୁ ଫିଟାଇ କହିବା ପାଇଁ ଅପୂର୍ବ ପ୍ରକାଶ ମାଧମ ଅଛି । ଚୀନ୍‌ରେ କମ୍ୟୁନିଷ୍ଟ ଶାସକଙ୍କ ବିଷୟରେ ଶାସନକର୍ତ୍ତା ଜନଗଣଙ୍କ ମତାମତ ଓ ଟିପ୍ପଣୀ ଜାଣିବା ପାଇଁ ବେଜିଂ, ସାଂଘାଇ, ସିକିୟାଂ, କ୍ୟାଣ୍ଟନ ଆଦି ସହରର ଉପକଣ୍ଠରେ ଗଢ଼ିଛନ୍ତି ଡେମୋକ୍ରାଟିକ୍ ୱାଲ୍‌ମାନ । ରାତ୍ରିର ନିର୍ଜନ ପ୍ରହରରେ ମନର କଥା ନିର୍ଭୀକ ଭାବେ ସେହି କାନ୍ଥ ଦେହରେ ଲେଖିବା ପାଇଁ ଅବାଧ ସୁଯୋଗ ଦିଆଯାଇଛି । ଶାସିତଗଣ ଶାସକଙ୍କ ବିରୁଦ୍ଧରେ କି ପ୍ରକାର ଚିନ୍ତାଧାରାମାନ ପୋଷଣ କରନ୍ତି ତାହା ଅକ୍ଳେଶରେ ଏଇ କାନ୍ଥରେ ଲେଖା ଟିପ୍ପଣୀରୁ ଜଣାପଡ଼େ । ପ୍ରଶାସକ ଆବଶ୍ୟକ ସ୍ଥଳେ ଏଇ ଲେଖାରୁ ନିଜର ଗତିପଥ ପରିବର୍ତ୍ତନ କରିବା ପାଇଁ ରସଦ୍ ପାଇଥାଏ । ଅଭିବ୍ୟକ୍ତି ଏହିପରି ଶାସକ ଓ ଶାସିତ ମଧରେ ଭାବ, ବିନିମୟର ମିଥକ୍ରିୟା (ଇଣ୍ଟରଏକ୍‌ସନ୍) ସୃଷ୍ଟି କରେ । କୌଣସି ଦେଶରେ ଅଭିବ୍ୟକ୍ତି ପ୍ରକାଶ କରିବାର ସାଧୀନତା ଆସେ ସେତେବେଳେ, ଯେତେବେଳେ ପ୍ରଜାଗଣ ସେ ଦେଶରେ ମଥା ଉଚ୍ଚ କରି କାଳ ଯାପନ କରନ୍ତି । ସମ୍ପ୍ରଦାୟ ଗୁଡ଼ିକ ମଧରେ ରହିଥାଏ ଭାଇଚାରା ଓ ମାନବୀୟ ପ୍ରେମ । ଶ୍ରୋତା ଓ ବକ୍ତାଙ୍କ ମଧରେ ସମାନତା ହିଁ ଉତ୍ତମ ଅଭିବ୍ୟକ୍ତି ପ୍ରକାଶର ପରିମଣ୍ଡଳ ସୃଷ୍ଟି କରେ । ଏହି ପ୍ରସଙ୍ଗରେ'ସମାନତା' ଶବ୍ଦ ଉପରେ ସାମାନ୍ୟ ବିଶ୍ଳେଷଣ ଦରକାର । ସମସ୍ତଙ୍କୁ ସମାନତା ପ୍ରଦାନ କରିବାର ଅର୍ଥ ଡେଙ୍ଗା ଓ ଗେଡ଼ାକୁ କାଟ୍ ଛାଟ୍ କରି ସମାନ ଉଚ୍ଚତାକୁ ଆଣିବା ନୁହେଁ । ସମାନତାକୁ ଗାଣିତିକ ଅର୍ଥରେ କେହି ବୁଝିବା ଉଚିତ ନୁହେଁ । ଗୋଟିଏ ପରିବାରର ଗାଠନିକ ଚିତ୍ରକୁ ବିଶ୍ଳେଷଣ କଲେ 'ସମାନତା'ର ତାତ୍ପର୍ଯ୍ୟ ଠିକ୍ ଭାବେ ବୁଝିହେବ । ଗୋଟିଏ ପରିବାରର ବୁଢ଼ାବୁଢ଼ୀ ଥାନ୍ତି, ଯୁବକ ଯୁବତୀ ଥାଆନ୍ତି ଏବଂ ଥାଆନ୍ତି ବି ଦୁଗ୍ଧପୋଷ୍ୟ କଅଁଳା ପିଲା । ଏମାନଙ୍କ ମଧରେ ବାସ୍ତବରେ ଥାଏ ସମାନତା । ବୃଦ୍ଧ କାମ ଦାମକୁ ସକ୍ଷମ ନୁହେଁ । ଘରେ ବସି ଚଟ ବୁଣନ୍ତି, ଶିଶୁଟି ମଧ କୌଣସି କାମ ପାଇଁ ଉପଯୁକ୍ତ ନୁହେଁ । ପରିବାରଠାରୁ କିନ୍ତୁ ଏମାନେ ଉତ୍ତମ ଖାଦ୍ୟ ଖାଆନ୍ତି । ବୃଦ୍ଧ ଓ ଶିଶୁର ପରିବାର ପାଇଁ ଉତ୍ପାଦନର ପରିମାଣ ନଗଣ୍ୟ ହେବା ସତ୍ତ୍ୱେ ଏମାନେ ଫଳ, ଦୁଗ୍ଧ, ହରିଲିକ୍‌ସପରି ଦାମିକା ଖାଦ୍ୟ ଖାଆନ୍ତି । ପରିବାର ପାଇଁ କ୍ଷେତରେ ହାଡ଼ଭଙ୍ଗା ପରିଶ୍ରମ କରେ ଯୁବକ ଜଣକ । କିନ୍ତୁ ବେଳ ଲେଉଟାଣି ବେଳେ ଘରକୁ ଫେରି ସେ ଖାଏ ପଖାଳ ଓ ଶାଗଭଜା ।

ପଖାଳ ଇତ୍ୟାଦି ଫଳ, ଦୁଗ୍ଧ ତୁଳନାରେ କମ୍ ଦାମିକା ଓ ନିକୃଷ୍ଟ। ତଥାପି ପରିବାରର ସଦସ୍ୟଙ୍କ ମଧ୍ୟରେ ମନୋମାଳିନ୍ୟ ବା ଝଗଡ଼ା ନଥାଏ। କାରଣ, ଏମାନଙ୍କୁ ସ୍ନେହ, ପ୍ରେମ ତାହାର ଶାଶ୍ୱତ ଡୋରିରେ ବାନ୍ଧି ରଖିଥାଏ। ଏଇ ପ୍ରେମର ଏକ ସମତାର ସୂତ୍ର ଥାଏ - ତାହା ହେଲା, One according to one's ability ଏବଂ One according to one's need। ଅର୍ଥାତ୍ ପ୍ରତି ସଦସ୍ୟ ପରିବାର ପରିଚାଳନା ପାଇଁ ନିଜ ଶକ୍ତି ମୁତାବକ ଶ୍ରମ କରିବେ ଓ ପ୍ରତି ସଦସ୍ୟ ପରିବାର ପାଖରୁ ନିଜର  ଆବଶ୍ୟକତା ମୁତାବକ ଖାଦ୍ୟ, ପେୟ ଓ ଅନ୍ୟାନ୍ୟ ଭରଣପୋଷଣ ସରଞ୍ଜାମ ନେବେ। ମହାମତି ମାର୍କ୍ସ ପ୍ରଶ୍ନ କରନ୍ତି - ଏଇ ସମାନତା ଯଦି ଗୋଟିଏ ପରିବାରରେ ବାସ୍ତବ କ୍ଷେତ୍ରରେ ଚଳି ପାରୁଛି ଓ ଲୋକଙ୍କୁ ସୁଖଶାନ୍ତି ଦେଇ ପାରୁଛି, ଏହା ଗୋଟିଏ ରାଷ୍ଟ୍ର ଓ ପୃଥିବୀରେ ଚାଲିପାରିବ ନାହିଁ କାହିଁକି ? ବିଶ୍ୱରେ ରାଷ୍ଟ୍ର ଗଠନର ପ୍ରକ୍ରିୟା ଏଯାବତ୍ ସୋଭିଏତ୍ ୟୁନିୟନ୍ (୧୯୧୭-୮୭) ଚୀନ (୧୯୫୦-ରୁ ଅଦ୍ୟାବଧି) ପରି କେତୋଟି ରାଷ୍ଟ୍ର ବ୍ୟତୀତ ଏ ଫର୍ମୁଲାକୁ ଅଭ୍ୟାସରେ ପରିଣତ କରି ପାରିନି। ଏ ଦୁଇ ରାଷ୍ଟ୍ରର ସୀମିତ ସମାଜତାନ୍ତ୍ରିକ ଭିତ୍ତିଭୂମିର ବିକାଶ ସମାଜକୁ ଏ ଦିଗରେ କେତେ ବର୍ଷ ଧରି ଆଗେଇ ନେଇ ପାରିଛି - ଏ ପରିବେଶକୁ ପୂର୍ଣ୍ଣରୂପେ କାର୍ଯ୍ୟରେ ପରିଣତ କରି ପାରିନି। ସମତା ଆଣିବାରେ ଏ ଦୁଇ ଦେଶର ଲୋକଙ୍କ ଅଙ୍ଗୀକାର ଥିବା ସତ୍ତ୍ୱେ ନଥିଲା ମତ ପ୍ରକାଶ କରିବାର ସ୍ୱାଧୀନତା। ବୋଧହୁଏ ଲୋକଙ୍କ ଖାଦ୍ୟ, ବସ୍ତ୍ର ଓ ବାସଗୃହର ନିତ୍ୟଦିନର ସମସ୍ୟା ଦୂର କରୁ କରୁ ଦେଶର ପ୍ରଶାସକଙ୍କ ସମୟ ଖର୍ଚ୍ଚ ହୋଇଯାଇଛି। ଅଭିବ୍ୟକ୍ତିର ସ୍ୱାଧୀନତା ବିଷୟରେ ଭାବିବାକୁ ତାଙ୍କୁ ସମୟ ମିଳିନାହିଁ। ଦାରିଦ୍ର୍ୟ ଦୂରୀକରଣକୁ ଏ ଦେଶ ବାକ୍ ସ୍ୱାଧୀନତା ଅପେକ୍ଷା ବିଶେଷ ଅଗ୍ରାଧିକାର ଦେଇଛି।

ଫରାସୀ ବିପ୍ଳବ ପରେ ବାକ୍ ସ୍ୱାଧୀନତାର ଅବାଧ ସୁଯୋଗ ସୃଷ୍ଟି ନିମନ୍ତେ ଗଣତାନ୍ତ୍ରିକ ରାଷ୍ଟ୍ରଗଣ ଅଗ୍ରାଧିକାର ଦେଇଛନ୍ତି। ଆଲୋଚନା ଓ ସମାଲୋଚନା ମଧ୍ୟରେ ଉଭୟ ସରକାର ଓ ଲୋକଶକ୍ତି ସେମାନଙ୍କ ଗନ୍ତବ୍ୟ ପଥ ଖୋଜି ପାଆନ୍ତି ବୋଲି ରାଜନୀତିକ ତଥା ସମାଜତନ୍ତ୍ରୀ ଭାଷ୍ୟକାରଗଣ ମତ ଦିଅନ୍ତି। ଅବାଧ ମତାମତ ପ୍ରକାଶର ବିଶିଷ୍ଟ ଯଜ୍ଞ-ବେଦୀ ହେଲା ବ୍ରିଟିଶ୍ ପାର୍ଲାମେଣ୍ଟ। ଫ୍ରାନ୍ସରେ ସମାନତାର ହାଓ୍ୱା ଯଦିଓ ଫରାସୀ ବିପ୍ଳବ କାଳରେ ଆସିଥିଲା, କିନ୍ତୁ ନେପୋଲିଅନ୍ଙ୍କ ଏକଛତ୍ରବାଦରେ ତାହା ଅବଦମିତ ହେଲା। କିନ୍ତୁ ଫରାସୀ ବିପ୍ଳବର ଇସ୍ତାହାରକୁ ଠିକ୍ ରୂପେ ବୁଝି ପାରିଥିଲା କାଳ ସହ ତାଳ ଦେଇ ନିଜକୁ ସଦା ପରିବର୍ତ୍ତନ କରି ଚାଲିଥିବା ବା ଯୁଗର ଦାବି ସହ ଖାପ ଖୁଆଇ ଚଳୁଥିବା ବ୍ରିଟିଶ୍ ଗଣତନ୍ତ୍ର। ବ୍ରିଟିଶ୍ ପାର୍ଲାମେଣ୍ଟରେ ବିଭିନ୍ନ ରାଜନୈତିକ ଦଳର ବାକ୍ ସ୍ୱାଧୀନତା କିନ୍ତୁ ଅନେକ ଦିଗରୁ ପକ୍ଷଚ୍ଛେଦନ କରାଯାଇଥିବା ବିହଙ୍ଗମ ପରି ଥିଲା। ନାମକୁ ଅବାଧ ସ୍ୱାଧୀନତା, ମାତ୍ର କାମରେ ଥିଲା ତାହାର ଭାଗ୍ୟ ବନ୍ଦୀ ଓ ବିଡ଼ମ୍ବିତ।

ବ୍ରିଟିଶ ଜାତିର ପାର୍ଲାମେଣ୍ଟର କାର୍ଯ୍ୟଧାରାକୁ ବିଶ୍ଳେଷଣ କରି ନିଜେ ଉଇନ୍‌ଷ୍ଟନ୍ ଚର୍ଚ୍ଚିଲ୍ ଏଇ ମତ ପ୍ରକାଶ କରିଛନ୍ତି। ବ୍ରିଟିଶ୍ ପାର୍ଲାମେଣ୍ଟର ସଭ୍ୟଙ୍କ ମତ ପ୍ରକାଶ କରିବାର କ୍ଷମତା, ପ୍ରଶ୍ନ କରିବାର କ୍ଷମତା, କୌଣସି ବିଷୟରେ ଖୋଲାଖୋଲି ଆଲୋଚନା କରି ତା' ଉପରେ

ବିବେକାନୁମୋଦିତ ଟିପ୍ପଣୀ ଦେବାର ଅଧିକାର ପାର୍ଟିର ହୁଇପ୍ ଆଗରେ ନିହାତି ସୀମିତ। ପାର୍ଟିର ହୁଇପ୍ ପ୍ରତି ସଭ୍ୟ ମୁହଁରେ ସଦାବେଳେ ତୁଣ୍ଡ ବାନ୍ଧି ଦେଇଥାଏ। ପାର୍ଟିର ରଚି, ନିର୍ଦ୍ଦେଶ ଓ ଆଭିମୁଖ୍ୟ ମାନି ପ୍ରତି ଏମ.ପି. (ସଂପୃକ୍ତ ଦଳର)ଚଳ ପ୍ରଚଳ କରନ୍ତି ଓ ତଦନୁସାରେ ନିଜର ବିଚାର ବ୍ୟକ୍ତ କରନ୍ତି। ପାର୍ଟିକୁ ଶୃଙ୍ଖଳିତ, ତଥା ସୁସଂଗଠିତ କରି ରଖିବା ନାମରେ ହୁଇପ୍ ତାହାର ସଦସ୍ୟଙ୍କର ସ୍ୱାଧୀନ ଚିନ୍ତନ ଓ ପ୍ରକାଶନର କଣ୍ଠରୋଧ କରିଥାଏ। କେବଳ ଅଳ୍ପ ସମୟ ପାଇଁ ଚାଲୁଥିବା ପ୍ରଶ୍ନୋତ୍ତର କାଳକୁ ସଭ୍ୟଙ୍କ ମୁକ୍ତ ମତାମତ ପ୍ରକାଶନର ଉପଯୁକ୍ତ ସମୟ ବୋଲି ବିବେଚନା କରାଯାଏ। ପ୍ରଶ୍ନୋତ୍ତର କାଳ ଓ ଶୂନ୍ୟକାଳ ବାସ୍ତବରେ ସୀମିତ ଓ ସ୍ୱଳ୍ପ ସମୟ ସ୍ଥାୟୀ। ବ୍ରିଟିଶ୍ ପାର୍ଲାମେଣ୍ଟର ଏ ପ୍ରକାର ବ୍ୟବସ୍ଥାକୁ ଚର୍ଚ୍ଚିଲ୍ ସମାଲୋଚନା କରି ଏହା ମୁଷ୍ଟିମେୟ ଲୋକଙ୍କ ମର୍ଜିର ଶାସନ ବ୍ୟବସ୍ଥା ବା Oligarchic order ବୋଲି କହିଛନ୍ତି। ତେଣୁ ଥିଲାବାଲାର ଗଣତନ୍ତ୍ରରେ ବ୍ୟକ୍ତିର ଅବାଧ ମତ ପ୍ରକାଶର ସ୍ୱାଧୀନତା ଥିବାର ଯେଉଁମାନେ କହନ୍ତି, ସେମାନେ ତାହାର ବାସ୍ତବ ଚେହେରା ପ୍ରତି ଆଖି ବୁଜି ଏକଥା କହନ୍ତି।

ଥିଲାବାଲାର ଗଣତାନ୍ତ୍ରିକ ଦେଶରେ ମଣିଷ ଉପରେ ମଣିଷ ଅବାଧ ଶୋଷଣ ଥିବାରୁ ସେଠାରେ ଅଭିବ୍ୟକ୍ତିର ସ୍ୱାଧୀନତା ନିରର୍ଥକ ବୋଲି ଲେନିନ୍ ମତ ଦିଅନ୍ତି। ସ୍ୱାଧୀନତାଠାରୁ ଅଦ୍ୟାବଧି ଆମ ଦେଶର ଇତିହାସକୁ ବିଶ୍ଳେଷଣ କଲେ ଆମ ଆଗରେ ଏହା ସ୍ପଷ୍ଟ ହୁଏ। ଆମର ସ୍ୱାଧୀନତା ପ୍ରକୃତ ଅର୍ଥରେ ସ୍ୱାଧୀନ ହେବା ଅର୍ଥରେ ଆସି ନଥିଲା। ଏହା ଥିଲା କ୍ଷମତାର ହସ୍ତାନ୍ତରୀକରଣ। ଗୋରା ଶାସକଙ୍କ ହାତରୁ କଳା ଶାସକଙ୍କ ହାତରେ ଆସି ନ୍ୟସ୍ତ ହୁଏ ଦେଶର ଶାସନ। ଗୋରା ଜୋକ ଯାଇ କଳା ଜୋକ ଆସେ। ଦେଶର ପୋଲିସ୍ ମିଲିଟାରୀ ବ୍ୟବସ୍ଥା, ଜେଲ୍ ବ୍ୟବସ୍ଥା, ଅପରାଧ ଓ ଦେବାନି କୋର୍ଟର କାଣିଚାଏ ପରିବର୍ତ୍ତନ ହୁଏନା। ଗୋରା ଅମଳର ଅମଲାତନ୍ତ୍ର କଳା ଶାସନ ଅମଳରେ ମଧ ଚାଲୁରହେ। କିଛି ହେଲେ ସାମାନ୍ୟତମ ପରିବର୍ତ୍ତନ ହୁଏନା। ଦେଶର ବଡ଼ ବ୍ୟବସାୟ ବାଣିଜ୍ୟ କେନ୍ଦ୍ର, ଶିଳ୍ପାନୁଷ୍ଠାନରେ ଦେଶୀ ପୁଞ୍ଜି ଏ ସବୁ ସଂସ୍ଥାର ଭାଗ୍ୟର ଡୋରି ହାତକୁ ନେଇ ପାରେନା- କାରଣ ଆମର ପୂର୍ବତନ ଶାସକଙ୍କ ଅନେକ ଅନୁଗତ ଶିଳ୍ପ ଓ ଅର୍ଥନୈତିକ ସଂସ୍ଥା ଆମ ଶିଳ୍ପର ପରିଚାଳନା ତଥା ପୁଞ୍ଜିରେ ହାତ ପୂରାଇ ରହିଥିଲେ। ଆମର ପ୍ରତିରକ୍ଷା, ତୈଳ, କୋଇଲା, ଗ୍ୟାସ୍, ଲୁହା କାରଖାନା ବି ଏଥିରୁ ବାଦ୍ ପଡ଼ି ନଥିଲା। ସମୟ ବଢ଼ିବା ସଙ୍ଗେ ସଙ୍ଗେ ରାହୁ ଗ୍ରାସ ବେଶୀ ମାତ୍ରାରେ ହେଲା ପଛେ କମିଲା ନାହିଁ। ଦେଶ କାର୍ଯ୍ୟତଃ ନବ୍ୟ-ଉପନିବେଶ ହୋଇ ରହିଗଲା। ଦେଶୀ ଶିଳ୍ପପତିଗଣ ନିଜର ଆଧୁନିକରଣ ଓ ବିକାଶୀକରଣ ନିମନ୍ତେ ବିଦେଶୀର ଏଇ ବଡ଼ ଭାଇମାନଙ୍କ ସହ ହାତ ମିଳାଇଥାନ୍ତି ଓ ଅନ୍ୟ ପକ୍ଷରେ ଦେଶର ଆଭ୍ୟନ୍ତରୀଣ ସମ୍ପଦର ଶାସକମାନଙ୍କୁ ହାତବାରିସି କରି ବେପରବାୟ ଲୁଟ୍ କରୁଥାନ୍ତି। ଟାଟା କାରଖାନାର ଓଡ଼ିଶାର ଲୁଟ୍‌କୁ ଏକ ଉଦାହରଣ ସ୍ୱରୂପ ଏଠାରେ ବିଶ୍ଳେଷଣ କରାଯାଇପାରେ। ଗୋରୁ ମହିଷାଣୀ, ବାଦାମ ପାହାଡ଼ ଲୁହା ଖଣିକୁ ବାର୍ଷିକ ମାତ୍ର କେତୋଟି ଟଙ୍କାରେ ଟାଟା କମ୍ପାନୀ ଲିଜ୍ ନେଇ ବର୍ଷକୁ ଶତ ସହସ୍ର ଟନ୍‌ର ଲୁହା ପଥର ଖୋଳାଇ ନେଇ ପ୍ରତି ବଦଳରେ ମୟୂରଭଞ୍ଜର ମାଟିତଳେ ସୁବର୍ଣ୍ଣରେଖାର ଭୁଷା ବାଲି ଭରି ଦେଇଯାଏ। ବାଦାମ୍ ପାହାଡ଼

ଓ ଗୋରୁ ମହିଷାଣୀ ଲିଜ୍ ନେବା ପୂର୍ବରୁ ଟାଟା ଷ୍ଟିଲ୍‌ର ସାମଗ୍ରିକ ସମ୍ପଦର ମୂଲ୍ୟ ଥିଲା ୨୯୩ କୋଟି ଟଙ୍କା (ଏଷ୍ଟିମେଟେଡ଼।) ଏ ଲୁହାଖଣି ଗୁଡ଼ିକରୁ ଲୁହା ପଥର ନିଃଶେଷ ହେବା ବେଳକୁ ଟାଟାର ସମ୍ପଦର ମୂଲ୍ୟ ବୃଦ୍ଧି ପାଇଁ ହୋଇଥିଲା ୧୪୬୦ କୋଟି ଟଙ୍କା (ଏଷ୍ଟିମେଟେଡ୍)। ଏଇ ଆଶାତୀତ ଅଭିବୃଦ୍ଧି ଆମ ରାଜ୍ୟର ମାଟିତଳର ଲୌହ ସମ୍ପଦକୁ ମନ ଇଚ୍ଛା ଲୁଟ୍ ଫଳରେ ହୋଇ ନାହିଁ ତ ଆଉ କ'ଣ ? ଟାଟା ଷ୍ଟିଲ୍ ପକ୍ଷରେ ଏହା ଯେପରି ସତ୍ୟ, ଅନ୍ୟ କମ୍ପାନୀ ପକ୍ଷରେ ଅନ୍ୟ ଅଞ୍ଚଳକୁ ଲୁଟିବା ସେହିପରି ସତ୍ୟ। କେନ୍ଦ୍ରରେ ନିର୍ଦ୍ଦିଷ୍ଟ ଥିଲାବାଲାର ପୃଷ୍ଠପୋଷକ ରାଜନୀତିକ ଦଳ କ୍ଷମତାରେ ଥାଇ ଏହିପରି ଏ ଅବାଧ ଶୋଷଣରେ ପୌରୋହିତ୍ୟ କରୁଥାଏ। ଆମର "ଦେଶର ପ୍ରଶାସନ ବୈଦେଶିକ ଋଣଗ୍ରସ୍ତତା ଯୋଗୁଁ ବାଧ ବାଧକତାରେ ୧୯୯୮ ମସିହାରେ GATT ଚୁକ୍ତି ସ୍ୱାକ୍ଷର କରେ ଓ WTO ର ସଭ୍ୟଭୁକ୍ତ ହୁଏ। ଏ ଚୁକ୍ତି ବଳରେ ଆମର ଦେଶୀ ବଜାର, ଶିଳ୍ପ ଓ କୃଷି ବୈଦେଶିକ MNC ଙ୍କ ପାଇଁ ଖୋଲା ହୋଇଯାଏ। ନେହେରୁଙ୍କ ଅମଳର ଲାଇସେନ୍ସ ରାଜ୍ ବୈଦେଶିକ ବେପାରୀଙ୍କ ଉପରେ ଥିବା ପ୍ରତିବନ୍ଧକ ଆଉ ରହେନା। ଆମ ଦେଶର ଆର୍ଥନୀତିକ ଢାଞ୍ଚାରେ ପ୍ରାଧାନ୍ୟ ବିସ୍ତାର କରନ୍ତି ବହୁରାଷ୍ଟ୍ରୀୟ ପୁଞ୍ଜିପତି ଗୃହମାନେ। ଦେଶ ପୁଣି ଚାଲିଯାଏ ନବ୍ୟ ସାମ୍ରାଜ୍ୟବାଦୀ ଅର୍ଥନୀତି କବଳକୁ। ଆଗରୁ ଦେଶୀ-ପୁଞ୍ଜିପତି ପରିବାରଗୁଡ଼ିକର ଶୋଷଣର ମାତ୍ରା ରିଜର୍ଭ ବ୍ୟାଙ୍କର ଆକଳନ ଓ ଡାଟା ମାଧ୍ୟମରେ ମାପି ହେଉଥିଲା। ମାତ୍ର MNCଙ୍କ ଶୋଷଣ ମାପିବାର ଯନ୍ତ୍ର ଏ ଯାଏ ଉଦ୍‌ଭାବନ ହୋଇନାହିଁ। ଆମର ଖବର ସରବରାହ ସଂସ୍ଥା, ଖବର କାଗଜ ଓ ବୈଦ୍ୟୁତିକ ଗଣମାଧ୍ୟମ ସିଧା ସଳଖ ବିଦେଶୀ ସଂସ୍କୃତି ଓ ଆଦବ୍ କାଇଦାଦ୍ୱାରା ପ୍ରଭାବିତ ହେଲେ। ଆମର ମତ ବ୍ୟକ୍ତ କରିବାର ସ୍ୱାଧୀନତା ପଶ୍ଚିମା ହାଓ୍ୱାରେ କୁଆଡ଼େ ଉଡ଼ିଗଲା।

ଦେଶର ଅର୍ଥନୀତି ଓ ଶାସନକୁ ବହୁ ରାଷ୍ଟ୍ରୀୟ ପୁଞ୍ଜିଗୃହମାନ କବଳିତ କରିନେଲାବେଳେ ଦେଶର ନ୍ୟାୟ ବ୍ୟବସ୍ଥା ଓ ଶାସନ ବ୍ୟବସ୍ଥା ଆସ୍ତେ ଆସ୍ତେ ଦୁର୍ବଳ ଓ ପରାଧିନ ହୋଇ ପଡ଼ିଛି। ଦେଶର ସାର୍ବଭୌମତ୍ୱ ଆସ୍ତେ ଆସ୍ତେ ସ୍ତିମିତ ହୋଇ ଆସୁଛି। ତା' ସହିତ ପଦଦଳିତ ହେଉଛି ମାନବିକ ଅଧିକାର ଓ ବ୍ୟକ୍ତିଗତ ସ୍ୱୟଂକ୍ରିୟତା। ଏ ପରିସ୍ଥିତିରେ ସାର୍ବଭୌମତ୍ୱ ସଙ୍କୁଚିତ ହୋଇ ବ୍ୟକ୍ତିର ବିବେକର କକ୍ଷରେ ଆତ୍ମଗୋପନ କରୁଛି। ରାଷ୍ଟ୍ର ପରାଧୀନତାକୁ ସ୍ୱୀକାର କରିନେଲା ବେଳେ ପ୍ରତି ସମାଜସଚେତନ ଲେଖକ ହୋଇଉଠୁଛି ଗୋଟିଏ ଗୋଟିଏ ସ୍ୱୟଂକ୍ରିୟ ମିନି-ସାର୍ବଭୌମ ବ୍ୟକ୍ତିତ୍ୱ। ସୁପ୍ରିମ କୋର୍ଟ ଆଗରେ ଲେଖିକା ଅରୁନ୍ଧତୀ ରାୟଙ୍କ "I am a Sovereign state myself." ଦୃଢ଼ୋକ୍ତି - ଏ ପରିପ୍ରେକ୍ଷୀରେ ଆମର ପ୍ରଣିଧାନଯୋଗ୍ୟ। ଲେଖକ ଯେତେବେଳେ ପରିସ୍ଥିତିରେ ଠେଲି ହୋଇ ଏଇ ଅବସ୍ଥାକୁ ଚାଲି ଯାଉଛି, ତା' ଆଗରେ ନିର୍ଭୟ ମତ ବ୍ୟକ୍ତ କରିବା ବ୍ୟତୀତ ଅନ୍ୟ ରାସ୍ତା କାହିଁ ? ସେ ରବୀନ୍ଦ୍ରନାଥଙ୍କ ଭାଷାରେ କହିଲେ "ମୁଖ୍ ଖୋଲେ ତୋର୍ ମନେର୍ କଥା ଏକ୍‌ଲା ଚଲୋରେ"- ସ୍ୱରକୁ ଚାଲିଯାଉଛି।

ସାଧାରଣ ଲେଖକ ଦେଶକୁ କୁମ୍ଭୀର ନେଇ ମଝି ନଈରେ କରିବା କଥା ଜାଣି ପାରୁନି। ସେ ପ୍ରଶାସକଙ୍କ 'ବନ୍ଦେ ଉତ୍କଳ ଜନନୀ' ବା 'ବନ୍ଦେ ମାତରମ୍' ପଟ୍ଟେଲି ଫେରାଇ ବୋଲକରା

ଦେଶପ୍ରେମୀ ସାଜୁଛି ଓ MNCଙ୍କ ହେରାଫେରିରେ ପଡୁଛି । ସେଦିନର 'ବନ୍ଦେ ମାତରମ୍' ସ୍ଲୋଗାନ ଅବସ୍ଥା ଚକ୍ରରେ ଆଜି ବହୁଜାତୀୟ କମ୍ପାନୀଙ୍କର ପ୍ରାୟୋଜିତ ସ୍ଲୋଗାନ୍‌ରେ ପରିଣତ ହୋଇଗଲାଣି ।

ମଲ୍‌ଟି ନ୍ୟାସ୍‌ନାଲ୍‌ଙ୍କ ବେପାରୀ ସଂସ୍କୃତି ଏ ଦେଶରେ ନୀରବରେ ଓ ଧିରେ ଧିରେ ଲୋକଙ୍କ ଅସ୍ଥି ମଜ୍ଜାଗତ ହେଲାବେଳେ ଦେଶଭିତରର ସାମନ୍ତବାଦୀ ମନୋବୃତ୍ତି କୁସଂସ୍କାରଗ୍ରସ୍ତ ଆମ ସମାଜକୁ ଅଧିକ ବିଭ୍ରାନ୍ତ କରି ଚାଲିଛି । କେନ୍ଦ୍ରାପଡ଼ା ଜିଲ୍ଲାର କେରେଡ଼ାଗଡ଼ା ଗ୍ରାମରେ ହରିଜନଙ୍କର ଜଗନ୍ନାଥ ଦର୍ଶନକୁ ଏହି ସାମାନ୍ତବାଦୀ ଶୋଷଣର ଏକ ନମୁନା ରୂପେ ନିଆଯାଇପାରେ । ସେ ଗ୍ରାମରେ ଦଳିତ ହରିଜନଙ୍କୁ ଅବାଧ ଜଗନ୍ନାଥ ଦର୍ଶନ କରାଇ ନ ଦେଇ ପାରି ଏ ଦେଶର ଶାସନ ବ୍ୟବସ୍ଥା ଓ ନ୍ୟାୟ ବ୍ୟବସ୍ଥା "ଆଇନ୍ ଆଗରେ ସର୍ବେ ସମ" ରୀତିର ଅବମାନନା କରିଛି । ଗରିବ ଦଳିତଙ୍କ ପାଇଁ ଗୋଟିଏ ପ୍ରକାରର ବିଚାର ଥିବାର କେରେଡ଼ାଗଡ଼ାର ଘଟଣା ପ୍ରମାଣ କରିଛି । ସାମାଜିକ ନ୍ୟାୟ ହାସଲ ପାଇଁ ନୈୟାୟିକ ସଂଗ୍ରାମ ଯେ ଯଥେଷ୍ଟ ନୁହେଁ- ଏ କଥା ମଧ୍ୟ ସତ୍ୟ ରୂପେ ପ୍ରତିଭାତ ହୋଇଛି । ସାମାଜିକ ନ୍ୟାୟ ଲାଭ ପାଇଁ ବାସ୍ତବରେ ଆପୋଷହୀନ ରକ୍ତାକ୍ତ ସଂଗ୍ରାମର ଆବଶ୍ୟକତା ବୋଲି କେରେଡାଗଡ଼ାର ଦଳିତ ବୁଝି ପାରିଛି ।

ଲେଖକ କାଳେ କାଳେ ଏକ ସ୍ୱାଧୀନ କଲମର ଅଧିକାରୀ ବୋଲି ଘୋଷଣା କରୁଛି । କିନ୍ତୁ କେରଡାଗଡ଼ା ଘଟଣାରେ ବା ଗୁଜ୍‌ରାଟ ଦଙ୍ଗାରେ ଲେଖକର କଲମ ମୌନବ୍ରତ ଆଚରଣ କରିଛି କାହିଁକି ? କାଳେ କାଳେ ଦେଶର ବିଶେଷ ଘଟଣା ଲେଖକର କଲମକୁ ସୋଚ୍ଚାର କରିଥାଏ । ୧୯୪୭ ପୂର୍ବରୁ ଲେଖକର ଲେଖନୀ ଆଗରେ ବଡ଼ ପ୍ରଶ୍ନ ଥିଲା- ସ୍ୱାଧୀନତା ପ୍ରାପ୍ତି । ସେ ସେଥିପାଇଁ ଅପରିସୀମ ତ୍ୟାଗ କରିଥିଲା- କାରାରୁଦ୍ଧ ହୋଇଥିଲା । ଫାଶୀର ମଞ୍ଚରେ କେତେ ନାଁ କେତେ ଲେଖକ ଗାଇ ଯାଇଥିଲେ ଜୀବନର ଜୟଗାନ୍ । ଦେଇ ଯାଇଥିଲେ ଅସୀମ ବଳୀଦାନ୍ ।

ସ୍ୱାଧୀନତା ପରେ ଦେଶ ଆର୍ଥ-ରାଜନୀତିକ ଭାବେ ଆତ୍ମନିର୍ଭରଶୀଳ ଓ ସାଂସ୍କୃତିକ ଭାବେ ଅପରାଜେୟ ହୋଇ ପାରିନି । ଏହା ଆସ୍ତେ ଆସ୍ତେ ପରିଣତ ହେଉଛି ଅର୍ଦ୍ଧ-ସାମନ୍ତବାଦୀ ଓ ଅର୍ଦ୍ଧ-ସାମ୍ରାଜ୍ୟବାଦୀ ରାଷ୍ଟ୍ରରେ । ଦେଶର ସାଧାରଣ ମଣିଷଙ୍କ ଅବାଧ ମତ ବ୍ୟକ୍ତ କରିବାର ସାଧୀକାରର କଣ୍ଠରୋଧ କରିଦେବାକୁ ଏ ଯେଉଁ ସାର୍ବିକ ଉଦ୍ୟମ ହେଉଛି, ଲେଖକଙ୍କୁ ଆଜି ତା' ବିରୁଦ୍ଧରେ ଲଢ଼ିବାକୁ ଆହ୍ୱାନ ଆସିଛି । ଆମେ କ'ଣ ସ୍ୱର ଉଠାଇ ପାରିବୁ ନାହିଁ ଜାତିଆଣବାଦୀ ବା ସାଂପ୍ରଦାୟିକତା ବାଦୀ ରକ୍ତତାଣ୍ଡବ ବିରୁଦ୍ଧରେ ? ଆମେ କ'ଣ କଲମ ଉଠାଇ ପାରିବୁ ନାହିଁ ବହୁ ଜାତିର ପୁଞ୍ଜିର ସାର୍ବିକ ଶୋଷଣ ବିରୁଦ୍ଧରେ ? ଆମେ କ'ଣ ସ୍ୱର ତୋଳିବୁ ନାହିଁ ମାନବିକତାର ହନନ ବିରୁଦ୍ଧରେ ? ଆମେ କ'ଣ ସାମାଜିକ ନ୍ୟାୟ ପ୍ରତିଷ୍ଠାର ପୁରୋଧା ବନି ପାରିବୁନି ?

ଲେଖକ, କଳାକାର ଓ ଶିଳ୍ପୀକୁ ଅବଶ୍ୟ ପ୍ରଚାରପନ୍ଥୀ ବା ପ୍ରୋପାଗଣ୍ଡିଷ୍ଟହେବାକୁ ଏଠାରେ ପରାମର୍ଶ ଦିଆଯାଉନାହିଁ । କିନ୍ତୁ ଲେଖକ କ'ଣ ଗଢ଼ି ଦେଇ ପାରିବ ନାହିଁ ଗର୍କୀଙ୍କ ମା' ପରି ଚରିତ୍ରଟିଏ - ଯିଏ ରେଳ ଷ୍ଟେସନ୍‌ରେ ଯାତ୍ରୀର ନିଦ ମଳ ମଳ ଆଖି ଆଗରେ ତୋଳି ଧରିପାରେ

'କମ୍ୟୁନିଷ୍ଟ୍ ଇସ୍ତାହାର'। ଗଢ଼ିଦେଇ ପାରିବ ନାହିଁ ଅନ୍ୟ ଏକ ଘିନୁଆ- ଯେଉଁ ଟୋକାଟି ସମାଜର ଯାବତୀୟ ଶୋଷଣ ବିରୁଦ୍ଧରେ ଭଗବତୀଙ୍କର ଥିଲା ଏକ ଚରମପତ୍ର। କଳାର ସୂକ୍ଷ୍ମ ଆବେଦନକୁ ନଷ୍ଟ ନକରି ଉପରୋକ୍ତ ଲେଖକ ଦ୍ୱୟ ଯଦି ଏ ଚରିତ୍ର ସୃଷ୍ଟି କରି ପାରିଲେ, ଆମେ କାହିଁକି ନ ପାରିବୁ ? ପାଠକର ଅବଚେତନକୁ ସୂକ୍ଷ୍ମ ଭାବରେ ପରାମର୍ଶ ଦେବାର ଅସ୍ତ୍ର।

ଲେଖକ ନିଜର ବ୍ୟକ୍ତିଗତ ସାଧୀନତାକୁ ମନପ୍ରାଣ ଦେଇ ତରଳାଇ ଢ଼ାଳି ଦେଉ ଅଭିବ୍ୟକ୍ତି ପ୍ରକାଶନର ଛାଞ୍ଚରେ ଏବଂ ପାଠକ ମନରେ ଅପୂର୍ବ ସାହସ, ଧୈର୍ଯ୍ୟର ଦୁର୍ଗ ଗଢ଼ି ତୋଳୁ। ପାଠକ ପାଖରୁ ପ୍ରତିବାଦର ସକଳ ପ୍ରକାର ବିକଳ୍ପ ମାର୍ଗ ଏବେ ନିଃଶେଷ ହେବାକୁ ଯାଉଛି। ପ୍ରତି ଅନ୍ୟାୟରେ ତା' ଆଗରେ କେବଳ ଖୋଲା ଅଛି ପ୍ରତିରୋଧର ମାର୍ଗ ସେ ମାର୍ଗରେ ପାଠକକୁ ଚାଲିବାରେ ଲେଖକର କଲମ ଯଥେଷ୍ଟ ସାହସ ଯୋଗାଉ!



# କହ୍ନେଇଲାଲଙ୍କ ଗଳ୍ପ

୧୯୪୭ ମସିହାରେ କହ୍ନେଇଲାଲଙ୍କ ଉତ୍ତର ବାଲେଶ୍ୱରର ଭୋଗରାଇ ଅଞ୍ଚଳର ଜମର୍ଦ୍ଧା ଗ୍ରାମରେ ଜନ୍ମ । ୧୯୭୫ ମସିହା ଜୁଲାଇ ୨୭-ତାରିଖରେ ତାଙ୍କର ଅକାଳମୃତ୍ୟୁ ହୁଏ । ମାତ୍ର ଅଠାଇଶ ବର୍ଷୀୟ ଏ ତରୁଣ ଗାଳ୍ପିକ ଓଡ଼ିଆ ଭାଷାରେ ଅନେକ ମନୋଜ୍ଞ ଗଳ୍ପ ଲେଖି କଥା ସାହିତ୍ୟରେ ଏକ ନୂତନ ଅଧ୍ୟାୟ ସଂଯୋଜନା କରିଗଲେ । କହ୍ନେଇ ସାହିତ୍ୟକୁ ଆସିବା ପୂର୍ବରୁ ଆମ କଥା ସାହିତ୍ୟର ଯେଉଁ ଅବସ୍ଥା ଥିଲା, ତାଙ୍କ ତିରୋଧାନ ପରେ ସେ ପ୍ରକାର ଅବସ୍ଥା ରହିଲା ନାହିଁ । କହ୍ନେଇର କଥା ସାହିତ୍ୟରେ ବିଶେଷ ଲକ୍ଷ୍ୟଣୀୟ କଥାଟି ହେଲା ତାଙ୍କ ବର୍ଣ୍ଣନାର ବେଗ- ଘଟଣା, ସଂଳାପ ଓ ବିଷୟ ବସ୍ତୁର ପ୍ରବାହ ପ୍ରତି ଗଳ୍ପରେ ଏତେ ତୀବ୍ର ଯେ ମୁଗ୍ଧ ପାଠକ ତାହାରି ସୁଅରେ ଭାସିଯାଏ ଗଳ୍ପର ଶେଷ ଲାଇନ୍ ଯାଏ । ଏଇ ଆବେଗଧର୍ମୀ ବେଗବାନ୍ ବର୍ଣ୍ଣନା ପାଇଁ କହ୍ନେଇ କାର୍ଯ୍ୟରେ ଲଗାଇ ଥାଆନ୍ତି ଦୁଇଟି ଜିନିଷ (୧) ଡାଏରୀଧର୍ମୀ ବର୍ଣ୍ଣନା (୨) ଅତି ଲଳିତ ଓ ନମନୀୟ ଭାଷା । ନାଟକୀୟତା ମଧ୍ୟ ଅନେକ ଗଳ୍ପର ଭିତିରି ମୋଡ଼ ଫେରାରେ ସାହାଯ୍ୟ କରିଥାଏ । ଗାଳ୍ପିକ କହ୍ନେଇଙ୍କ ଗ୍ରାଜୁଏସନ୍ ଯାଏ କଲେଜ ଜୀବନ କଟିଛି ବାଲେଶ୍ୱର ସହରରେ । ଜୀବନର ଶେଷ ତିନି ବର୍ଷ ସେ ଭୁବନେଶ୍ୱର ସ୍ଥିତ ଏ.ଜି.ଅଫିସରେ ଚାକିରୀ ଯୋଗୁଁ ସେଠାରେ କଟାଇଛନ୍ତି ।

ନିଜ ଦୁଃସ୍ଥ ପାରିବାରିକ ଜୀବନର ଟିକିନିଖି ଚିତ୍ର, ନିଜ ଟିଉସନ୍ ଛାତ୍ରୀମାନଙ୍କ ସହିତ ପ୍ରେମାସ୍ପଦ ସମ୍ପର୍କ ଓ ସେମାନଙ୍କ ପରିବାରର ଟିକିନିଖି ବର୍ଣ୍ଣନା ଗାଳ୍ପିକ ତାଙ୍କ ଗଳ୍ପରେ ଦକ୍ଷତାର ସହ ପ୍ରସଙ୍ଗାନୁକ୍ରମରେ ଖଞ୍ଜି ପାରିଛନ୍ତି । ନିଜକୁ ତନ୍ନ ତନ୍ନ କରି ପାଠକ ଆଗରେ ଖୋଲିଦେବା ଓ ସ୍ଥାନ ବିଶେଷରେ ନିଜ ଭିତରର ପାପବୋଧକୁ ପ୍ରକାଶ କରି ନିଜର କନ୍‌ଫେସନ୍ କରିବା ତାଙ୍କ ବର୍ଣ୍ଣନାରେ ନୂତନ ବର୍ଣ୍ଣବିଭା ସୃଷ୍ଟି କରେ । କଳାସିଦ୍ଧ ମାର୍ଗରେ ବାସ୍ତବତାକୁ ରସସିକ୍ତ କରି ଲିପିବଦ୍ଧ କରି କହ୍ନେଇ ପାଲଟି ଯାଇଛନ୍ତି ଜଣେ ବାସ୍ତବବାଦୀ ଲେଖକ । ଗାଳ୍ପିକ କହ୍ନେଇଲାଲଙ୍କ ଗଳ୍ପର କେତେକ ନିର୍ଦ୍ଦିଷ୍ଟ ନାୟିକା (ଯଥା: ଦେବୀ, ରାଣୀ, ଅନିମା, ପ୍ରୀତି, ସୀମା, ଜୁଲି, ଅସୀମା, ଧରିତ୍ରୀ ଓ ଶାନ୍ତି) ପାଠକ ମହଲରେ ଏତେ ପରିଚିତ ନାମ ହୋଇଯାଇଛନ୍ତି ଯେ ପରବର୍ତ୍ତୀ ତଥା ସମକାଳୀନ କେତେକ ଗାଳ୍ପିକ ତାଙ୍କ ଗଳ୍ପମାନଙ୍କରେ ଏ ନାମଗୁଡ଼ିକୁ ଚରିତ୍ର ରୂପେ ଆଦରରେ ଓ ସମ୍ମୋହନରେ ବରଣ କରି ନେଇଛନ୍ତି ।

ତରୁଣ ଗାଳ୍ପିକଙ୍କ ଗଳ୍ପ ଗୁଡ଼ିକ ତାହାର ରୋମାଞ୍ଚକର ବର୍ଣ୍ଣନା ଓ କଥାବସ୍ତୁଗତ ଉଚ୍ଚାରଣରୁ ପ୍ରେମ ଗଳ୍ପ ପରି ଜଣାଯାଉଥିଲେ ମଧ୍ୟ ସେସବୁ ବାସ୍ତବଧର୍ମୀ ଗଳ୍ପ ନିଚ୍ଛକ ପ୍ରେମଗଳ୍ପ ନୁହେଁ ।

ଗଳ୍ପର କଥାବସ୍ତୁ ମଧ୍ୟରେ ନାୟକ ଓ ନାୟିକାର ଦୈହିକ ମିଳନ ଯେଉଁଠି ବର୍ଣ୍ଣିତ ହୋଇଛି, ତାହାର ପରିବେଷ୍ଟନୀ, ତାହାର ବର୍ଣ୍ଣନା ଚାତୁରୀ ଅତି କଳାତ୍ମକ ହୋଇଛି । ତେଣୁ ଯୌନକ୍ଷୁଧା ଉଦ୍ରେକକାରୀ ନହୋଇ ତାହା ହୋଇଛି ଭାବଗମ୍ଭୀର ଓ ମନୋଜ୍ଞ । ଲେଖକଙ୍କ ଉପନ୍ୟାସ 'ଦୁର୍ଘଟଣା'ରୁ ଏକ ଉଦାହରଣ ଦିଆଯାଉ । "ମେନକା ଦର୍ପଣ ସାମ୍ନାରେ ବସି ବେକରେ ପାଉଡର ଦେଉଥିଲା । ମୁଁ ତାକୁ ବିଛଣାକୁ ନେଇ ଆସିଲି । ତା ସାଙ୍ଗରେ ମୁଁ କେତେ ଗାଁ ଗଣ୍ଡା ପାରି ହୋଇଗଲି । ସହର ମଧ୍ୟ ଅତିକ୍ରମ କରିଗଲି । ତା'ପରେ ପାହାଡ଼ ଜଙ୍ଗଲ । ଝରଣାର ଅଦୃଶ୍ୟ ଶବ୍ଦ ।" (କହ୍ନେଇ କଥାଘର-୪୪୭ ଓ ୪୪୮ ପୃଷ୍ଠା) ଲେଖକ ଗଳ୍ପର ଅବୟବରେ ଖୋଲା ଖୋଲି ନାରୀଙ୍କ ଚିତ୍ର ଅଙ୍କନ ବିଷୟରେ କହନ୍ତି- "ଉପଭୋଗ ପ୍ରାପ୍ତିରେ ଭାବ ପ୍ରବଣତା ଓ ସୂକ୍ଷ୍ମ ସୌନ୍ଦର୍ଯ୍ୟବୋଧ ନଷ୍ଟ ହୋଇଯାଏ ବୋଲି ମୋର ଧାରଣା । ମୋ ଜୀବନକୁ ତେଣୁ ଯେତେ ନାରୀ ଆସିଛନ୍ତି ସେମାନେ ସେମାନଙ୍କ ନାରୀତ୍ୱକୁ କ୍ଷତବିକ୍ଷତ କରାଇବାର ଇଙ୍ଗିତ ଦେଲେ ମଧ୍ୟ ସେମାନଙ୍କ ଆସିବା ମୁହୂର୍ତ୍ତ ପରି ଦାଗହୀନ, ଆକର୍ଷଣୀୟ ହୋଇ ରହିଯାଇଛନ୍ତି । ମୁଁ କେବଳ ନିଦାଘ ମଧ୍ୟାହ୍ନରେ ସମ୍ପୂର୍ଣ୍ଣ ଥଣ୍ଡା ପାଣି ଭର୍ତ୍ତି ଗ୍ଲାସ୍‌କୁ ହାତରେ ଉଠାଇଛି, ଦେଖିଛି, ତନ୍ମୟ ହୋଇଛି । ପରମ ସ୍ନେହରେ ମୋର ଗାଲରେ ସେ ଗ୍ଲାସକୁ ଛୁଆଇଁ ନେଇଛି । ଏବଂ ତା'ଫଳରେ ନିଦାଘର ଶୁଷ୍କତା ଅନେକ ପରିମାଣରେ କଟିଯାଇ ମୋ ଭିତରେ ଅନେକ ଜଳକଣା ଆରାମ୍ ଆଣି ଦେଇଛି । ଫଳରେ ତା'ପର ମୁହୂର୍ତ୍ତରେ ପୁଣି ନୂତନ ଗ୍ଲାସ୍ । ତା'ର ସୁନ୍ଦର ଶୀତଳ ସ୍ୱଚ୍ଛଜଳ । ନୂତନ ଅନୁଭବ । ଦିବ୍ୟ ସୌନ୍ଦର୍ଯ୍ୟବୋଧରେ ମୁଁ କ୍ରମେ ଉଦ୍‌ଭାସିତ ଓ ପୁଲକିତ ହୋଇ ଉଠିଛି ।" (ନୂତନ ଉତ୍ସବ, କହ୍ନେଇ କଥାଘର-ପୃ ୯୨) । ଏଇ ହେଉଛି ନାରୀ ପ୍ରତି ଗାଳ୍ପିକଙ୍କ ଦୃଷ୍ଟିଭଙ୍ଗୀ ।

ଗାଳ୍ପିକ କହ୍ନେଇଲାଲଙ୍କ ସମୟ ଓଡ଼ିଆ ସାହିତ୍ୟରେ ପାଶ୍ଚାତ୍ୟ ଦର୍ଶନ ସ୍ଥିତିବାଦ ମାଡ଼ି ଯିବାର କାଳ । ଓଡ଼ିଶାର ସାହିତ୍ୟିକଙ୍କ ଅବଚେତନରେ ପଞ୍ଚସଖାଙ୍କ ଶୂନ୍ୟବାଦର ଅନୁରଣନ ସ୍ୱାଧୀନୋତ୍ତର ସମୟ ଯାଏ ଥିବାରୁ ଫରାସୀ ଦେଶରେ ପ୍ରଚାରିତ ସ୍ଥିତିବାଦ ଦର୍ଶନ ଏ ମାଟିରେ ମାଡ଼ି ଯିବାକୁ ସହଜ ମଣିଲା । ଉଭୟ ସ୍ଥିତିବାଦ ଓ ଶୂନ୍ୟବାଦ ପୃଥିବୀକୁ ଅନ୍‌ରିଏଲ ଓ ମୃତ୍ୟୁକୁ ରିଏଲ ବୋଲି କହନ୍ତି । ସଂସାରର ଜୀବନ ଯାପନ, ପ୍ରେମ, ଗମନାଗମନ, ପୂଜାପାଠ, ଆଚରଣ ଓ ଉଚ୍ଚାରଣ ସବୁକିଛି ବେଡ଼୍ ଫେଥ୍ ଉପରେ ପର୍ଯ୍ୟବସିତ । ମଣିଷର ମନରେ ରାଜୁତି କରୁଥିବା ଏ ବେଡ଼୍ ଫେଥ୍‌କୁ ନିର୍ମୂଳ କରିଦେବା ପାଇଁ ସ୍ଥିତିବାଦ ସଂଗ୍ରାମ କରୁଥାଏ । ଗାଳ୍ପିକ କହ୍ନେଇ ସିଧାସଳଖ ଭାବେ ଯଦିଓ ସ୍ଥିତିବାଦକୁ ଗ୍ରହଣ କରିନଥିଲେ, ତଥାପି ଅସହାୟତା, ମୃତ୍ୟୁଚେତନା ପରି କେତୋଟି ସ୍ଥିତିବାଦୀ concept ତାଙ୍କ ଭାବ ରାଜ୍ୟକୁ ଆଚ୍ଛନ୍ନ କରିଥିଲା । ଦେବୀ, ରାଣୀ, ସୀମା ସହିତ ଯେତେବେଳେ ପ୍ରେମର ସଂଳାପରେ ଚରିତ୍ର ମଜମାନ, ସେତିକିବେଳେ ମୃତ୍ୟୁ ସମ୍ପର୍କରେ ଚିନ୍ତା ଅହେତୁକ ଭୟ ବିଷୟରେ ଚର୍ଚ୍ଚା ହୋଇଛି । ଅନେକ ଗଳ୍ପ (ସେଇ ଅନିବାର୍ଯ୍ୟ ରକ୍ତ ଚକ୍ଷୁ, ନୂଆ ଠିକଣା, ଅସମ୍ଭବ ମୃତ୍ୟୁ, ବିଶେଷ ସଂବାଦ କୁହେଳି ଉତ୍ତାନ ପାଦରେ ଲେଖକ ବର୍ଣ୍ଣନା କରିଛନ୍ତି ଅସରନ୍ତି ରେଳ ଯାତ୍ରାର ବେଗବାନ୍ ଦୃଶ୍ୟ । ସ୍ୱଳ୍ପାୟୁ ଜୀବନକାଳ କିପରି ଶୀଘ୍ର ଶୀଘ୍ର ନିଃଶେଷ ହୋଇ ଯାଉଛି, ତାହାର ସୂଚନା ଲେଖକର ଅବଚେତନରୁ ପରିସ୍ରୁତ ହୋଇ ଏ

ବର୍ଣ୍ଣନାରେ ରୂପ ପରିଗ୍ରହ କରିଛି। ସ୍ମୃତିବାଦ ସହ ସେଇ ସମୟରେ ଓଡ଼ିଆ କଥା ସାହିତ୍ୟରେ ପ୍ରଭାବ ବିସ୍ତାର କରିଥିଲା ମନସ୍ତତ୍ୱର ବିଶ୍ଳେଷଣ। ଏଇ ହାୱାରେ କହ୍ନେଇଲାଲ ଅନେକ ଗଳ୍ପରେ ମାନବର ମନସ୍ତତ୍ୱକୁ ବିଶ୍ଳେଷଣ କରି ବସିଛନ୍ତି ମାତ୍ର ଅନେକ ସ୍ଥାନରେ ସେ ମନସ୍ତାତ୍ତ୍ୱିକ ବିଶ୍ଳେଷଣର ଗଭୀରତମ ପ୍ରଦେଶକୁ ଯାଇ ପାରିନାହାନ୍ତି। ଫ୍ରୟେଡ଼ ଓ ୟୁଂଙ୍ଗ୍ ମନସ୍ତତ୍ୱ ବିଦ୍‌ଙ୍କ ମନୋବିଶ୍ଳେଷଣ ଓ ସ୍ୱପ୍ନ ବିଶ୍ଳେଷଣର ଯେଉଁ ତାତ୍ତ୍ୱିକତା ସେ ସମୟରେ ଓଡ଼ିଆ ଗଳ୍ପକୁ ପ୍ରଭାବିତ କରିଥିଲା ସେଇ ସବୁ ତତ୍ତ୍ୱର ଖଣ୍ଡିଆ ଖଣ୍ଡିଆ ଉଦନ୍ତ ସେ ବିଭିନ୍ନ ସତୀର୍ଥଙ୍କ ଠାରୁ କେବଳ ଶୁଣିଥିଲେ। ତାଙ୍କ କଥା ସାହିତ୍ୟ କ୍ଷେତ୍ରରେ ଦ୍ରୋଣଗୁରୁ ବିଭୂତି ପଟ୍ଟନାୟକ ପଠନ, ଅଧ୍ୟାପନା ଓ ଚର୍ଚ୍ଚା କ୍ଷେତ୍ରରେ ମନସ୍ତତ୍ୱ ବିଷୟରେ ଯେତିକି ବୈଷୟିକ ଜ୍ଞାନର ଅଧିକାରୀ ହୋଇ ସାରିଥିଲେ ସେତେବେଳକୁ, କହ୍ନେଇଲାଲ ସେଥିରୁ କିୟଦଂଶ ମଧ୍ୟ ଆୟତ୍ତ କରି ପାରିନଥିଲେ। କଥାକାର ବିଭୂତି ବାବୁ ସେ ସମୟ ଖଣ୍ଡରେ ତାଙ୍କ ଲିଖିତ ପ୍ରାୟ ସବୁ ଗଳ୍ପରେ ଫ୍ରୟେଡୀୟ ମନସ୍ତାତ୍ୱିକ ବିଶ୍ଳେଷଣକୁ ଗଭୀର ଭାବରେ କଥାବସ୍ତୁରେ ଦ୍ରବୀଭୂତ କରାଇଛନ୍ତି। "ମନପତଙ୍ଗ" ଗଳ୍ପରେ ବୋହୂର ଅନୁପସ୍ଥିତିର ସୁଯୋଗ ନେଇ ମାତା ଇରାବତୀ ପୁତ୍ର ବିମଳର ଯେଉଁଭଳି ଯତ୍ନ ନେଇଛି ସେଥିରେ ଫ୍ରୟେଡୀୟ ସମ୍ପର୍କ ଅଡିପସ୍ କମ୍ପ୍ଲେକସ୍‌ର ଚିତ୍ର ଜୀବନ୍ତ ଭାବେ ପରିସ୍ଫୁଟ ହୋଇଛି। କହ୍ନେଇର କ୍ୱଚିତ ଗଳ୍ପରେ ଏ ଧରଣର ମନସ୍ତାତ୍ତ୍ୱିକ ବିଶ୍ଳେଷଣ ଦେଖିବାକୁ ମିଳେ। ଯୁବ ଗାଳ୍ପିକ କନ୍‌ହେଇଲାଲଙ୍କ ଗାଳ୍ପିକ ଜୀବନ ସ୍ୱଳ୍ପାୟୁ ହୋଇଥିବାରୁ ସେଇ ସଂକ୍ଷିପ୍ତ ସମୟରେ ମନସ୍ତତ୍ୱର ଗୂଢ଼ ରହସ୍ୟମାନ ପଠନ ଓ ମନନ କରିବାକୁ ହୁଏତ ସମୟ ମିଳିନଥିବ। କିନ୍ତୁ ନିଜ ସଂକ୍ଷିପ୍ତ ଜୀବନଯାତ୍ରାରୁ ସେ ଆହରଣ କରିଥିଲେ ବାସ୍ତବବାଦୀ ଦୃଷ୍ଟିକୋଣ ଓ ଯୁବସୁଲଭ ବିଦ୍ରୋହ। ଏହି ଯୁବସୁଲଭ ବିଦ୍ରୋହ ତାଙ୍କର ଦୁଇଟି ଗଳ୍ପରେ ବିଶେଷ ରୂପ ପରିଗ୍ରହ କରିଛି। ତାହା ହେଲା - 'ନୂଆ ଠିକଣା' ଓ 'ଧୃତରାଷ୍ଟ୍ରର ଆଖି'। କହ୍ନେଇଲାଲ ଏହା ବ୍ୟତୀତ ଅନେକ ଗଳ୍ପରେ ଜୀବନ ଯନ୍ତ୍ରଣା ତଥା ନିଃସଙ୍ଗତାର କଥା କହିବାକୁ ଚେଷ୍ଟା କରିଛନ୍ତି। ନିଃସଙ୍ଗତା ପ୍ରସଙ୍ଗଟି ସେହିପରି ସେତେବେଳକୁ ଅନେକ ଦାର୍ଶନିକ ତଥା ମନୋବୈଜ୍ଞାନିକ ଦୃଷ୍ଟିକୋଣର ତୁଠ ପଥର ସାଜି ସାରିଥିଲା। ୟୁରୋପରେ ଦୁଇଟି ବିଶ୍ୱଯୁଦ୍ଧରେ ମରଣାପନ୍ନ ହୋଇ ଖେଳି ନିଃସଙ୍ଗତା alienation ବା ଅନ୍ତରୀଣତାର ବିକଳ୍ପ ଶବ୍ଦ ରୂପେ ନୂଆ କଳେବର ଗ୍ରହଣ କରି ସାରିଥାଏ। ଗାଳ୍ପିକ କହ୍ନେଇଲାଲଙ୍କ ଗତିଶୀଳ ଗଳ୍ପ "କୁହେଳି"ରେ ଯେଉଁ ନିଃସଙ୍ଗତାର ରୂପ (ଗୋଟାଏ ଟ୍ରେନ୍‌ରେ ଚଢ଼ି ସେ ଷ୍ଟେସନ୍‌ରୁ ଷ୍ଟେସନ୍ ତାହାର ନିରୁଦ୍ଦିଷ୍ଟ ପ୍ରେମିକା କୁହେଳିକୁ ଖୋଜି ଚାଲିଛି) ଚିତ୍ରିତ ସେଥିରେ ମାନସିକଭାବେ ଅନ୍ତରୀଣତା ଭୋଗୁଥିବା ପ୍ରେମିକଟିର ଅସଲ ମନୋବୃତ୍ତି ସଠିକ୍ ଭାବେ ଧରା ପଡ଼େନା।

ସେହିପରି ନିତ୍‌ସେଙ୍କ 'ଈଶ୍ୱର' ଓ ଗାଳ୍ପିକ କହ୍ନେଇ ଲାଲଙ୍କ "ପ୍ରୟୋଜନୀୟ ହତ୍ୟାକାଣ୍ଡ" ଗଳ୍ପର 'ଈଶ୍ୱର' ମଧ୍ୟରେ ପାର୍ଥକ୍ୟ ଆମେ ଦେଖୁଁ। ନିତ୍‌ସେଙ୍କ ଈଶ୍ୱରଙ୍କର ମୃତ୍ୟୁ ହେବା ପରେ ଜନ୍ମ ନେଲା 'ମାନବିକତାବାଦ'। ରାଜା, ମହାରାଜା, ସମାଜପତି ଯେଉଁ ଆସ୍ଥାନରେ ପୂଜା ପାଉଥିଲେ, ନିତ୍‌ସେ ସାଧାରଣ ମଣିଷଙ୍କୁ ସେ ସ୍ଥାନରେ ଅଭିଷିକ୍ତ କଲେ। ନିତ୍‌ସେଙ୍କ ପୂର୍ବ ପୀଢ଼ିରୁ ଦାର୍ଶନିକ ଥିଲେ ଡାରଉଇନ୍। ମାଙ୍କଡ଼ରୁ ଉଦ୍‌ବର୍ତ୍ତିତ ହୋଇ ମାନବ ପ୍ରଜାତି ଆସିଛି ବୋଲି ସେ

ମତ ଦେଇଥିଲେ। ମାନବିକତାବୋଧ ହିଁ ସେହିପରି ନେତି ନେତିବାଦର ପ୍ରତିଭୂ ବୋଲି ନିତ୍ସେ ମତ ଦେଇଥିଲେ। କିନ୍ତୁ କହ୍ନେଇଙ୍କ ଈଶ୍ୱର ମଣିଷ ଦ୍ୱାରା ସୃଷ୍ଟ - ସେ ମଧ ଅସହାୟ ବେକାର ଯୁବକ ପରି କ୍ଷୁଧା ଓ ପିପାସାରେ ମହାନଗରୀର ରାସ୍ତାରେ ଘୁରି ବୁଲନ୍ତି। ସେ ମଧ ଅର୍ଥଶୂନ୍ୟ ହୋଇ ବିନା ଟିକେଟ୍‌ରେ ଟ୍ରେନ୍‌ରେ ଯାତ୍ରା କରିଥାଏ। ସାଙ୍ଗସାଥୀଙ୍କ ପାଖରୁ ଧାର୍ କରି ସିଗ୍ରେଟ୍ ପିଇପାରେ, ମଦ ପିଇପାରେ ଓ ନିଜ ବନ୍ଧୁର ପ୍ରେମିକାର ସାନ ଭଉଣୀକୁ ପ୍ରେମ କରିପାରେ। ବନ୍ଧୁ ଘରେ ନଥିବା ବେଳେ ସେ ମଧ ବନ୍ଧୁପତ୍ନୀଙ୍କୁ ଧର୍ଷଣ କରିପାରେ ଓ ସେଇଥିଯୋଗୁଁ ସେ ଖୁନ୍ ହୁଏ। 'ପ୍ରୟୋଜନୀୟ ହତ୍ୟାକାଣ୍ଡ' ଗଳ୍ପରେ ଗାଳ୍ପିକଙ୍କ ଈଶ୍ୱର କେତେବେଳେ ହିନ୍ଦୁ ଚେତନାର ନିରର୍ଥକ ପ୍ରତିମା ପୂଜାର ପ୍ରତୀକ ଓ କେତେବେଳେ ସମାଜର ବଡ଼ପଣ୍ଡା ଭୂମିକାରେ ଅବତୀର୍ଣ୍ଣ। ଏଇ ଗଳ୍ପ ଲେଖା ହେବା ବେଳକୁ ଗାଳ୍ପିକଙ୍କ ସମକାଳୀନ କବି ରବି ସିଂ "ଚରମ ପତ୍ର" କବିତାରେ ସମାଜପତି ରୂପକ ଈଶ୍ୱରଙ୍କୁ ପ୍ରତିଷ୍ଠାନର ଗୋଲକ ସିଂହାସନକୁ ୨୪ଘଣ୍ଟା ମଧ୍ୟରେ ଖାଲି କରିବାର ଆହ୍ୱାନ ଦେଇଥିଲେ। ସମକାଳୀନ ସେଇ କବିତାର ଆହ୍ୱାନ ବୋଧହୁଏ ଗାଳ୍ପିକଙ୍କୁ ଏ ଗଳ୍ପରେ ଈଶ୍ୱରଙ୍କୁ ଖୁନ୍ କରିବାର ସାହସିକତା ଯୋଗାଇଛି। "ପ୍ରୟୋଜନୀୟ ହତ୍ୟାକାଣ୍ଡ"ରେ କନ୍‌ହେଇ ଜଣେ ସଚ୍ଚା 'ରିବେଲ' ନୁହନ୍ତି- ଖୁନ ବେଶି ହେଲେ ସନ୍ଦେହବାଦୀ (agrobtic) ରୂପେ ପ୍ରତିଭାତ।

କହ୍ନେଇଲାଲ୍‌ଙ୍କ ଅନ୍ୟ ଏକ ଗଳ୍ପ - "ନୂଆ ଠିକଣା"ରେ ଏ ସମାଜର ବଡ଼ପଣ୍ଡା ଓ ବ୍ୟୁରୋକ୍ରାଟ୍ ମାନଙ୍କ ବିରୁଦ୍ଧରେ ନାୟକ କ୍ଷୋଭଭରା ଅଭିଯୋଗର ଫର୍ଦ୍ଦ ପେଶ୍ କରିଛି। ଏହି ପ୍ରସଙ୍ଗରେ ନାୟକ ନିଜର ଆର୍ଥିକ ଦୈନ୍ୟର ଚିତ୍ର ଉପସ୍ଥାପନ କରିଛନ୍ତି। ସେ ଚିତ୍ର ଯେତେ ବାସ୍ତବବାଦୀ ସେତିକି ମର୍ମସ୍ପର୍ଶୀ। ଯଥା - "ଉତ୍ତମାଶା ? ମୋର ସେଇଠି ଚିତ୍କାର କରିବାକୁ ଇଚ୍ଛା ହେଉଥିଲା- ଆପଣ କେମିତି ଜାଣିବେ, ମୋ ମା' ଗାଧୋଇ ଆସି ହଳଦିଲଗା ଚିରା ବିଛଣା ଚଦର ପିନ୍ଧି ତୋରାଣି ଆଉ ପିଆଜ ଖାଏ, ଆପଣ କେମିତି ଜାଣିବେ ମୋ ସାନଭାଇଟି ସକାଳେ ମୁତୁରା କନ୍ଥାରେ ଶୋଇ କିପରି ଖାଇବାକୁ ମାଗେ। ଆପଣ କେମିତି ଜାଣିବେ ମୋ ବିଧବା ଭଉଣୀ ଅନ୍ୟ ଘରେ ଅଇଁଠା ବାସନ ମାଜୁ ମାଜୁ କିପରି ହାତ ପାପୁଲିରେ ପିଠିର ମୁହଁର ଝାଳ ପୋଛେ। ଆପଣ କିପରି ଜାଣିବେ ମୋ ସବା ସାନ ଭଉଣୀ ସ୍କୁଲରେ ଅନ୍ୟର କଲମ ଚୋରୀ କରି ମାଡ଼ଖାଏ। ଆପଣ କିପରି ଜାଣିବେ କାହାର ଚୂଡ଼ିଭରା ହାତ ମୁହଁରୁ ଲୁହ ପୋଛି ଏକ ସୁସମୟକୁ ଅପେକ୍ଷା କରେ। ଉତ୍ତମାଶା, ଓଡ଼ିଶାର ସୁବିଖ୍ୟାତ ସାହିତ୍ୟିକ, ଉଚ୍ଚ ପଦସ୍ଥ ଅଫିସରଙ୍କ କବାଟ ବନ୍ଦ ପରେ ମୋର ଇଚ୍ଛା ହେଉଥିଲା ଗୋଟିଏ ଚପୁଡ଼ାରେ ଏ ସମାଜର ବଡ଼ ବଡ଼ ଅଫିସରଙ୍କ ଖାମଖେୟାଲୀ ଆଚରଣକୁ ଉଡ଼ାଇ ଦିଅନ୍ତି।" (କହ୍ନେଇ କଥାଘର- ପୃ.୭୪)

ସେଇପରି "ନୂଆ ଠିକଣା" ଗଳ୍ପରେ ଚଳନ୍ତି ସ୍ୱାର୍ଥପର ଦୁନିଆକୁ ଦେଖି ଗଳ୍ପ ନାୟକଙ୍କ ମୋହଭଙ୍ଗ ଘଟିଛି। ମୋହଭଙ୍ଗ ଘଟିଛି ଆଜିର ଅମଲାତାନ୍ତ୍ରିକ ଶାସନରୁ। ସାମ୍ବିଧାନିକ ପ୍ରଶାସନରୁ। ମାନବର କ୍ଷୁଧା ତୃଷ୍ଣା ବା ମାନସିକ ଶାନ୍ତି ପ୍ରଚଳିତ ଶାସନ ବ୍ୟବସ୍ଥା ଯୋଗାଇ ପାରିବ ନାହିଁ ବୋଲି ଚାକିରୀ ପ୍ରତ୍ୟାଶୀ ଯୁବକଟିର ଉପଲବ୍ଧି ହୋଇଛି। ସେ ବଞ୍ଚିବାର ପ୍ରେରଣା ଖୋଜି ପାଇଛି

ତା'ଘରି ପାଖରେ ଚାଲିଥିବା ସାମାଜିକ ନ୍ୟାୟ ପ୍ରତିଷ୍ଠା ପାଇଁ ସଂଗ୍ରାମରୁ - ସେଥିପାଇଁ ଅନୁଷ୍ଠିତ ହେଉଥିବା ସମାବେଶରୁ ବା ଜନ ପଟୁଆରରୁ। ଦୁନିଆରେ ବଞ୍ଚିବାକୁ ହେଲେ ଏହିପରି ସଂଗ୍ରାମ କରିବାକୁ ପଡ଼େ। ଜନ ପଟୁଆରରେ ନାୟକ ଦେଖି ପାରୁଛି ନିଜ ପରି କାଙ୍ଗାଳଙ୍କ ଉପସ୍ଥିତି। ସତେ ଯେପରି ବିକ୍ଷୋଭକାରୀଗଣ ତାହାରି ବିଦ୍ରୋହକୁ କାର୍ଯ୍ୟକାରୀ କରିବା ପାଇଁ ପଟୁଆର ଗଢ଼ି ରାଜରାସ୍ତାକୁ ଓହ୍ଲାଇ ପଡ଼ିଛନ୍ତି। ନାୟକର ମନୋଭାବକୁ ଲେଖକ ଚିତ୍ରଣ କରନ୍ତି ଏହିପରି - "ମୁଁ ଚାହିଁ ଦେଖିଲି ଗୋଟିଏ ଲମ୍ବା ଶୋଭାଯାତ୍ରା ମୋର ବିପରୀତ ଦିଗକୁ ଆଗେଇ ଚାଲିଛି। ପ୍ରାଣ ଖୋଲି ସେମାନେ ଯେଉଁ ଚିତ୍କାର ଛାଡୁଛନ୍ତି, ଯେଉଁ ଶବ୍ଦ ଉଚ୍ଚାରଣ କରୁଛନ୍ତି, ସେ ଶବ୍ଦ ଏକାନ୍ତ ମୋର ଭିତରର ଶବ୍ଦ। ହଠାତ୍ ଶୋଭାଯାତ୍ରା ପ୍ରତି ମୋର ଭୀଷଣ ମମତା ବଢ଼ିଗଲା। ମୁଁ ସେ ଶୋଭାଯାତ୍ରାର ପ୍ରତ୍ୟେକ ମଣିଷକୁ ଚାହିଁ ଦେଖିଲି, ଯେପରି ସମସ୍ତଙ୍କ ଚେହେରା ମୋ ଭଳି। ମୋରି ଭଳି ବଢ଼ିଲା ଦାଢ଼ୀ ଓ ମଇଳା ସାର୍ଟ। ଉତ୍ତମାଶା, ଯେତେବେଳେ ମୁଁ ବୁଝି ପାରିଲି ଏ ଶୋଭାଯାତ୍ରାର ପ୍ରତ୍ୟେକ ମଣିଷ ମୋ ଆତ୍ମାର ପ୍ରତିବେଶୀ, ସେତେବେଳେ ମୁଁ ମଧ ସେଥିରେ ମିଶିଗଲି। ମୁଁ ମଧ ମୁକ୍ତ କଣ୍ଠରେ ସେମାନଙ୍କ ପରି ପ୍ରତିବାଦର ସ୍ୱର ଉଚ୍ଚାରଣ କରି ହଜାର ହଜାର ମଣିଷ ପାଖରେ ମୋର ଦାରିଦ୍ର୍ୟ, ମୋର ସମସ୍ୟା, ମୋର ପ୍ରେମ, ମୋର ସାହିତ୍ୟ ସଚେତନତାକୁ ହଜେଇ ଦେଇ ବଞ୍ଚିବାର ଦାବୀ ଉଚ୍ଚାରଣ କରି ଆଗେଇ ଚାଲିଲି।" (କହ୍ନେଇଲାଲ କଥାଘର- ପୃ. ୭୭)

ଉପସ୍ଥିତ ପୂତିଗନ୍ଧମୟ ସମାଜକୁ ଓ ତା'ର ଶାସନ ବ୍ୟବସ୍ଥାକୁ କଟାକ୍ଷ କରିବାର ବା ବ୍ୟଙ୍ଗ କରିବାର ଧାରା ଲେଖକଙ୍କର ଚାଲୁ ରହେ ଅନ୍ୟାନ୍ୟ କେତେକ ଗଳ୍ପରେ। "ଧୃତରାଷ୍ଟ୍ରର ଆଖି" ଗଳ୍ପ ତା' ମଧ୍ୟରୁ ଅନ୍ୟତମ। ଆଧୁନିକ ସମାଜର ସବାତଳ ପାହାଚରେ ଥାଏ ଯେଉଁ ଦରିଦ୍ର ଭିକାରୀ ଶ୍ରେଣୀ - ଯାହାର ସ୍ଥିତି କି ସର୍ବହରା ଶ୍ରେଣୀଠାରୁ ଆହୁରି ତଳେ ସେଇ ଶ୍ରେଣୀରୁ ଆସିଥାଏ ଅନ୍ଧ ଭିକାରୀ ଧୃତରାଷ୍ଟ୍ର। ସାଧାରଣ ଜନତାର ଦାବୀ ଦୂବାକୁ ନେଇ ଲଢୁଥିବା ବିରୋଧୀ ଦଳ କିନ୍ତୁ ଧୃତରାଷ୍ଟ୍ର ପରି ଗରିବ ଲୋକଙ୍କ ଦୁଃଖ ବିଷୟରେ କାଣିଚାଏ ଚିନ୍ତା କରେନା। ରାଜନୀତିକ କ୍ଷମତା ଦଖଲ ପାଇଁ ବିରୋଧୀ ଦଳଙ୍କର ସଭା ଓ ପଟୁଆର ଚାଲିଥାଏ। ଥରେ ଏଇ ପଟୁଆରର ସଭ୍ୟ ଓ ପୋଲିସ୍ ଫୌଜ ମଧ୍ୟରେ ଦ୍ୱନ୍ଦ୍ୱ ଯୁଦ୍ଧ ଲାଗିଲା - ଯାହାର ଘୂର୍ଣ୍ଣି ଭିତରେ ପଡ଼ି ଅନ୍ଧ ଭିକାରୀ ଧୃତରାଷ୍ଟ୍ରର ମୃତ୍ୟୁ ହୁଏ। ଅମଲାତନ୍ତ୍ର ଓ ପୋଲିସ୍ କିପରି ସାଧାରଣ ଲୋକଙ୍କୁ ପୋକ ମାଛି ଠାରୁ ହୀନ ଭାବନ୍ତି - ତାହା ହିଁ ଏ ଗପ ଜଣାଇଦିଏ। ଏ ଗଳ୍ପର ତୀକ୍ଷ୍ଣ ଦୃଷ୍ଟିଭଙ୍ଗୀକୁ ଆମେ କ୍ରିଟିକାଲ ରିଏଲିଜିମ୍ କିସମର ବୋଲି ଚିହ୍ନିତ କରିପାରୁ।

ମଣିଷ କିପରି ନୈତିକତାଠାରୁ ଲୋକ ଦେଖାଣିଆ ଆଧୁନିକ ରୁଚିବୋଧ ଆଡ଼କୁ ଢଳୁଛି - ଏଇ କଥା ଗାଳ୍ପିକଙ୍କ 'ଉତ୍ତାନ ପାଦ" ଗଳ୍ପ ସୂଚନା ଦିଏ। ଆଜିର ସୌଦାଗରୀ ସଭ୍ୟତାରେ ଉତ୍ତାନ ପାଦ ପରି ଅସହାୟ ମଣିଷ ଜଣେ ପ୍ରତିନିୟତ ଦେଖେ ସୁନୀତି ଓ ସୁରୁଚି ମଧ୍ୟରେ ଦ୍ୱନ୍ଦ୍ୱ। ସୁନୀତି ସ୍ୱକୀୟା ମାତ୍ର ସୁରୁଚି ପରକୀୟା। ସୁନୀତିର ପୃଥିବୀ ହେଉଛି ଶସ୍ୟ ସମୃଦ୍ଧ, ସବୁଜଶ୍ରୀ

ଭରା ଗ୍ରାମ୍ୟ ପୃଥିବୀ। "ତାହାର ପୃଥିବୀରେ ଦିଗନ୍ତ ବିସ୍ତାରୀ ଶସ୍ୟ କ୍ଷେତ୍ର, କାଳି ଗାଈର ବହଳିଆ କ୍ଷୀର, ଚନ୍ଦ୍ରର ତିଳ ତଣ୍ଡୁଳିତ କିରଣ ଭିତରେ ଦିନଗୁଡ଼ା ସିଧାସିଧା ଝାଙ୍କ ଝାଙ୍କ ଚଢ଼େଇ ପରି ଉଡ଼ିଗଲେ(ପୃ. ୨୫୪-କ.କ) ଅନ୍ୟ ପକ୍ଷରେ ସୁରୁଚି ହେଉଛି ମେଟ୍ରୋ ସଂସ୍କୃତିର ନାୟିକା। ପ୍ରଥମ ସାକ୍ଷାତରେ ଯାହାର ଭ୍ୟାନିଟି ବେଗ୍‌ରେ ଉତ୍ତାନ ପାଦ ଥିବାର ଦେଖେ -କିଛି ରେଜା ପଇସା, ଲିପ୍‌ଷ୍ଟିକ୍, ପାନିଆ, ସାନ ଦର୍ପଣ ଗୋଟିପାଞ୍ଚଟି ନିରୋଧ, ଜନ୍ମ ନିୟନ୍ତ୍ରଣ ବଟିକା। (ଉତ୍ତାନ ପାଦ - କହ୍ନେଇ କଥାଘର-ପୃ. ୨୫୭)। ଉତ୍ତାନ ପାଦ ଦେହର ଷଡ଼ରିପୁଙ୍କୁ ବଟସ୍ୱର ସଜାଇ ସୁରୁଚି ତାଙ୍କୁ ପୂର୍ଣ୍ଣମାତ୍ରାରେ କବ୍‌ଜା କରେ। ଉତ୍ତାନ ପାଖରୁ ଦୂରେଇ ଯାଆନ୍ତି ସୁନୀତି ଓ ଧ୍ରୁବ - ଚିରଦିନ ଲାଗି। ଲେଖକ ନିଜେହିଁ ଜଣେ ଉତ୍ତାନ ପାଦ। ଆଜିର ନୀତି ବିବର୍ଜିତ ମଣିଷର ଅସହାୟତା, କିଂକର୍ତ୍ତବ୍ୟ ବିମୂଢ଼ତାକୁ ଲେଖକ ଏ ଗଳ୍ପରେ ବ୍ୟଙ୍ଗ କରିଛନ୍ତି।

କୌଣସି ବ୍ୟକ୍ତିଗତ ସମସ୍ୟାକୁ ସମାଧାନ କରିବାକୁ ଯାଇ ମଣିଷ କିପରି ବିଶ୍ୱ ମାନବୀୟ ଦୃଷ୍ଟିଭଙ୍ଗୀର ଦୀକ୍ଷା ନିଏ- ତାହାରି ବାଖ୍ୟା କରେ "ଗୋଟିଏ ଘରପୋଡ଼ିର ଦୃଶ୍ୟ"। ରାଜଧାନୀର ଡାଉନ ଟାଉନରେ ଘରଖୋଜିବାର ଅନୁଭୂତିରୁ ଏ ଗଳ୍ପର ଜନ୍ମ। ବାସହରା ହୋଇ ପ୍ରଥମେ ଲେଖକ ଅଙ୍ଗେ ନିଭାଇଛନ୍ତି ବାସ୍ତୁହରାର ଦୁଃଖ। ଉଦ୍‌ବାସ୍ତୁଙ୍କ ମେଳରେ ମଧ୍ୟବିତ୍ତ ଶ୍ରେଣୀରୁ ବୃନ୍ତଚ୍ୟୁତ ଏ ଲେଖକ ମିଶିଗଲା ବେଳେ ବା ଏକାତ୍ମ ହୋଇଗଲା ବେଳେ ତାଙ୍କ ମନରେ ଦେଖାଦିଏ ଅପୂର୍ବ ଭାବାନ୍ତର। "ରାଜଧାନୀର ବଜାର ରାସ୍ତାଘାଟ ଉପର ଦେଇ ମାଡ଼ି ଆସେ ଧୀର ମନ୍ଥର ବର୍ଷା, ବୁଢ଼ା ବାଡ଼ି ଠକ ଠକ କରି ଆସିଲା ପରି। (ଆଗରୁ କଳହରତ) ସ୍ତ୍ରୀ ଲୋକ ଦୁଇଟି ସତରଞ୍ଜି ଗୁଡ଼ାଇ ପିଲାଙ୍କୁ ଅଣ୍ଟାରେ ଜାବୁଡ଼ି ଦୌଡ଼ିଲେ ବାଟାଜୋତା ଦୋକାନ ପିଣ୍ଡାକୁ। ମୁଁ ବି ଦୌଡ଼ିଲି। ସେମାନଙ୍କ ପାଖରେ ଛିଡ଼ା ହୋଇ ସେମାନଙ୍କ ଦେହର ଗନ୍ଧ ଶୁଂଘିଲି। ଶୁଂଘିଲି ମାଟି ଉପରେ ପଡୁଥିବା ସକାଳୁଆ ବର୍ଷାର ଗନ୍ଧ। ମୋତେ ସବୁ ଗନ୍ଧ ଏକ ପ୍ରକାରର ମନେ ହେଲା। ମୁଁ ମୋ ବାହୁକୁ ଶୁଂଘି ମଧ ଦେଖିଲି। ମୋ ଦେହରେ ସେଇ ଏକ ପ୍ରକାର ଗନ୍ଧ" (କ.କ.ପୃ.୩୦୬-୩୦୭) ଲେଖକ ଏଇ ଉଦ୍‌ବାସ୍ତୁ ଅବସ୍ଥାର ଚଲାଫେରା ମଧ୍ୟରେ ହଠାତ୍ ଖୋଜି ଚାଲନ୍ତି ତାଙ୍କ ପ୍ରେମିକା ପ୍ରତିମାଙ୍କୁ। ପ୍ରତିମା ପରି ଦେଖା ଯାଉଥିବା ନାରୀ ଜଣକର ଅନୁଧାନ କରୁ କରୁ ସେ ବୁଝି ପାରନ୍ତି ବିଶ୍ୱମୟତାର ଆହ୍ୱାନକୁ। ତାଙ୍କ ବ୍ୟକ୍ତିଗତ ପ୍ରେମ ରୂପାନ୍ତରିତ ହୋଇଯାଏ ବିଶ୍ୱପ୍ରେମରେ। କଂଟ ଦେଇ ରାତ୍ରିର ଶଯ୍ୟାସଙ୍ଗୀ ହେବା ପାଇଁ ଆସିନଥିବା ଜଣେ ଧନୀକ ପୁରୁଷକୁ ଅପେକ୍ଷା କରି ପିଙ୍ଗଳା ବେଶ୍ୟାର ରାତ୍ରି ପାହିଯାଏ ବୃଥାରେ। ଶେଷରେ ପିଙ୍ଗଳାର ମନର ଦିବ୍ୟପ୍ରେମର ଉଦୟ ହୁଏ। ମନ ମନ୍ଦିର ମଧ୍ୟରେ ଯେଉଁ ପରମସତ୍ତା ନିୟତ ପିଙ୍ଗଳାର ବାଟଚାହିଁ ବସିଛି - ତାକୁ ପ୍ରେମ କରିବାକୁ ପିଙ୍ଗଳା ସନ୍ୟାସୀ ବନିଯାଏ। ସେହି ଢ଼ଙ୍ଗରେ ଲେଖକ ପ୍ରତିମା ପ୍ରେମର ମୋହରୁ ମୁକ୍ତ ହୋଇ ଭଲ ପାଇ ବସନ୍ତି ସମଗ୍ର ବିଶ୍ୱକୁ। ଆଶ୍ରୟ ଖୋଜୁଥିବା ଲେଖକ ଏବେ କାହା ଚାଳ ତଳେ ଆଶ୍ରୟ ପ୍ରାର୍ଥୀ ନହୋଇ ବନିଯାଏ ଗଛବୃକ୍ଷ, ପାହାଡ଼ ଓ ଶତ ସହସ୍ର ପ୍ରାଣୀଙ୍କ ଆଶ୍ରୟ ସ୍ଥଳ। ଲେଖକଙ୍କ ଭାଷାରେ - ମୁଁ ନିଜକୁ ନିଜେ ଚିତ୍କାର କରି କହିଲି - ଯା' ତୁ ଗଛ ହୋଇଯା"। ଲତା ହୋଇଯା'। ପାହାଡ଼ ପର୍ବତ, ଅରଣ୍ୟ ମରୁଭୂମି ହୋଇଯା'। ସମୁଦ୍ର ଆକାଶ

ବତାସ ସୂର୍ଯ୍ୟ ଚନ୍ଦ୍ର, ନକ୍ଷତ୍ର ସବୁ ହୋଇଯା।' ତୋର ଆଶ୍ରୟର ଦରକାର କ'ଣ? ତୁ ତୁ ନିଜେ ଅନ୍ୟପାଇଁ ଆଶ୍ରୟ...।" (ପୃ. ୩୧୦)

ଗାଳ୍ପିକ କହ୍ନେଇଲାଲ ତାଙ୍କର ଅଧିକାଂଶ ଗଳ୍ପ ଲେଖିଛନ୍ତି – ମନୋଲଗ୍ ବା ନିଜସ୍ୱ ସଂଳାପ ଶୈଳୀରେ। ଫକୀର ମୋହନଙ୍କ ସମୟରୁ ଓଡ଼ିଆ ଗଳ୍ପ କଥନର ମୂଳ କଥକର ଭୂମିକା ଗ୍ରହଣ କରି ଆସିଛନ୍ତି ସାଧାରଣତଃ ଲେଖକ। ଲେଖକ ଅଧିକାଂଶ ଓଡ଼ିଆ ଗଳ୍ପରେ ଜଣେ ପର୍ଯ୍ୟବେକ୍ଷକ ବା ଦେଖଣାହାରୀ। ଗଳ୍ପଟା ସତେ ଯେମିତି ହୋଇଯାଏ ତାହାର ଏକ କଳାତ୍ମକ ରିପୋର୍ଟିଂ। ଏ ଗଳ୍ପଗୁଡ଼ାକ ଯଦି  ସମାଲୋଚକର ଟେବୁଲକୁ ଆସେ, ତେବେ ସେଥିରେ ବେଶୀ କ୍ଷତାକ୍ତ ହୁଅନ୍ତି ଗଳ୍ପର ଚରିତ୍ରଗଣ ଓ କଥାବସ୍ତୁ। ଲେଖକ ସମାଲୋଚକ ଠାରୁ ସାମାନ୍ୟ ଚେତାବନୀ ଶୁଣି ଅଳ୍ପକେ ଖସିଯାଏ। 'ମୁଁ' କୁ ନାୟକ କରି ବା ମୁଖ୍ୟ ଚରିତ୍ର କରି ଗଳ୍ପ କହିବା ଆରମ୍ଭ କଲେ ଆମ ଓଡ଼ିଶା ରାଜ୍ୟରେ ଗୋପୀନାଥ ମହାନ୍ତି, ବସନ୍ତ ଶତପଥୀ, ରବି ପଟ୍ଟନାୟକ, ଅଖିଳ ମୋହନ ଓ ବିଭୂତି ପଟ୍ଟନାୟକ। ଏ ପରମ୍ପରାର ଏକ କୁଶଳୀ ସ୍ଥପତି ପାଲଟିଗଲେ ଯୁବ ଗାଳ୍ପିକ କହ୍ନେଇଲାଲ। ଆତ୍ମ କଥନ, ଆତ୍ମ ବିଶ୍ଳେଷଣ ମୂଳକ ଗଳ୍ପ ବଖାଣୁ ବଖାଣୁ କହ୍ନେଇ ଲାଲଙ୍କ ଗଳ୍ପ କାବ୍ୟିକତାର ସମୁଦ୍ର ସ୍ନାନ କଲା। ସମାଲୋଚନା ଆକ୍ଷେପ ଓ କଟାକ୍ଷକୁ ସେ ଭ୍ରୂକ୍ଷେପ ନକରି ଏଇ ଧାରାରେ ଗଳ୍ପ ପରେ ଗଳ୍ପ ଗଢ଼ି ଚାଲିଲେ। ତାଙ୍କ ଗଳ୍ପ ଅନେକ ସ୍ଥଳରେ ଓଡ଼ିଆ କଥା ପରମ୍ପରାରେ ସୃଷ୍ଟି କଲା ଡାଏରୀଧର୍ମୀ ସାହିତ୍ୟର ଧାରା ବା ଦିନଲିପିର ସାହିତ୍ୟିକ ଧାରା, ଯଦିଓ ଏ ଦିନଲିପିର ବ୍ୟାଖ୍ୟାନରେ ଆଜିର ସମାଜ, ତାହାର ଅନ୍ତର୍ନିହିତ ଦ୍ୱନ୍ଦ୍ୱ, ମଣିଷର ଦୁଃଖ, ସୁଖ, ହସ, କାନ୍ଦ, ଜୀବନ ଯାତ୍ରାର ପ୍ରତିଛତ୍ର ପ୍ରସଙ୍ଗତଃ ସ୍ଥାନ ପାଇଲା, କିନ୍ତୁ ବିଶ୍ୱମାନବର ଦୁଃଖ, ସନ୍ତାପ ଓ ବୃହତ୍ତର ମାନବିକତାର ଆହ୍ୱାନ ଢାଁ ଢାଁ କହ୍ନେଇର ଗଳ୍ପର ପ୍ରାଣରେ ସଞ୍ଚରି ଯାଇଥିବାର ଦେଖାଯାଏ। ସାହିତ୍ୟରେ ବିଶ୍ୱାୟନ ଆଣିବା କାର୍ଯ୍ୟରେ କହ୍ନେଇର ଲେଖନୀ ପଛରେ ପଡ଼ିଗଲା। ଏଇ ପ୍ରସଙ୍ଗରେ ଆମେ A little girls Diary ବା ଜଣେ କିଶୋରୀ ଜୀଉ ଝିଅ ଆନୀର ବିଶ୍ୱବିଶ୍ରୁତ ଡାଏରୀ ବିଷୟରେ ଉଲ୍ଲେଖ କରିପାରୁ। ଆମଷ୍ଟାରଡାମ୍‌ର ଏକ ସହର ତଳିରେ ୨ୟ ବିଶ୍ୱଯୁଦ୍ଧ କାଳରେ ଅଣ୍ଡର ଗ୍ରାଉଣ୍ଡରେ ଆତ୍ମଗୋପନ କରିଥିବା କିଶୋରୀ ଆନୀର ପରିବାର କେବଳ ସାଂସାରିକ ହାନୀ ହରକତ ଏ ଡାଏରୀରେ ସେ ଝିଅ ଲିପିବଦ୍ଧ କରିନାହିଁ। ଡାଏରୀରେ ନିତ୍ୟ ନୂତନ ଭାଷାରେ କଳାତ୍ମକ ବର୍ଣ୍ଣନା ମାଧ୍ୟମରେ ହିଟଲରର ଇହୁଦୀ ମାରଣ ଅଭିଯାନ, ତାହାର ତୀବ୍ର ଆର୍ଯ୍ୟାନ୍ ମନୋବୃତ୍ତି, ଜର୍ମାନୀର ପଡ଼ୋଶୀ ଦେଶ ଆକ୍ରମଣରେ ମାନବିକତା ବିରୋଧି ଭୂମିକା, ବିଶ୍ୱଯୁଦ୍ଧ ପରିପ୍ରେକ୍ଷୀରେ ବିଶ୍ୱଶାନ୍ତିର ଆବଶ୍ୟକତା ଇତ୍ୟାଦି ଟିକିନିଖି କଥା ଏ ଆତ୍ମଲିପିରେ ଲିପିବଦ୍ଧ ହୋଇଛି। ଏହା ବସ୍ତୁତଃ ପାଲଟି ଯାଇଛି ସାହିତ୍ୟିକ କୃତୀର ଏକ ଜୀବନ୍ତ ଦସ୍ତାବିଜ୍। ସେଇ ଅଣ୍ଡରଗ୍ରାଉଣ୍ଡ ରହଣି କାଳରେ ପଡ଼ୋଶୀ ପରିବାରର ପିଟର ନାମକ କିଶୋର ସହିତ ପ୍ରେମ ସମ୍ପର୍କ ସ୍ଥାପିତ ହୁଏ କିଶୋରୀ ଆନୀର। କିଶୋରୀ ଜୀବନରେ ପହିଲି ପ୍ରେମର ସ୍ପର୍ଶ ସେ ଡାଏରୀରେ ଅତି ଉଜ୍ଜଳ ଭାଷାରେ ବର୍ଣ୍ଣିତ ହୋଇଥିବାର ଆମେ ଦେଖୁ– ଯେମିତି ଦେଖୁ ପ୍ରଥମ ପ୍ରେମର ବର୍ଣ୍ଣନା କହ୍ନେଇର ଡାଏରୀ ଢ଼ାଞ୍ଚାରେ ଲିଖିତ ଗପରେ। ବିଭିନ୍ନ ପ୍ରକାର ଅନୁଭୂତି ଘଟଣାର ଆତ୍ମୀୟ ବର୍ଣ୍ଣନା, ବିଶେଷତଃ ସମକାଳୀନ

ବିଶ୍ୱଘଟଣା ବଳୀର ତାତ୍ପର୍ଯ୍ୟପୂର୍ଣ୍ଣ ବ୍ୟାଖ୍ୟା ଆନୀର ଡାଏରୀକୁ ବହୁମୁଖୀ ସାହିତ୍ୟରେ ପରିଣତ କରି ଦେଇଛି । ଅଥଚ ଡାଏରୀ ଢାଞ୍ଚାରେ ଲିଖିତ କହ୍ନେଇର ଗପରେ କେବଳ କେତେକ ନଷ୍ଟାଲଜିକ୍ ବର୍ଣ୍ଣନା ସାଙ୍ଗକୁ ପ୍ରେମ, ଦେହଜ କ୍ଷୁଧା ଓ ଆତୁର ମନର ଭାବନାରାଜିର ଚିତ୍ର ଦେଖିବାକୁ ମିଳେ । ତଥାପି ଓଡ଼ିଆ କଥା ସାହିତ୍ୟରେ କହ୍ନେଇର ଆବିର୍ଭାବ ଠିକଣା ସମୟରେ ଏକ ନବ ଗାନ୍ଧିକ ପୀଢ଼ିର ଜୟ ଯାତ୍ରାର ସୁରୁ ହେବାର ସୂଚନା ଦିଏ, ଏଥିରେ ସନ୍ଦେହ ନାହିଁ ।



# ଅଗଷ୍ଟ କ୍ରାନ୍ତିର ଅପବ୍ୟାଖ୍ୟା

ଭାରତର ଜାତୀୟ କଂଗ୍ରେସ ବିଭିନ୍ନ ସମୟରେ ଓ ଭିନ୍ନ ଭିନ୍ନ ଆଳରେ ଆମ ଦେଶର କମ୍ୟୁନିଷ୍ଟମାନଙ୍କୁ 'ଦେଶଦ୍ରୋହୀ' ବୋଲି ଅଙ୍ଗୁଳି ନିର୍ଦ୍ଦେଶ କରି ଆସିଛି। ୧୯୪୨ ମସିହାର ପ୍ରସିଦ୍ଧ ଅଗଷ୍ଟ କ୍ରାନ୍ତିରେ କମ୍ୟୁନିଷ୍ଟମାନେ ଅଂଶ ଗ୍ରହଣ କରି ନ ଥିବାର ଦର୍ଶାଇ ଏ ପ୍ରକାର ଅଭିଯୋଗ ସେମାନେ କରିଆସିଛନ୍ତି। କଂଗ୍ରେସ ସହିତ ତାଳ ଦେଇ ଓ କଣ୍ଠ ମିଳାଇ ଆଜିଯାଏ ଏ ପ୍ରକାର ଅଭିଯୋଗ ଅନ୍ୟ ଦକ୍ଷିଣପନ୍ଥୀ ରାଜନୀତିକ ଦଳ କରି ଆସୁଛନ୍ତି। ଏହି ଅଭିଯୋଗ ଏବେ କୁତ୍ସା ଆକାର ଧାରଣ କରିଛି ଓ ସୂଚନା ଦେଉଛି ଯେ - "ଆମେ ଯେଉଁମାନେ କମ୍ୟୁନିଷ୍ଟଙ୍କୁ ଦୋଷାରୋପ କରୁଛୁ, ନିଜେ ସଚ୍ଚା ଜାତୀୟବାଦୀ ଓ ଦେଶପ୍ରେମୀ ଏବଂ କମ୍ୟୁନିଷ୍ଟମାନେ ଦେଶଦ୍ରୋହୀ।"

ଭାରତୀୟ କମ୍ୟୁନିଷ୍ଟପାର୍ଟି ୧୯୨୬ ମସିହାରେ ଗଠିତ ହୋଇଥିଲା। ୧୯୩୮ ଯାଏ କମ୍ୟୁନିଷ୍ଟମାନେ କଂଗ୍ରେସ ଦଳ ଭିତରେ "କଂଗ୍ରେସ ସୋସାଲିଷ୍ଟ ଫୋରମ୍" ନାମକ ଗୋଷ୍ଠି ଗଢ଼ି ଚଳପ୍ରଚଳ କରୁଥିଲେ। ୧୯୪୨ ମସିହା ଅଗଷ୍ଟ ୯ ତାରିଖ। ସେଦିନ ଗାନ୍ଧି କହିଲେ - "Leave India either to God or anarchy, but quit India."। ସେତେବେଳକୁ ସାରା ଦେଶ କମ୍ୟୁନିଷ୍ଟ ଦଳର ସଦସ୍ୟ ସଂଖ୍ୟା, ମୋଟେ ପାଞ୍ଚ ହଜାର। ନୂଆକରି ଗଢ଼ା ହୋଇଥିବା ଏଇ ଦଳ ଥିଲା, ଏକ କ୍ଷୁଦ୍ର ଶକ୍ତିସମ୍ପନ୍ନ ପାର୍ଟି। ସେତେବେଳେ କଂଗ୍ରେସ ଏକ ସର୍ବଭାରତୀୟ ସର୍ବଶକ୍ତିମାନ୍ ପାର୍ଟି। 'ଭାରତ ଛାଡ଼' ଡାକରାକୁ କ୍ଷୁଦ୍ର ପାଞ୍ଚ ହଜାରର କ୍ଷୁଦ୍ର ତାକତ୍‌ରେ ଏମିତି କ'ଣ ବିରୋଧ କରି ବସିଲେ ଯେ, କଂଗ୍ରେସ ଆଶାନୁରୂପ ଫଳ ହଠାତ୍ ପାଇ ପାରିଲା ନାହିଁ ଏବଂ ଏ କ୍ଷୁଦ୍ର ଶକ୍ତିକୁ 'ଦେଶଦ୍ରୋହୀ' ଆଖ୍ୟା ଦେଇ ବସିଲା! ଏହା ଭାବିଲେ ଆଶ୍ଚର୍ଯ୍ୟ ଲାଗେ। ମୋଟ କଥା ହେଲା, ଜାତୀୟ କଂଗ୍ରେସ ପାଖରେ ସବୁ ଥାଇ ବି ପ୍ରଚଣ୍ଡ ସାଙ୍ଗଠନିକ ଶକ୍ତି ନଥିଲା। କୌଣସି ବଳ ପ୍ରୟୋଗ ନକରି ଅହିଂସ୍ର ଉପାୟରେ ସ୍ୱାଧୀନତା ଲାଭ କରିବାର ସ୍ଲୋଗାନ୍ ସେମାନଙ୍କ ସାଙ୍ଗଠନିକ ଶକ୍ତିକୁ ଅନେକ ପରିମାଣରେ ସ୍ତିମିତ କରି ଦେଇଥିଲା। ଅପରପକ୍ଷରେ, କ୍ଷୁଦ୍ର କମ୍ୟୁନିଷ୍ଟ ପାର୍ଟିର ଏ ପରିସ୍ଥିତିକୁ ବିଶ୍ଳେଷଣ କରିବାରେ ପ୍ରଚଣ୍ଡ ଧୀଶକ୍ତି ଥିଲା, ରୂପରେ କ୍ଷୁଦ୍ର ହେଲେ ବି କର୍ମରେ ମହାରୁଦ୍ରର ସୌର୍ଯ୍ୟ ଥିଲା। ଗୁଣାତ୍ମକ ଭାବରେ ଏମାନେ କଂଗ୍ରେସଠାରୁ ବହୁତ ଆଗରେ ଥିଲେ।

ଦ୍ୱିତୀୟ ବିଶ୍ୱଯୁଦ୍ଧ (୧୯୩୯-୧୯୪୪)ର ଗତି, ପ୍ରକୃତି ବିଶ୍ଳେଷଣ କରିବା କ୍ଷେତ୍ରରେ କମ୍ୟୁନିଷ୍ଟ ଓ କଂଗ୍ରେସ ମଧ୍ୟରେ ମତ ପାର୍ଥକ୍ୟ ଦେଖାଯାଇଥିଲା। ୧୯୩୯ ମସିହାର ସେପ୍ଟେମ୍ବର

୧ ତାରିଖରେ ହିଟଲ୍‌ରଙ୍କ ପୋଲାଣ୍ଡ ଆକ୍ରମଣ ଯୋଗୁଁ ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହୋଇଥିଲା। ସାରା ଦୁନିଆଁରେ ସାମ୍ରାଜ୍ୟବାଦୀ ଆଧିପତ୍ୟ ବିସ୍ତାର କରିବା ଓ ବିଭିନ୍ନ ଦେଶର ବଜାରକୁ ଦଖଲ କରିନେବା ଏ ଯୁଦ୍ଧର ଲକ୍ଷ୍ୟ ଥିଲା। ୧୯୩୯ରୁ ୧୯୪୧ ମସିହା ଜୁନ୍‌ମାସ ୨୧ ତାରିଖ ଯାଏ ଦୁଇ ସାମ୍ରାଜ୍ୟବାଦୀ ଗୋଷ୍ଠୀ (ଅକ୍ଷ ଶକ୍ତି ଓ ମିତ୍ର ଶକ୍ତି) ମଧ୍ୟରେ ଏ ମହାସମର ସୀମିତ ଥିଲା। ୧୯୪୧ ମସିହା ଜୁନ ୨୨ ତାରିଖରେ ଅକ୍ଷ ଶକ୍ତିର ମୁଖ୍ୟ ଜର୍ମାନ୍‌ର ଏକଛତ୍ର ଶାସକ ହିଟ୍‌ଲର୍‌ଙ୍କ ସୋଭିଏତ୍ ୟୁନିୟନ୍ ଆକ୍ରମଣ ଫଳରେ ଏ ଯୁଦ୍ଧର ଗତି, ପ୍ରକୃତି ଗୁଣାତ୍ମକ ମାନରେ ପରିବର୍ତ୍ତନ ହେଲା। ଏହା ଫାସିଷ୍ଟ ଶକ୍ତି ସହିତ ନୂତନ ଭାବରେ ଗଠିତ ସମାଜବାଦୀ ଶକ୍ତିର ଲଢ଼େଇରେ ପରିଣତ ହେଲା। କମ୍ୟୁନିଷ୍ଟମାନେ ବିଶ୍ୱ ଯୁଦ୍ଧର ଏଇ ପ୍ରକାର ବ୍ୟାଖ୍ୟା କଲେ; ଏଥି ସହିତ ସମ୍ମତ ନଥିଲେ କଂଗ୍ରେସର ନେତୃବୃନ୍ଦ। ସେମାନେ କହୁଥିଲେ - "ଯୁଦ୍ଧ ତ ଯୁଦ୍ଧ! ତାହାର ପ୍ରକୃତିର ପରିବର୍ତ୍ତନ କୁଆଡ଼େ ହେଲା ?" ଫାସିଷ୍ଟମାନଙ୍କର ସୋଭିଏତ୍ ଶିଶୁ-ସମାଜବାଦୀ ରାଷ୍ଟ୍ର ଆକ୍ରମଣକୁ, ସମଗ୍ର ବିଶ୍ୱର ସମାଜବାଦୀ ଓ ମାନବବାଦୀ ଲୋକେ ଦୃଢ଼ କଣ୍ଠରେ ନିନ୍ଦା କଲେ। ଏ ଯୁଦ୍ଧକୁ ସୋଭିଏତ୍ ଜନଗଣ, ଦେଶପ୍ରେମୀମାନଙ୍କର ଦେଶରକ୍ଷା ପାଇଁ, ସମରରେ ପରିଣତ କଲେ ଏବଂ ଏହାକୁ ସଂଗ୍ରାମ ବୋଲି କହିଲେ। ଫାସିଷ୍ଟମାନଙ୍କୁ ପରାସ୍ତ କରି ମୂଳପୋଛ କରି ପାରିଲେ ପୃଥିବୀ ବଞ୍ଚିବ ଓ ଆଫ୍ରୋ-ଏସୀୟ ତଥା ଲାଟିନ୍ ଆମେରିକୀୟ ଦେଶଗଣ ସାଧୀନତା ପାଇ ପାରିବେ ବୋଲି ସୋଭିଏତ୍ ଦେଶର ପ୍ରଶାସକ ଷ୍ଟାଲିନ୍ ଦୃଢ଼ ନିଶ୍ଚିତ ଥିଲେ। ସୋଭିଏତ୍ ଶିଶୁ ପ୍ରଜାତନ୍ତ୍ରକୁ ଫାସିଷ୍ଟ କାଳ ସଞ୍ଚାଣ ସମ୍ମୁଖରେ ଯୁଝୁଥିବାର ଦେଖି ଜର୍ମାନ୍‌ର ପଶ୍ଚିମ ପଟ ରଣାଙ୍ଗନରେ ଆମେରିକା ଓ ଇଂଲଣ୍ଡ ଚୁପ୍ ହୋଇ ବସିଲେ। ତତ୍‌କାଳୀନ ଆମେରିକାର ବିଶିଷ୍ଟ ସିନେଟ୍‌ର (ପରବର୍ତ୍ତୀ ସମୟର ଉପରାଷ୍ଟ୍ରପତି) ହେନେରୀ ଟ୍ରୁମାନ୍ କହିଥିଲେ - "If we see that Germany is winning, we ought to help Russia and if Russia is winning we ought to help Germany and that way, let them kill as many as possible." ଏହି ଉକ୍ତିରୁ ଉଭୟ ଆମେରିକା ଓ ଇଂଲଣ୍ଡର, ସୋଭିଏତ୍ ୟୁନିୟନ୍ ପ୍ରତି ଦୃଷ୍ଟିଭଙ୍ଗୀ ସ୍ପଷ୍ଟ ହୋଇଯାଏ। ବିଶ୍ୱରେ ନୂଆ ଗଢ଼ି ଉଠୁଥିବା ଏକ ସମାଜବାଦୀ ରାଷ୍ଟ୍ରର କଣ୍ଠ ଚିପି ତାଙ୍କୁ ବିନଷ୍ଟ କରିବା, ଏହି ପୁଞ୍ଜିବାଦୀ ରାଷ୍ଟ୍ରର ଇଚ୍ଛା ଥିଲା। ଦୁନିଆଁର ଏହି ଏକକ ସମାଜବାଦୀ ରାଷ୍ଟ୍ର ବଞ୍ଚିଲେ ଏହାର ସାହାଯ୍ୟ ସମର୍ଥନରେ ପରାଧୀନ ଦେଶମାନେ ମୁକ୍ତି ଲାଭ କରିବେ-ଗୋଟାଏ ଦିହୁଡ଼ି ଜଳି ରହିଲେ, ତାହା ଯୁଦ୍ଧ ପରର ପୃଥିବୀରେ ଶହ ଶହ ରାଷ୍ଟ୍ରସତ୍ତାକୁ ଉଦ୍ଦୀପିତ କରିବ, ଏହା ହିଁ ଥିଲା ଦୁନିଆଁର ସବୁ ଦେଶର ସମାଜବାଦୀ ଶକ୍ତି ଓ ବ୍ୟକ୍ତିର ସ୍ୱପ୍ନ। ସେହି ନ୍ୟାୟରେ ଭାରତୀୟ କମ୍ୟୁନିଷ୍ଟମାନେ ୧୯୪୧ ପରବର୍ତ୍ତୀ ମହାଯୁଦ୍ଧରେ ସୋଭିଏତ୍‌ର ଆତ୍ମରକ୍ଷାର ସଂଗ୍ରାମ ସପକ୍ଷରେ ଆହା ପଦଟିଏ ଉଚ୍ଚାରଣ କରିଥିଲେ। ବିଶ୍ୱଯୁଦ୍ଧ ଆରମ୍ଭ ହେବାକ୍ଷଣି ଇଂଲଣ୍ଡ ଏ ଯୁଦ୍ଧକୁ ଲମ୍ଫ ପ୍ରଦାନ କରିଥିଲା ଓ ତା' ସହିତ ତାହାର ଅଧିନସ୍ଥ ଦେଶ ଭାରତ ସେଥିରେ ସାମିଲ୍ ହେଲା ବୋଲି ଘୋଷଣା କରିଥିଲା। ବ୍ରିଟିଶ୍ ସମର ପାଣ୍ଠିକୁ ଭାରତୀୟ ରାଜନ୍ୟ ମଣ୍ଡଳୀ ଆର୍ଥିକ ସାହାଯ୍ୟ ଯୋଗାଇବା ଭଳି ନୀଚ ସ୍ତରକୁ କମ୍ୟୁନିଷ୍ଟମାନେ ଖସି ଯାଇ ନଥିଲେ। ସୋଭିଏତ୍ ଗଣ ପ୍ରଜାତନ୍ତ୍ର

ପ୍ରତି ଏମାନଙ୍କର ସମର୍ଥନକୁ କଂଗ୍ରେସୀ ପ୍ରଚାରକଗଣ ବ୍ରିଟିଶ୍ ସାମ୍ରାଜ୍ୟବାଦୀଂକ ପ୍ରତି ସାହାଯ୍ୟ ଓ ସହଯୋଗ ବୋଲି କହିଥିଲେ।

୧୯୩୧ ମସିହାରେ ଲଣ୍ଡନଠାରେ ଅନୁଷ୍ଠିତ ଦ୍ୱିତୀୟ ଗୋଲ ଟେବୁଲ ବୈଠକକୁ ଗାନ୍ଧି ଯାଇଥିଲେ। ୧୯୩୨ର ତୃତୀୟ ଗୋଲ ଟେବୁଲ୍ ବୈଠକକୁ କଂଗ୍ରେସ ବର୍ଜନ କରିଥିଲା। ୧୯୩୨ ମସିହା ପରେ ଭାରତରେ ଜାତିଆଣବାଦର ବୀଜ ବପନ ପାଇଁ ବ୍ରିଟିଶ୍ ସରକାର କମ୍ୟୁନାଲ୍ ଆୱାର୍ଡ୍ ଘୋଷଣା କଲା। ୧୯୩୪ ମସିହାଠାରୁ ୧୯୪୧ ଯାଏ ଗାନ୍ଧି ବିଭିନ୍ନ ରଚନାତ୍ମକ କାର୍ଯ୍ୟକ୍ରମ ହାତକୁ ନେଲେ। ନିଜେ କଂଗ୍ରେସର ଚାରି ଜଣିଆ କମିଟିର ସଭ୍ୟ ପଦରୁ ଅବ୍ୟାହତି ନେଇ ଗ୍ରାମର ଉତ୍ଥାନ ପାଇଁ ଗାଁକୁ ଚାଲିଲେ। ୧୯୪୧ ଯାଏ ଭୟାବହ ଯୁଦ୍ଧ ଅବସରରେ ଗାନ୍ଧିଙ୍କର ବ୍ରିଟିଶ୍ ସାମ୍ରାଜ୍ୟ ବିରୁଦ୍ଧରେ, ଏକ ଅପୋଷହୀନ ସଂଗ୍ରାମ ସୁରୁ କରିବା ଉଚିତ ଥଲା। ୧୯୩୯ରୁ ୧୯୪୧ ଯାଏ AICC କେବଳ କେତେକ ସୁନ୍ଦର ଇଂରାଜୀ ଶବ୍ଦ ସମ୍ବଳିତ ପ୍ରସ୍ତାବ ଗ୍ରହଣ କରିବା ବ୍ୟତୀତ କାର୍ଯ୍ୟ କ୍ଷେତ୍ରରେ କିଛି ମାତ୍ର ପଦକ୍ଷେପ ନେଇ ନଥିଲେ ବରଂ ଲଣ୍ଡନ ଉପରେ ଜର୍ମାନ୍‌ର ବୋମା ମାଡ଼ରେ ବ୍ୟଥିତ ହୋଇ ଗାନ୍ଧି ସିମଲାଠାରେ ଭାଇସ୍‌ରାୟଙ୍କୁ ସାକ୍ଷାତ କରି (୧୯୩୯) ତାଙ୍କର ସମବେଦନା ଜ୍ଞାପନ କରିଥିଲେ। ଲଣ୍ଡନ୍‌ର ସଂସଦ ଭବନ 'ଓଏଷ୍ଟ ମିନିଷ୍ଟର ଏବେ' ଉପରେ ବୋମାମାଡ଼ ହେଲେ ବ୍ରିଟିଶ୍ ସାମ୍ରାଜ୍ୟର ମହାନ୍ ଐତିହ୍ୟ ବିନଷ୍ଟ ହେବ ଏବଂ ଏହାଦ୍ୱାରା ବିଶ୍ୱର ଗୌରବାବହ ସୌଧମାନ ଧୂଳିସାତ୍ ହେବ, କହି ଗାନ୍ଧି ବଡ଼ ଲାଟ୍‌ଙ୍କ ଆଗରେ କଇଁ କଇଁ କାନ୍ଦିଥିଲେ। " I told his Excellency that my own sympathy were with England and France from purely humanitarian stand point. I told him that I could not contemplate without being stirred to the very depth by the destruction of London which had neither to been regarded impregnable. And I was picturing before him the Houses of Parliament and westminister Abbey and their possible destruction. I broke down.' (Young India- ୧୫.୯.୧୯୩୯) ସେଇ ମାରାତ୍ମକ ମୁହୂର୍ତ୍ତର ବର୍ଣ୍ଣନା ବେଳେ ଗାନ୍ଧି, ଯୁଦ୍ଧର ଏଇ ପ୍ରକାର ଭୟାବହ ପରିସ୍ଥିତିରେ, ସ୍ୱାଧୀନତା ପାଇବାର ଚିନ୍ତା ସୁଦ୍ଧା କରି ପାରିନଥିଲେ। 'ୟଙ୍ଗ୍ ଇଣ୍ଡିଆ'ରେ ସେ ଏହା ସ୍ୱୀକାର କରି ଲେଖିଲେ- "I am not therefore just now thinking of India's deliverance. It will come, but what will it be worth if England and France fail?" ଭାରତର ସ୍ୱାଧୀନତା ପ୍ରାପ୍ତି କଥାଟା ଏଠି ଗାନ୍ଧିଙ୍କ ପାଇଁ ଗୁରୁତ୍ୱପୂର୍ଣ୍ଣ ନଥିଲା ଯେତେ ଗୁରୁତ୍ୱପୂର୍ଣ୍ଣ ଥିଲା ଯୁଦ୍ଧାକ୍ରାନ୍ତ ଇଂଲଣ୍ଡ ଓ ଫ୍ରାନସର କଥା। ବିଟ୍ରିଶ୍ ସରକାରଙ୍କର ଆମ ଦେଶକୁ ଯୁଦ୍ଧରେ ସାମିଲ୍ କରିବା କଥାକୁ ନାପସନ୍ଦ କରି କେତେକ ପତ୍ର ବିନିମୟ ଓ ପ୍ରସ୍ତାବ ବ୍ୟତୀତ ଗାନ୍ଧି ଓ କଂଗ୍ରେସ ଏହି ସାମ୍ରାଜ୍ୟବାଦୀ ଯୁଦ୍ଧର ପ୍ରାରମ୍ଭିକ ବର୍ଷମାନଙ୍କରେ କିଛି ହିଁ କଲେ ନାହିଁ କି କୌଣସି ସଂଗ୍ରାମୀ କାର୍ଯ୍ୟକ୍ରମ ହାତକୁ ନେଲେ ନାହିଁ। କଂଗ୍ରେସ ୧୯୩୯ ମସିହା ନଭେମ୍ବର

୨୨ ତାରିଖରେ ତାହାର କାର୍ଯ୍ୟକାରୀ ବୈଠକରେ ସିଦ୍ଧାନ୍ତ ନେଇଥିଲା- "The declaration made on behalf of the British Government regarding India's participation, been to demonstrate that the present war like the world war of 1914-18, is being carried on for imperialist ends, and British imperialism is to remain entrenched in India" ଏ ସିଦ୍ଧାନ୍ତଟି ଠିକ୍ ଥିଲେ ମଧ୍ୟ କେବଳ ବଡ଼ ବଡ଼ ଭାଷଣ ବ୍ୟତୀତ ଯୁଦ୍ଧର ପ୍ରାରମ୍ଭିକ ବର୍ଷ ମଧ୍ୟରେ ଗାନ୍ଧିଙ୍କ ମୁହଁରୁ ବ୍ରିଟିଶ୍‌ମାନଙ୍କ ବିରୁଦ୍ଧରେ ପଦେ କଥା ବାହାରିଲା ନାହିଁ। ଗାନ୍ଧିଙ୍କର ଏହି ସଲାସୁତୁରା ଗୁଣ ବ୍ରିଟିଶ୍ ସମ୍ରାଜ୍ୟବାଦୀଙ୍କ ସ୍ୱାର୍ଥ ସପକ୍ଷରେ ଯାଇଥିଲା।

'ଭାରତ ଛାଡ଼' ଡ଼ାକରାରେ ଦୁଇ ବର୍ଷ ପରେ ୧୯୪୩ ମସିହାରେ ଆଗା ଖାଁ ରାଜପ୍ରସାଦରେ ଗୃହବନ୍ଦୀ ଥିବାବେଳେ ଗାନ୍ଧି ବ୍ରିଟିଶ୍ ଗୃହ ସଚିବ ରିଚର୍ଡ ମାକ୍ସ ଉଏଲ୍‌ଙ୍କୁ ପତ୍ର ଲେଖି ମଧ୍ୟ ମିତ୍ର ଶକ୍ତିଙ୍କ ଆତ୍ମରକ୍ଷାମୂଳକ ଯୁଦ୍ଧକୁ ସମର୍ଥନ କରନ୍ତି ବୋଲି କହିଥିଲେ - "The mass movement is sanctioned in order to promote an Indian-wide effort on behalf of the allies cause, including the cause of Russia and China, whose danger was very great in August last, and from which in my opinion, they are by no means free even now !" ଗାନ୍ଧିଙ୍କ ସତ୍ୟାଗ୍ରହ ବା ଭାରତ ଛାଡ଼ ଗଣ ଆନ୍ଦୋଳନରେ ଯେତିକି ଦାମ୍ଭିକତାର ସହ ଇଂଲଣ୍ଡକୁ ଭାରତ ଛାଡ଼ିବାର ଡାକରା ଦିଆ ଯାଇଥିଲା, ସେତିକି ଆନ୍ତରିକତାର ସହିତ ମିତ୍ର ଶକ୍ତିଙ୍କ ବିଜୟ କାମନା କରାଯାଇଥିଲା। ଅପାତତଃ ଗାନ୍ଧିଙ୍କ ପରି ଦୋମୁହାଁ ନୀତି ଅବଲମ୍ବନ କରି କମ୍ୟୁନିଷ୍ଟମାନେ ଗୋଟିଏ ମୁହଁରେ ଦି'ପ୍ରକାର କଥା କହି ନଥିଲେ। ଦ୍ୱିତୀୟ ବିଶ୍ୱ ଯୁଦ୍ଧରେ ନାଜିବାଦ ଓ ଫାସିବାଦର ବିଲୟ ହେଲେ ବିଶ୍ୱରେ ଅନ୍ୟାନ୍ୟ ସାମ୍ରାଜ୍ୟବାଦୀ ଶକ୍ତି ଦୁର୍ବଳ ହୋଇ ପଡ଼ିବେ। ଫଳରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ପରବର୍ତ୍ତୀ ସମୟ ପରାଧୀନ ଦେଶଙ୍କର ଆତ୍ମମୁକ୍ତି ନିମନ୍ତେ କାଳ ଅନୁକୂଳ ହୋଇଯିବ ବୋଲି ଭାରତୀୟ କମ୍ୟୁନିଷ୍ଟମାନେ କହିଲେ। ଏପଟେ 'Quit India' ର ଆହ୍ୱାନ ଦେଇ ସେପଟେ ମିତ୍ର ଶକ୍ତିଙ୍କୁ ଖୋଲାଖୋଲି ସମର୍ଥନ କରି ଗାନ୍ଧି ଓ କଂଗ୍ରେସ ହୋଇଗଲେ 'ଦେଶ ଭକ୍ତ' ଓ ସଂଖ୍ୟାନ୍ୟୂନ କମ୍ୟୁନିଷ୍ଟମାନେ ହୋଇଗଲେ 'ଗୃହଶତ୍ରୁ ବିଭୀଷଣ ?' ଏହା କି ପ୍ରକାର ନ୍ୟାୟ ?

ଜାପାନୀମାନଙ୍କ ସାହାଯ୍ୟରେ ସୁଭାଷ ବୋଷଙ୍କ ନେତୃତ୍ୱରେ ଯଦି ଭାରତ ଦଖଲ କରିଯାଏ, ତେବେ ଜାପାନୀମାନଙ୍କ ସହିତ ଗାନ୍ଧି ଶାନ୍ତିପୂର୍ଣ୍ଣ କଥାବାର୍ତ୍ତା କରିବେ ବୋଲି ଆଶା ପୋଷଣ କରିଥିଲେ। ଗାନ୍ଧି ଲେଖିଥିଲେ - " If Indian were freed, her first step would probably be to negotiate with Japan." ମାନବିକତାର ମନ୍ତ୍ର ଅହରହ ଜପ କରୁଥିବା ଗାନ୍ଧି ଏ ବିଶ୍ୱ ଯୁଦ୍ଧରେ ଗଣତନ୍ତ୍ର ଓ ମାନବ ଜାତିର ମୁଖ୍ୟ ଶତ୍ରୁ ଯେ ନାଜୀବାଦ ଓ ଫାସିବାଦ, ତାହା ବିଶ୍ଳେଷଣ କରି ସଠିକ୍ ଚିହ୍ନାଇ ପାରିନଥିଲେ। ନାଜୀବାଦୀ ଇଟାଲୀ, ଫାସିବାଦୀ

ଜର୍ମାନୀ ଓ ମିଲିଟାରିଷ୍ଟ ଜାପାନ ସହିତ ସେ ମିତ୍ର ଶକ୍ତି ତଥା ଋଷିଆକୁ ସମାନ ଆସନରେ ବସାଇ ଦେଇଥିଲେ। ଗାନ୍ଧିଙ୍କର ଏ ବିଭ୍ରାନ୍ତିକୁ କମ୍ୟୁନିଷ୍ଟମାନେ 'ଥିଲାବାଲାର ବିଭ୍ରାନ୍ତି' ବୋଲି ଆଖ୍ୟାୟିତ କରିଥିଲେ ଓ ଦେଶ, କାଳ, ପାତ୍ରର ସଂକୀର୍ଣ୍ଣତାର ଉର୍ଦ୍ଧ୍ୱକୁ ଉଠି ସୋଭିଏତ୍ ଦେଶପ୍ରେମୀ ଯୁଦ୍ଧ ସପକ୍ଷରେ ଠିଆ ହୋଇଥିଲେ ଓ ତାକୁ ନୈତିକ ସମର୍ଥନ ଜ୍ଞାପନ କରିଥିଲେ।

ଅଗଷ୍ଟ ୯ ତାରିଖରେ ଡାକରା ଦେବାର ଠିକ୍ ପରେ ପରେ ଗାନ୍ଧି, ନେହେରୁ ଆଦି ବନ୍ଦୀ ହୋଇ କାରାଯାତ୍ରା କଲେ। ସମଗ୍ର ଦେଶର ଏକ ଲକ୍ଷରୁ ଉର୍ଦ୍ଧ୍ୱ କଂଗ୍ରେସ କର୍ମୀ ଗିରଫ ହେଲେ। ଦେଶପ୍ରେମ ଏ ଆନ୍ଦୋଳନର ଚାଳିକାଶକ୍ତି ରୂପେ କାର୍ଯ୍ୟ କରିନଥିଲା। ଏ ଆନ୍ଦୋଳନ ଥିଲା-ସ୍ୱତସ୍ଫୁର୍ତ୍ତ ଜନ ଜାଗରଣ। ଡାକରାର ଆଠ ଦିନ ପରେ ଦେଶରେ ବସ୍ତୁତଃ ବିକ୍ଷୋଭ୍, ପ୍ରତିବାଦ, ସଭା, ଶୋଭାଯାତ୍ରା ପାଇଁ ସାଧାରଣ କଂଗ୍ରେସ କର୍ମୀଟିଏ ବି ନଥିଲା। ଗାନ୍ଧି ଜନତାକୁ ନିଜେ ନିଜର ନେତୃତ୍ୱ ନେବା ପାଇଁ ଜେଲ୍‌ରେ ଥାଇ ପରାମର୍ଶ ଦେଲେ। ସେତିକିବେଳେ ଅଗଷ୍ଟ କ୍ରାନ୍ତିର ଭୂଲୁଣ୍ଠିତ ଝଣ୍ଡାକୁ ତଳୁ ସଗର୍ବେ ଉଠାଇ ନେଇଥିଲେ ଜେଲ୍ ବାହାରେ ରହିଯାଇଥିବା ସମାଜବାଦୀମାନେ, ଲୋହିଆ ପନ୍ଥୀମାନେ ଓ କମ୍ୟୁନିଷ୍ଟମାନେ। ୧୯୪୨ର ସେପ୍ଟେମ୍ବର ମାସ ବେଳକୁ ସାରା ଦେଶରେ 'Quit India' ଆନ୍ଦୋଳନ ଏମାନଙ୍କ ନେତୃତ୍ୱରେ ଜୋରଦାର ହୋଇ ଉଠିଥିଲା।

ଭାରତର ରାଜନ୍ୟମଣ୍ଡଳୀ ଦ୍ୱାରା ଶାସିତ କରଦ ରାଜ୍ୟରେ ସୋସାଲିଷ୍ଟ ଓ କମ୍ୟୁନିଷ୍ଟଙ୍କ ନେତୃତ୍ୱରେ ଗତ ଶତାବ୍ଦୀର ତୃତୀୟ ଦଶକରୁ ରାଜ ଅତ୍ୟାଚାର ଓ ଅନ୍ଧାରୀ ଗଡ଼ଜାତ ଶାସନ ବିରୁଦ୍ଧରେ ପ୍ରଜାମଣ୍ଡଳ ଆନ୍ଦୋଳନ ଗଢ଼ି ଉଠିଥାଏ। କଂଗ୍ରେସ ସୋସାଲିଷ୍ଟ ଫୋରମ୍ ଯଦିଓ ଏଥିରେ ସାମିଲ ଥାଏ, ତଥାପି ଏଥିରେ କମ୍ୟୁନିଷ୍ଟମାନଙ୍କ ଆପୋଷହୀନ ଲଢ଼େଇ ଉଭୟ ରାଜନ୍ୟ ମଣ୍ଡଳୀ ଓ ଇଂରେଜ ଶାସକଙ୍କୁ ବିଚଳିତ କରିଦେଇଥାଏ। ସୋଭିଏତ୍ ଜନଯୁଦ୍ଧକୁ ନୈତିକ ଭାବେ ସମର୍ଥନ କରୁଥିଲେ ବି କମ୍ୟୁନିଷ୍ଟମାନେ ପ୍ରଜା ମଣ୍ଡଳରେ 'Quit India' ର ଆହ୍ୱାନକୁ କାର୍ଯ୍ୟକାରୀ କରିବାକୁ ଅବହେଳା କରିନଥିଲେ। ଓଡ଼ିଶାର ସାମ୍ୟବାଦୀ ନେତୃତ୍ୱରେ ପରିଚାଳିତ ପ୍ରଜା ଆନ୍ଦୋଳନ, ନୀଳଗିରି, ଢେଙ୍କାନାଳ, ନୟାଗଡ଼, କେନ୍ଦୁଝର, ତାଳଚେର, ରଣପୁର ଆଦି ରାଜ୍ୟରେ ରାଜତନ୍ତ୍ର ଓ ବ୍ରିଟିଶତନ୍ତ୍ର ଉଚ୍ଛେଦ କରି 'ଚଷା ମୂଲିଆର ରାଜ' ପ୍ରତିଷ୍ଠା ପାଇଁ ଅନ୍ତିମ ସଂଗ୍ରାମ ରଚନା କରିଥିଲା। ଏହାର ବହୁ ଉଦାହରଣ ମଧ୍ୟରୁ ଗୋଟିଏ ମାତ୍ର ଉଲ୍ଲେଖ କରାଯାଉ। ଓଡ଼ିଶାର ତାଳଚେର ରାଜ୍ୟରେ "The situation became so grave that the British had to use aeroplanes and resort to machine gunning from air." (Glimpses of the freedom stuggle in Orissa, Govt. of Orissa Pub, PR Deptt. 1985)

ବ୍ରିଟିଶ୍ ସାମ୍ରାଜ୍ୟବାଦୀଙ୍କ ବିରୁଦ୍ଧରେ ଲଢ଼େଇ କ୍ଷେତ୍ରରେ କଂଗ୍ରେସର ପରିପୂରକତା କରିଥିଲେ କମ୍ୟୁନିଷ୍ଟମାନେ। ୧୯୪୦ ମସିହାରେ ଗ୍ରାମାଞ୍ଚଳରେ ଅଛବ ଉଦ୍ଧାରଣ କାର୍ଯ୍ୟରେ ଯେତେବେଳେ କଂଗ୍ରେସ ଲାଗିଥଲା, ଓଡ଼ିଶାରେ ସେହି ବର୍ଷ ଜୁନ ମାସରେ ବିଟ୍ରିଶ୍ ସରକାର

କେତେକ ଦେଶପ୍ରେମୀଙ୍କ ବିରୁଦ୍ଧରେ "କଟକ କମ୍ୟୁନିଷ୍ଟ ଷଡ଼ଯନ୍ତ୍ର ମାମଲା" ରୁଜୁ କରି ସେତେବେଳେ ଓଡ଼ିଶାରେ ଉଦ୍‌ଗତ ଅବସ୍ଥାରେ ଥିବା କ୍ଷୁଦ୍ରାଦପି କ୍ଷୁଦ୍ର କମ୍ୟୁନିଷ୍ଟ ପାର୍ଟିର କଣ୍ଠରୋଧ କରିବାକୁ ହୀନ ଉଦ୍ୟମ କରିଥିଲେ।

'Quit India' ସଂଗ୍ରାମ କାଳରେ କମ୍ୟୁନିଷ୍ଟମାନଙ୍କ ଦ୍ୱାରା ପରିଚାଳିତ ଶ୍ରମିକ ସଙ୍ଗଠନ ଚୁପ୍ ହୋଇ ମଧ ବସି ନଥିଲେ। ୧୯୪୨ରୁ ୧୯୪୫ ମସିହା ମଧରେ ୮୨୦ଟି ଶ୍ରମିକ ଧର୍ମଘଟ ସାରା ଭାରତରେ ସଂଗଠିତ ହୋଇଥିଲା। ଏଥିରେ AITUC ନେତୃତ୍ୱରେ ୭, ୪୭, ୫୩୦ ଜଣ ଶ୍ରମିକ ଯୋଗ ଦେଇଥିଲେ ଓ ୪୦, ୫୮, ୪୯୯ ଶ୍ରମ ଦିବସ ପରିମାପର କାର୍ଯ୍ୟ ବନ୍ଦ ହୋଇଥିଲା। ଡାକତାର ବିଭାଗର ଦେଢ଼ ଲକ୍ଷ କର୍ମଚାରୀ ସାରା ଦେଶରେ ୩ ସପ୍ତାହ ବ୍ୟାପି ଧର୍ମଘଟରେ ବ୍ରିଟିଶ୍ ଶାସନକୁ ଟଳମଳ କରି ଦେଇଥିଲା। କମ୍ୟୁନିଷ୍ଟମାନଙ୍କ ନେତୃତ୍ୱରେ ପରିଚାଳିତ ଅନ୍ୟାନ୍ୟ ଉଲ୍ଲେଖନୀୟ ସଂଗ୍ରାମ ଭିତରେ କଲିକତା ଟ୍ରାମ୍ ଶ୍ରମିକ ସଂଘର ଧର୍ମଘଟ, ବାରଙ୍ଗ କାଚ କାରଖାନାର ଶ୍ରମିକ ଧର୍ମଘଟ, ବ୍ରଜରାଜନଗର କାଗଜ କଳର ଧର୍ମଘଟ, କଲିକତା ପ୍ରେସ୍ କର୍ମଚାରୀ ଧର୍ମଘଟ, ମାଦ୍ରାଜର ମ୍ୟୁନିସିପାଲିଟି ଶ୍ରମିକ ଧର୍ମଘଟ ଏବଂ କାନପୁର, ଗ୍ୱାଲିୟର, ରତଲାମ, ଏବଂ ଉଜ୍ଜୟିନୀର ଶ୍ରମିକ ଧର୍ମଘଟ ଓ ଓଡ଼ିଶାର ପ୍ରେସ୍ ଓ ବିଡ଼ି ଶ୍ରମିକର ଧର୍ମଘଟ 'ଭାରତ ଛାଡ଼' ଆନ୍ଦୋଳନକୁ ଗଭୀର ଆଘାତକାରୀ ଶକ୍ତି ଦେଇଥିଲା। *(ତଥ୍ୟ - "ଭାରତରେ ଶ୍ରମିକ ଆନ୍ଦୋଳନ" ଦୁର୍ଗା ଚରଣ ମହାନ୍ତି-୧୯୯୨-ପୃ.୬୨)*

'ଭାରତ ଛାଡ଼' ସମୟରେ କଂଗ୍ରେସର ଆନ୍ଦୋଳନ, ଲୋକଙ୍କର ସ୍ୱତଃସ୍ଫୂର୍ତ୍ତତା (Sponteneity) ଉପରେ ନିର୍ଭରଶୀଳ ଥିଲା। ଲୋକଙ୍କୁ ସଂଗ୍ରାମରେ ସାମିଲ୍ କରାଇବାକୁ କଂଗ୍ରେସ ପାଖରେ ଏତେ ବେଶି କ୍ୟାଡ଼ର ନଥିଲେ, ଯାହା ଥିଲା ସମାଜବାଦୀ ଓ କମ୍ୟୁନିଷ୍ଟଙ୍କ କୃଷକ ସାମୁଖ୍ୟ, ମହିଳା ଓ ଛାତ୍ର ସାମୁଖ୍ୟ ତଥା ଶ୍ରମିକ ଗଣ ସାମୁଖ୍ୟ ପାଖରେ। 'ଭାରତ ଛାଡ଼' ଡାକରାକୁ ଉଭୟ ଗାନ୍ଧିବାଦୀ ଓ ସମାଜବାଦୀ କ୍ୟାଡରମାନେ ଦେଶର ଆଭ୍ୟନ୍ତରୀଣ ପୁରପଲ୍ଲୀକୁ ନେଇ ଯାଇଥିଲେ। 'Quit India' ଡାକରା ପରେ ପରେ ଦେଶରେ କେତେ ନବୀନ କମ୍ୟୁନିଷ୍ଟ ତରୁଣ ଜେଲ ଯାଇଥିଲେ, ତାହାର କିୟତ୍ ଅଂଶକୁ ଯଦି ଏକ ତାଲିକା ହିସାବରେ ଏଠାରେ ଦିଆଯାଏ, ତେବେ ଏ ଲେଖା ଦୀର୍ଘାକୃତି ଲଭିବ।

ତେଣୁ ସ୍ୱାଧୀନତା ଯୁଦ୍ଧର ଶେଷ ପର୍ଯ୍ୟାୟର ସଂଗ୍ରାମରେ କାର୍ଯ୍ୟତଃ ଭାଗ ନେଇଥିବା କମ୍ୟୁନିଷ୍ଟମାନଙ୍କୁ ମିଥ୍ୟାପବାଦ ଦ୍ୱାରା ଦେଶଦ୍ରୋହୀ ବୋଲି ପ୍ରଚାର କରିବା, ଏବଂର ପ୍ରଚାରକର ବିଦ୍ୱେଷୀ ମନର ପରିଚୟ ଦିଏ। ବିଗତ ଇତିହାସର ଏହା ସେମାନଙ୍କର ଅପବ୍ୟାଖ୍ୟା ମାତ୍ର, ଏହା ତାଙ୍କ ଦକ୍ଷିଣପନ୍ଥୀ ପ୍ରତିକ୍ରିୟାଶୀଳ ମନୋଭାବର ପରିଚାୟକ।

●

# ନିତ୍‌ଶେଙ୍କ ଚିନ୍ତନର ଧାରା ଓ ଧରଣୀ

ଦାର୍ଶନିକ ଫ୍ରେଡ୍ରେରିକ୍ ନିତ୍‌ଶେ (Friedrich Nietzsche) ୧୮୪୪ ମସିହା ଅକ୍ଟୋବର ୧୫ ତାରିଖରେ ପ୍ରୁସିୟାରେ ଜନ୍ମଗ୍ରହଣ କରିଥିଲେ। ତାଙ୍କ ବାପା ଜଣେ ପ୍ରସିଦ୍ଧ ଖ୍ରୀଷ୍ଟିୟାନ୍ ଧର୍ମଯାଜକ ଥିଲେ। ମାତା ଥିଲେ ଜଣେ ଧର୍ମପରାୟଣା ମହିଳା। ୧୮୬୯ ମସିହାରେ ଜଣେ ସ୍ନାତକ ହେବା ପୂର୍ବରୁ ଧର୍ମ ଶାସ୍ତ୍ରରେ ଧୂରୀଣ ଯୁବକ ନିତ୍‌ଶେଙ୍କୁ ବାସେଲ ବିଶ୍ୱବିଦ୍ୟାଳୟରେ ପ୍ରଫେସର ପଦରେ ନିଯୁକ୍ତି ମିଳିଥିଲା। ପ୍ରଫେସର ବୃତ୍ତି କାଳରେ ନିତ୍‌ଶେ ପ୍ରାୟତଃ ସବୁଦିନ ଶାରୀରିକ ଅସୁସ୍ଥତା ମଧ୍ୟରେ ଗତିକଲେ। ୧୮୭୯ ମସିହାରେ ସେ ଅଧ୍ୟାପନା କାର୍ଯ୍ୟରୁ ଅବ୍ୟାହତି ନେଲେ। ୟା' ଭିତରେ ପ୍ରେମିକ ହିସାବରେ ସେ ମଧ୍ୟ କେତେକ ନାରୀଙ୍କ ଦ୍ୱାରା ପ୍ରତାରିତ ହୋଇଥାନ୍ତି। ୧୯୮୦ ପରେ ପରେ ସେ ସୁଇଜରଲ୍ୟାଣ୍ଡ ଓ ଇଟାଲୀରେ ଉଦ୍‌ବାସ୍ତୁ ସମ ଘୁରିବୁଲନ୍ତି। ୧୮୮୮ରେ ସେ ପାଗଳ ହୋଇଯାନ୍ତି। ସେ ସେତେବେଳେ କବି ଓ ଦାର୍ଶନିକ ୱାଗ୍‌ନରଙ୍କ ସ୍ତାବକ ଥିଲେ, ପୁଣି ବେଳେବେଳେ ଘୋର ନିନ୍ଦୁକ ମଧ୍ୟ। ଆମ ରାଜ୍ୟରେ ଉନ୍ନବିଂଶ ଶତାବ୍ଦୀର ଶେଷାର୍ଦ୍ଧରେ ଏହି ସମୟସୀମା ମଧ୍ୟରେ କବିବର ରାଧାନାଥ, ଫକୀରମୋହନ ଓ ଗଙ୍ଗାଧର ଯେତେବେଳେ ବସି ଆମ ମାଟିରେ ରୋମାଣ୍ଟିକ୍ ସାହିତ୍ୟ ସାଧନାର ଚାରାଗଛ ରୋପଣ କରୁଥିଲେ, ସୁଦୂର ପ୍ରୁସିୟାରେ ଫେଡେରିକ ନିତ୍‌ଶେ ସେତେବେଳେ 'ଭଗବାନ ମୃତ' ବୋଲି ଘୋଷଣା କରି ରୋମାଣ୍ଟିକ୍ ଆନ୍ଦୋଳନ-ପ୍ରାସାଦର ପ୍ରତି ଇଟାକୁ ତାଡ଼ିବାରେ ଲାଗିଥିଲେ। ସେ ଏକା ସାଙ୍ଗରେ ୟୁରୋପୀୟ ଚିନ୍ତା ଜଗତରେ ନେତିବାଦ (nihilism)ର ଚାରାଗଛ ରୋପଣ କରିଥିଲେ ଏବଂ ବସ୍ତୁବାଦୀ ଚିନ୍ତନର ପୂର୍ବଦ୍ୱାର ଉନ୍ମୋଚନ କରିଥିଲେ। ନିତ୍‌ଶେ ଲେଖିଥିବା ପୁସ୍ତକ ମଧ୍ୟରେ Human, all too human (1878), The Dawn of Day (1881), The Joys of wishdom (1882) Thus Spake Zarathrustra (1883), Beyond Good and Evil (1886) ଓ The Geneology of Morals (1887) ପ୍ରମୁଖ ବିଶ୍ୱ ପ୍ରସିଦ୍ଧି ଲାଭ କରିଛି। ୧୯୦୦ ମସିହାରେ ବାତୁଳାବସ୍ଥାରେ ଏହି ଚିନ୍ତାନାୟକଙ୍କ ମୃତ୍ୟୁହୁଏ।

"ଦାସ ସ୍ପେକ୍ ଜରାଥ୍ରୁଷ୍ଟ" କାବ୍ୟଟି ଲେଖିବା ବେଳକୁ ନିତ୍‌ଶେଙ୍କୁ ୩୨ ବର୍ଷ ମାତ୍ର। କାବ୍ୟଟି କିନ୍ତୁ ପ୍ରକାଶିତ ହୁଏ ଟିକିଏ ଡ଼େରିରେ, ୧୮୮୮ ମସିହାରେ। ଏହି ତରୁଣ କବି ସେତେବେଳକୁ ପ୍ରେମ କରି ଦୁଇଜଣ ତରୁଣୀ (ଲାଓ ସାଲ୍‌ମନ୍ ଓ ପଲ୍‌ରି)ଙ୍କ ଦ୍ୱାରା ପ୍ରତ୍ୟାଖ୍ୟାତ ହୋଇ ସାରିଥାନ୍ତି। ଭଗ୍ନ ମନୋରଥ ଓ ବିଧ୍ୱସ୍ତ ବ୍ୟକ୍ତିତ୍ୱଟିଏ ବନି କବି ଘୁରି ବୁଲନ୍ତି ଆଲ୍‌ପସ୍ ପର୍ବତର ଗିରି ନିର୍ଝର, ଶୈଳ ନିବାସ ଓ ଗୁମ୍ଫା ଆବାସ ଗୁଡ଼ିକରେ। କେଉଁଠି ସେ ଦରଦୀ ବନ୍ଧୁଟିଏ ବା 'ଆହା' ପଦେ

କହିବାକୁ ପ୍ରାଣର ଦୋସରଟିଏ ପାଆନ୍ତି ନାହିଁ। ମଣିଷ ପ୍ରତି ତାଙ୍କର ମନରେ ଜନ୍ମେ ଘୋର ଅନାସ୍ଥା ଓ ପ୍ରବଳ ଘୃଣା। ସେ ଉଭୟ ନାରୀ ଓ ପୁରୁଷଙ୍କ ପ୍ରତି ବିଦ୍ୱେଷୀ ହୋଇଯାନ୍ତି। ଜରାଥୃଷ୍ଟ୍ରର ପ୍ରସ୍ତାବନାରେ-ତାଙ୍କର ଏଇ ମାନସିକତା ଉକ୍ତ ପୁସ୍ତକର ରଚନାର ମୂଳ ପ୍ରେରଣା ଓ ପ୍ରେକ୍ଷାପଟ୍ଟ ବୋଲି ସେ ସୂଚିତ କରନ୍ତି। ସେ ଲେଖନ୍ତି -

ସେ ସ୍ଥଳେ ବସିଲି ମୁହିଁ ଅପେକ୍ଷା ମୁଦ୍ରାରେ
ଅନିତ୍ୟେ ପ୍ରତୀକ୍ଷା ରଚି - ଶୂନ୍ୟେ, ଅଣାକାରେ।
ମନୋଭୂମେ ସଂଭୋଗିଲି ଭଲ ଓ ମନ୍ଦରେ
ଆଲୋକ ଓ ଅନ୍ଧାରର ଲୁଚକାଳି ଖେଳେ
କେତେବେଳେ ଦିବା କେବେ ମଧାହ୍ନର ଛାୟା
କେବେ ସମୟ ବିସ୍ତାରି ବିଶାଳ ତା' କାୟା
ପୁଣି ସମୟାନ୍ତରେ ଗମଇ-ଦେହ ଦେହାତୀତେ
ହଠାତ୍ ଦେଖିଲି ମୋତେ
ବନ୍ଧୁ ଜରାଥୃଷ୍ଟ୍ର ଆସି ଧରି କୋଳାଗ୍ରତେ
ଏକରୁ ଅନେକ ହେଲେ ମୋହର ଅଗ୍ରତେ।
(ମର୍ମାନୁବାଦ ପ୍ରାବନ୍ଧିକଙ୍କର)

ନିତ୍‌ଶେଙ୍କ ଜରାଥୃଷ୍ଟ ଚରିତ୍ର ଦର୍ଶନ ଇତିହାସରେ ଏକ ଅପୂର୍ବ ସୃଷ୍ଟି। ଏହା ଚିନ୍ତାବିଦ୍‌ଙ୍କ ନିମନ୍ତେ ଯେତିକି ଆଶା ସଂଚାରକ, ସେତିକି ହତାଶାବ୍ୟଞ୍ଜକ। ଶେଷ ଜୀବନରେ ଏକଦା ଆପାତତଃ ଭାରସାମ୍ୟ ମନରେ ଥିବାବେଳେ ସେ ଥରେ ଏହା ଏକ ନିଷ୍ପୃହ ତଥା ଅନନ୍ୟ ସୃଷ୍ଟି ବୋଲି ଦାବି କରିଥିଲେ। ବିଶ୍ୱର ସମସ୍ତ ଉନ୍ନତ ଓ ଉତ୍ତମ ଆତ୍ମାମାନଙ୍କର ସମାହାରରେ ଜରାଥୃଷ୍ଟ୍ରଙ୍କ ଆତ୍ମା ସୃଷ୍ଟ ବୋଲି ସେ କହିଥିଲେ।

ନିତ୍‌ଶେଙ୍କ ଜରାଥୃଷ୍ଟ୍ର ପାରସ୍ୟ ପ୍ରାଚୀନ ଧର୍ମଯାଜକ 'ଜରାଷ୍ଟୋରସ୍' ନୁହନ୍ତି। ନିଜର କାବ୍ୟରେ ଅନ୍ୟ ଏକ ଯୁଗାନ୍ତକାରୀ ନାୟକ ରୂପେ ଜରାଥୃଷ୍ଟ୍ରଙ୍କୁ ଗଢ଼ିବା ପାଇଁ ନିତ୍‌ଶେ କିନ୍ତୁ ସେଇ ପ୍ରାଚୀନ ଧର୍ମଯାଜକଙ୍କ ଚରିତ୍ରର ଅବତାରଣା କରିଛନ୍ତି। ଏକଦା ଜରାଥୃଷ୍ଟ୍ର ତାଙ୍କ ପାହାଡ଼ୀ ଗୁମ୍ଫା ଆବାସରୁ ବାହାରି ସମତଳ ଭୂମିକୁ ପ୍ରଚାର ଉଦ୍ଦେଶ୍ୟରେ ଆସନ୍ତି। ଗୋଟିଏ ପଡ଼ିଆରେ ଠିଆହୋଇ କେତେକ ଶିଷ୍ୟଙ୍କୁ ଉପଦେଶ ଦିଅନ୍ତି। ଅଳ୍ପ ଦୂରରେ ଲୋକଟିଏ ବାଉଁଶ୍‌ରାଣୀ ଖେଳ ଦେଖାଇବାକୁ ଆରମ୍ଭ କରେ ଓ ଦୁଇଟି ଖୁଣ୍ଟ ମଧ୍ୟରେ ଟଣା ଯାଇଥିବା ଦଉଡ଼ିରେ ଚାଲିବାକୁ ଆରମ୍ଭ କରେ। ଜରାଥୃଷ୍ଟ୍ରଙ୍କ ଶିଷ୍ୟଗଣ ଅନ୍ୟମନସ୍କ ହୁଅନ୍ତି ଓ ବାଉଶଁ ରାଣୀ ଖେଳ ଦେଖିବାକୁ ସମବେତ ଭାବେ ଚାଲି ଯାଆନ୍ତି। ଖେଳ ଦେଖାଉଥିବା ଲୋକଟି କିନ୍ତୁ ଉପରୁ ହଠାତ୍ ଖସି ପଡ଼େ ଓ ମୃତ୍ୟୁ ବରଣ କରେ। "ପରକୁ ଆନନ୍ଦ ଦାନ କରିବା ପାଇଁ ତୁ ଜୀବନକୁ ବାଜି ଲଗାଇଦେଲୁ ଓ ମଲୁ"- ଏହା କହି ଶବଟିକୁ କାନ୍ଧକୁ ଉଠାଇନେଲେ ଜରାଥୃଷ୍ଟ୍ର ଓ ତାକୁ କବର ଦେବାପାଇଁ ଚାଲିଲେ।

କିଛିବାଟ ଆଗେଇ ଭେଟିଲେ ଆଉ ଜଣେ ବୈରାଗୀଙ୍କୁ। ଭଗବାନଙ୍କ ଅସ୍ତିତ୍ୱ ବିଷୟରେ ଏହି ବୈରାଗୀ ତାଙ୍କ ସହ ବହୁ କଥା ଗପିଲେ। ପରକ୍ଷଣରେ ନିରୋଳାରେ ସେ ଜରାଥୃଷ୍ଟଙ୍କୁ ପଚାରିଲେ- "ଭଗବାନ କ'ଣ ସତରେ କେଉଁଠି ଅଛନ୍ତି ?" ମୃତ ଭଗବାନ ଯେ ତାଙ୍କ କାନ୍ଧରେ ବୁହାହୋଇ ଯାଉଛନ୍ତି, ଜରାଥୃଷ୍ଟଙ୍କଠାରୁ ଏଇ ଚମକପ୍ରଦ ଖବର ପାଇ ବୈରାଗୀର ମନ ଦ୍ୱନ୍ଦ୍ୱ ଓ ସନ୍ଦେହରେ ଉଦ୍‌ବେଳିତ ହୋଇଉଠେ। ଉନବିଂଶ ଶତକର ଶେଷାର୍ଦ୍ଧରେ ବାସ୍ତବରେ ମଣିଷ ମନରେ ବିଶ୍ୱାସ ଓ ଭଗବତ୍ ଆସ୍ଥାର ପାଚେରୀ ଦୋହଲି ଭୂମିସାତ୍ ହୋଇଯାଏ। ମଣିଷ ବସ୍ତୁମନସ୍କ ହୋଇ ଉଠିଥାଏ। ଜଗତର ସକଳ ଦେବାଦେବୀ ତା' ପାଇଁ ନିରର୍ଥକ ହୋଇଯାଆନ୍ତି।

ବହୁଦିନ ଈଶ୍ୱରଙ୍କ ଘଟିଅଛି ମୃତ୍ୟୁ
ସେ ମରଣେ ହୋଇଛି ତା'ଙ୍କ ଅଶେଷ ମଙ୍ଗଳ।
ମରିଥିଲେ ସନ୍ତାପରେ ଗୋଧୂଳିର ନିସ୍ତେଜ ଛାୟାରେ
ଅପବାଦ ରଟିଥାନ୍ତା ତାଙ୍କ ମହାନାମେ।
ଅଜ୍ଞାତେ ମରିବା ହେତୁ ରହିଲା ଯେ ଅଧିକାର
ମରଣରେ ଉପହାସ କରିବାକୁ କେବେ ବା ଉଦାମେ।
ଯେଉଁଦିନ ଭଗବାନ୍ କରି ମହାଭ୍ରମ
ଉଚ୍ଚାରିଲେ - ଏ ସୃଷ୍ଟିରେ ମୁହିଁ ସତ୍ୟ ଏକା
ମୁହିଁ ଏକ - ଅଦ୍ୱିତୀୟ - ସର୍ବବ୍ୟାପି ବ୍ରହ୍ମ
ସେଇଦିନ ସ୍ରଷ୍ଟାଙ୍କର ବିଲୟର ଘଣ୍ଟି
ଉଠିଥିଲା ବାଜି !
କେଡ଼େ ଗର୍ବ କଲି ବୋଲି ବିଧାତା ଯେ
ହେଲେ ମନେ ଗୁଣି।
ବିଧାତାଙ୍କୁ ପ୍ରଶ୍ନ କଲେ ସମବେତ ସ୍ୱରେ
ଦୁନିଆର ଯେତେଥିଲେ ଉତ୍ତମ ପ୍ରବୃତ୍ତି ଆଉ
ଦେବଭାବମାନ
ତୁମେ ନଥିଲେ ହେଁ ପ୍ରଭୁ
ରହିଥିବ ଏ ଜଗତେ ଐଶ୍ୱରୀୟ ଗୁଣ
ଯାବତ ଚନ୍ଦ୍ରାର୍କେ ?
ଏ ପ୍ରଶ୍ନ ଶ୍ରବଣେ ପ୍ରଭୁ ହେଲେ ବୁଦ୍ଧିଭ୍ରଷ୍ଟ
ଏହାକୁ ବଖାନ କଲେ ଶୁଣ ଜରାଥୃଷ୍ଟ।

ଅବତାରୀ ପୁରୁଷ ଜରାଥୃଷ୍ଟଙ୍କୁ ଏକ ଚରିତ୍ର କରି ତାଙ୍କରି କଣ୍ଠରେ ଈଶ୍ୱରଙ୍କର ମୃତ୍ୟୁ ଘୋଷଣା କରାଇବା ସେ କାଳର ୟୁରୋପରେ କମ୍ ସାହସିକତା କଥା ନଥିଲା। ଭଗବାନ୍ ଥିଲେ

କେତେ, ନଥିଲେ କେତେ- ତାଙ୍କ ପାଇଁ କ'ଣ ପ୍ରକୃତିର ଏ ଦାବ୍ୟା ପୃଥିବୀ ବ୍ୟାପୀ ସୃଷ୍ଟି ଅଟକି ଯିବ, ନା ଅଚଳ ହୋଇଯିବ ! ଭଗବାନ ଯଦି ଥାଆନ୍ତେ ତେବେ ଏ ବିଶ୍ୱରେ ମଙ୍ଗଳ ସଦା ବିରାଜମାନ କରୁଥାନ୍ତା ! ଧର୍ମ ନାମରେ ହଠକାରିତା କରୁଥିବା ଲୋକଙ୍କୁ କାହିଁକି ସେ ଦଣ୍ଡ ବିଧାନ କରୁନାହାନ୍ତି ? ତାଙ୍କ ଅନୁପସ୍ଥିତରେ ଏ ବ୍ୟବସ୍ଥା ଚାଲିଛି ଓ ଚାଲିବ - କାରଣ ଏହା ଏକ ବସ୍ତୁତାନ୍ତ୍ରିକ ବ୍ୟବସ୍ଥା। ଏହା ସୃଷ୍ଟିର ଆଦ୍ୟରୁ ତାଙ୍କଠାରୁ ସ୍ୱାଧୀନ। ତେଣୁ କାଳ୍ପନିକ ଭଗବାନ୍‌ଙ୍କ ଆଗରେ ଆଣ୍ଠୁମାଡ଼ି ହାମୁଡ଼ି ନପଡ଼ି, ଭାଇମାନେ, ତୁମର ଆଦ୍ୟା ଜନନୀ ଏ ବସୁନ୍ଧରା ପ୍ରତି ଆସ୍ଥାବାନ୍ ହୁଅ - ମାଟି ଉପରେ ବିଶ୍ୱାସ ସ୍ଥାପନ କର। କାଳେ କାଳେ ଏ ମାଟି ନୂତନ ପ୍ରତିଭାଙ୍କୁ ଜନ୍ମଦିଏ - ଏଇଠି ତୋର ଜନ୍ମ, ଏହାରି କୋଳରେ ତୋର ଶେଷ ବିଶ୍ରାମ। କାବ୍ୟର ଶୀର୍ଷବିନ୍ଦୁ ଜରାଥୃଷ୍ଟ୍ରଙ୍କ ଏ ଆହ୍ୱାନରେ ଆକାଶ ପାତାଳ ଅନୁରଣିତ ହୋଇଉଠେ।

ଯେଉଁମାନେ ଏକ କାଳ୍ପନିକ ଭଗବାନଙ୍କ ସ୍ଥିତି ବିଷୟରେ ପ୍ରତି ନିୟତ ପ୍ରଚାର କରୁଛନ୍ତି ସେମାନେ ଥଣ୍ଡା ଠକ-ନିଜକୁ ଠକାଇବା ସଙ୍ଗେ ସଙ୍ଗେ ସେ ସମଗ୍ର ମାନବ ସମାଜକୁ ଠକାଉଛନ୍ତି। ସେମାନେ ଧର୍ମକୁ ଜୀବନ ବୋଲି କହି ଆମକୁ ମୃତ୍ୟୁର ନିଷ୍କେତକ ଆଘ୍ରାଣ କରିବାକୁ ବାଧ କରୁଛନ୍ତି। ଏହିପରି କିଛି ପଥଭ୍ରଷ୍ଟ ଲୋକ ଶେଷତଃ ଜରାଥୃଷ୍ଟ୍ରଙ୍କ ଗୁମ୍ଫା ପାଖକୁ ଆସି ତାଙ୍କୁ ଏକ ନୂତନ ସଂଦେଶ ପ୍ରଚାର କରିବାକୁ ଅନୁରୋଧ କରନ୍ତି। ସେ ଲୋକମାନଙ୍କଠାରୁ ଅଳ୍ପ ଦୂରରେ ବସିଥିବା ଗୋଟାଏ ବୁଢ଼ା ହନୁକୁ ପୂଜା କରନ୍ତି ଓ ତାର ବନ୍ଦନା କରନ୍ତି। ମାଙ୍କଡ଼ଠାରୁ ଯେ ଏ ପୃଥିବୀର ମାନବ ସମାଜ ସୃଷ୍ଟି ଅପାତତଃ ନବ ଗଠିତ ଶିଷ୍ୟମଣ୍ଡଳୀ ବୁଝିଲେ। ଏକ ବିଶ୍ଳେଷଣାତ୍ମକ ବର୍ଣ୍ଣନାରେ ବିଶ୍ୱ ସ୍ରଷ୍ଟାଙ୍କ ସ୍ୱରୂପ ଫୁଟିଉଠେ ଏହିପରି-

ଯିଏ ସୃଜିଛି ଜଗତରେ ଭଲ ମନ୍ଦ ସବୁ
ସିଏ ନିଷ୍କେ ତାର ବିନାଶକ
ମୂଲ୍ୟବୋଧ ଗଢ଼ି ଯିଏ ଭାଙ୍ଗିପାରେ ହେଲେ
ସିଏ ସିନା ସୃଷ୍ଟି ସଂସ୍ଥାପକ!
ଯେଉଁଠି ଆଲୋକ ଥାଏ ସେଇଠାରେ ଅନ୍ଧାରର ଉପସ୍ଥିତି
ଦିନର ଆରମ୍ଭ ବେଳେ
ରାତ୍ରି ଶେଷ ହେବାର ଆରମ୍ଭ।
ଭଲ ମଧ୍ୟେ ମନ୍ଦ ଥାଏ
ଅଶୁଭରେ ଶୁଭ।
ଶୁଣ ହେ ସୁଜନେ, କୁହ ତୁମେ ସଦା
ତିକ୍ତ ଅପ୍ରିୟ ଯେତେ ସତ କଥା
ସତ୍ୟକୁ ଚପାଇ ଦେଲେ
ବିଷବୃକ୍ଷ ହୁଏ ସେ ସର୍ବଥା ।

ପ୍ରତିବାଦ ଲୋଡ଼ା ନାହିଁ
ନୀରବରେ ମଥାପାତି ରହନାରେ ବସି
ନୀରବତା ରୁଗ୍‌ଣ ସେଠି
ପ୍ରତିବାଦେ ହୁଅ ଭାଇ, ସର୍ବଥା ଉତ୍ତାଳ।

ଆକାଶଟା ଖସିପଡୁ
ସଂସାରଟା ଭାଙ୍ଗିଯାଉ
ପଛେ ତୁମ ସତ୍ୟାଳାପ ଯୋଗୁଁ।
ଅନେକ ସଂସାର ପୁଣି ଗଜୁରିବେ
ଗଢ଼ାହେବ ଅନେକ କୁଟୀର
ସମୟ ଡେଣାରେ ପର ବେଗି ବେଗି ଲାଗୁ।
ସତ୍ୟବାକ୍ ହେବା ପାଇଁ ଲାଗେନା ପଇସା
ହୁଏନାରେ କଷ୍ଟ
ଏହାକୁ ବୟାନ କଲେ ଶୁଣ ଜରାଥୃଷ୍ଟ୍ର।

ତଥାପି ନବଗଠିତ ଶିଷ୍ୟମଣ୍ଡଳୀ ନୂଆ ଏକ ଈଶ୍ୱର, ନୂଆ ଏକ ସ୍ରଷ୍ଟାର ଦର୍ଶନପାଇଁ ବ୍ୟାକୁଳ ହେଲେ। ଜରାଥୃଷ୍ଟ୍ର ତାଙ୍କୁ ଠିକ୍ ପୂଜକ ନୁହଁ ବୋଲି କହି ଗାଳି ଫଜିତ୍ କଲେ। ଭଗବାନ ମୃତ ବୋଲି ଯେଉଁମାନେ ବିଶ୍ୱାସ କରନ୍ତି ସେମାନେ ହିଁ ପ୍ରକୃତ ଭକ୍ତ। ସେମାନେ ଏ ମାଟିର ଭକ୍ତ - ମାନବିକତାର ପୁରୋଧା। ନିରୀଶ୍ୱରବାଦ ହିଁ ଏ ଯୁଗର ଶ୍ରେଷ୍ଠଭକ୍ତ। ଶିଷ୍ୟମାନେ ଅତି କନ୍ଦାକଟା କରିବାରୁ ସେ ନୂଆ ଏକ ଭଗବାନର ନାମ ଓ ତାଙ୍କ ସ୍ୱରୂପ ଘୋଷଣା କଲେ -

ଭଗବାନ ସିନା ମରି ଯାଇଛନ୍ତି.
ବଞ୍ଚିଛନ୍ତି ଆଉ ଜଣେ ଈଶ
ଅତି ବଡ଼ ମାନବର ବେଶେ।
ଶୁଣ ଆହେ ଶିଷ୍ୟଗଣ
ସତ୍ୟ ଏକା ମଣିଷ ଭିତରେ ମଣିଷପଣିଆ।
ସତ୍ୟ ହିଁ ଈଶ୍ୱର।
ସୀମା ସରହଦ ଡେଇଁ
ଯିଏ ଯିବ ସିଏ ଅତି ମାନବର ଆସନେ ବସିବ।
ଏବର ମହାନ୍ ମାନବ ଗୋଟିଏ ଉଡ଼ା ପୋଲ ଛାର
ନୁହେଁ ତ ଚରମ ଲକ୍ଷ୍ୟ
ମଣିଷ ଭିତରେ ଯାହା ମୁଁ କରଇ ପ୍ରତ୍ୟକ୍ଷ
ଚାଲିଛି ବିନାଶ ଚାଲିଛି ଯାତ୍ରା - ପରିବର୍ତ୍ତନର

ଯାର ଭଗୀରଥେ ତେଣୁ ଭଲପାଏ ମୁହିଁ।
କିନ୍ତୁ ଏହାର ମାତ୍ରା
ଅତି ସାଧାରଣ। ଆର କୂଳେ ତରୀ
ଲଗାଇବା କାମ ପରି।
ଗ୍ରହ ଗ୍ରହାନ୍ତର କ୍ଷେପିଯିବା ପାଇଁ
ଆଶାୟୀ ଯେ ନର
ବରଷ ବରଷ ଧରି
ସାଧନା ଭିତରେ ସମାଧି ଲଭନ୍ତି
ଭଲପାଏ ସେଇ ନରେ।
ତଥାପି ତରୀ କି ତାଙ୍କ ସାଧନାରେ
ଯାଇ ପାରେ ଆରପାରେ ?

ଅତିମାନବର ବାସ ଉପଯୋଗୀ
କରିବାକୁ ଏଇ ବିଶ୍ୱ
ଯିଏ ପ୍ରାଣ ଦିଏ ହସି ହସି ହେଲେ
ବନିପାରେ ଲବେ ନିଃସ୍ୱ
ସେମାନେ ମୋହର ଅତି ଆପଣାର
ପ୍ରାଣ ସହ ବରାବର।
ସମୟ ଆସିଛି ମଣିଷ ବାଛିବ
ନିଜର ଚରମ ଲକ୍ଷ୍ୟ
ସମୟ ଆସିଛି ଅତି ମାନବର
ଉପାସନା ପାଇଁ ପତାଇ ଦେବାକୁ ବକ୍ଷ

ଖ୍ରୀଷ୍ଟଧର୍ମର ବଡ଼ କଥା - 'ପଡ଼ୋଶୀକୁ ପ୍ରେମ କର'। କିନ୍ତୁ ଦରିଦ୍ର ସାହାହରାଙ୍କଠାରେ ଠିଆ ହେବା ପଡ଼ୋଶୀଠାରୁ କେତେ ବଡ଼। ଜରାଥ୍ରଷ୍ଟ୍ରଙ୍କ ମତରେ-

ହୀନଦରିଦ୍ର ସାହାହରା ପାଶେ
ଠିଆ ହେବା ବଡ଼ କଥା
ପଡ଼ୋଶୀକୁ ପ୍ରେମ ଅତି ଛୋଟ କଥା
ମଣିଷଟା କେତେ ମୂଢ଼ ?
ମଣିଷ ମଣିଷ ମଣିଷ ସବୁଠି
ବିଶ୍ୱ ତ ମାନବମୟ !
ମାନବ ନିଜେଇ ରାଷ୍ଟ୍ର

ଗୀତରେ ଗୀତରେ ଗାଇଗଲେ ଏହା
ଭାବେ ଭୋଳା ଜରାଥ୍ରୁଷ୍ଟ।

ସମସ୍ତ ବିମୁଖତା ସତ୍ତ୍ୱେ ନିତ୍‌ଶେ ଥିଲେ ମାନବବାଦୀ - ଏହା ହିଁ ମାନବ ସମାଜ ପକ୍ଷେ ଏକମାତ୍ର ସାନ୍ତ୍ୱନା।

ସମାଜରେ ତଥା ରାଷ୍ଟ୍ରରେ ସମ୍ଭ୍ରାନ୍ତ ବଂଶଜମାନେ ନେତୃତ୍ୱ ଗ୍ରହଣ କରିବା ଶ୍ରେୟ ବୋଲି ଦାର୍ଶନିକ ନିତ୍‌ଶେ ଦୃଢ଼ଭାବେ ପ୍ରଚାର କରିଥିଲେ। ଖ୍ରୀଷ୍ଟଧର୍ମ ପ୍ରଚାର ପୂର୍ବେ ବିଶ୍ୱରେ ସର୍ବତ୍ର ଏକ ପୁରୁଣାକାଳିଆ ସାମ୍ରାଜ୍ୟ ଶାସନ ଚାଲୁଥିଲା ବୋଲି ସେ ମତ ଦେଇଥିଲେ। ଗଣତନ୍ତ୍ର ହେଉଛି ନିକମା ଓ ଅଥର୍ବଙ୍କ ଶାସନ। ପୌରୁଷ ଥିବା ବ୍ୟକ୍ତି ଏ ଶାସନ ବ୍ୟବସ୍ଥାରେ ଅବହେଳିତ ହୋଇ ରହିଯାଏ ବା ଦେହଛପା ଦେଇ ରହିଥାଏ। ଏ ପ୍ରକାର ବାରଭାଯ୍ଯା ଆଖଡ଼ା ବିଶ୍ୱରୁ ଅବସାନ ହେଲେ ପୁଣି ଶାସନ ଦାୟିତ୍ୱ ପଡ଼ିପାରେ ସମ୍ଭ୍ରାନ୍ତ ବଂଶଜମାନଙ୍କ ହାତରେ।

ସମ୍ଭ୍ରାନ୍ତ ପଣିଆର ଅର୍ଥ କେବଳ ଉଚ୍ଚ କୁଳଗତ ଜନ୍ମ ଭିତରେ ସୀମିତ ଥିଲା। ସମ୍ଭ୍ରାନ୍ତର ଖାଦ୍ୟପେୟ, ଆଚାର ବିଚାର, ଚାଲିଚଲଣ ସବୁ ଉନ୍ନତ ମାନର ହେବା ଦରକାର। ଶାସନ କରିବା ନିମନ୍ତେ ତାଙ୍କର ଜନ୍ମ। ଗଣତନ୍ତ୍ରର ତାମ୍‌ସା ଭିତରେ ସେମାନଙ୍କ ପ୍ରତିଭାର କେବଳ ଅବମାନନା ହୁଏ। ସେମାନେ ଯଥାର୍ଥରେ ସୁପରମ୍ୟାନ୍ (Superman)ଶ୍ରେଣୀ ଗଠନ କରିଥାନ୍ତି। ଯେଉଁ ଜାତିର ସମ୍ଭ୍ରାନ୍ତ ମଣିଷ ଅଖୋଜା, ଅଲୋଡ଼ା, ନିରୁତ୍ସାହିତ ଓ ଅବହେଳିତ ହୋଇ ରହିଥାଏ, ସେ ଜାତି ବଡ଼ ହେବ ଅବା କିପରି ? ଗଣତନ୍ତ୍ରର ଅର୍ଥ ହେଲା - worship of mediocrity and hatred of excellence. It means the impossibility of greatman. How could greatmen submit to the indignities and indecencies of an election?"

ଗଣତନ୍ତ୍ରରେ ନାରୀର ସ୍ୱାଧୀନତା ଓ ପୁରୁଷ ସହ ସମକକ୍ଷତା ହାସଲ କଥାଟି ନିତ୍‌ଶେଙ୍କୁ ବହୁତ ବିବ୍ରତ କରି ଦେଇଛି। ସ୍ତ୍ରୀ ଲୋକ ପୁରୁଷର ଚିତ୍ତ ବିନୋଦନ ପାଇଁ ଏକ ଖେଳନା ରୂପରେ ବିଧାତା ସୃଷ୍ଟି କରିଛି। ପୁରୁଷ ପାଇଁ ନାରୀ ହେଉଛି ଏକ ମାଧ୍ୟମ-ଯାହା ସାହାଯ୍ୟରେ ସମାଜ ବୀର ପୁରୁଷ ଲାଭ କରିପାରିବ। ବୀର ପ୍ରସବିନୀ ହେବା ନାରୀର ତପସ୍ୟା। ପୁରୁଷର ସକଳ ତପସ୍ୟା ଯୋଦ୍ଧା ହେବା। ନାରୀ ତପସ୍ୟା କରେ ଯୋଦ୍ଧାର ମାତା ହେବା ପାଇଁ। "One cannot be gentle enough for women." ବୋଲି ସେ ଜରାଥ୍ରୁଷ୍ଟଙ୍କ ମୁହଁରେ କୁହାଇଛନ୍ତି।

ନାରୀ ପ୍ରାଧାନ୍ୟବାଦ ହେଉଛି ଗଣତନ୍ତ୍ର ଓ ସମାଜବାଦର ଜନନୀ। ନିତ୍‌ଶେଙ୍କ ମତରେ ମଣିଷ କସ୍ମିନ୍ କାଳରେ ସମାନତା ହାସଲ କରିପାରି ନାହିଁ। ପ୍ରକୃତି ସାମ୍ୟ ନୀତିକୁ କଦାପି ପ୍ରଶ୍ରୟ ଦେଇ ନାହିଁ କି ପୃଷ୍ଠପୋଷକତା କରି ନାହିଁ। ସେଇ ଦୃଷ୍ଟିରୁ ସମାଜବାଦ ହେଉଛି ଏଣ୍ଟି-ବାୟୋଲୋଜିକାଲ୍।" ଜଗତର ସୃଷ୍ଟି ଓ ଆତଯାତ ମଧ୍ୟରେ ନିକୃଷ୍ଟକୁ ବିଲୋପ କରି ଉତ୍କୃଷ୍ଟ ସୃଷ୍ଟି ପ୍ରକ୍ରିୟାର ସମୃଦ୍ଧିରେ ଲଗାଇଥାଏ। ପ୍ରତିଯୋଗିତାରେ ନିକୃଷ୍ଟ ବଳୀ ପଡ଼େ। ସେମାନଙ୍କୁ ଟଳୁ

ଉଠାଇ ତୋଳି ଧରିବା ସମାଜବାଦୀଙ୍କର କାମ। ଏହା କଲାବେଳେ ସେମାନେ ସ୍ୱାଭାବିକ ଭାବେ ପ୍ରକୃତି ବିରୁଦ୍ଧରେ ଯାଉଛନ୍ତି। ଦୁର୍ବଳକୁ ସବଳ ବିନଷ୍ଟ କରିବା ପ୍ରକୃତିର ଏକ ପୁରାତନ ବ୍ୟବସ୍ଥା - ଏ ବ୍ୟବସ୍ଥାକୁ ସମାଜବାଦୀଗଣ ସମ୍ମାନ ଦେଇ ଶିଖି ନାହାନ୍ତି।

ସେମିତି ବିଚାର କଲେ ସମାଜରେ ଧନ ସମ୍ପଦର ଅଧିକାରୀ ହେବାର ଅଧିକାର ଏକମାତ୍ର ବୁଦ୍ଧିମାନ୍ ଓ ଧୀମାନ୍‌ଙ୍କର ଅଛି। ସେମାନେ ସ୍ୱବିବେକ ବଳରେ ଅର୍ଥର ସଦୁପଯୋଗ କରିବେ ଓ ସମାଜର ଏଥିରେ ପ୍ରଭୂତ ବିକାଶ ସାଧିତ ହୋଇପାରିବ। ଧନୀ ଲୋକର ଧନ ସଞ୍ଚୟର ନୈତିକତା ଚୋରର ମାନସିକତା ବ୍ୟତୀତ କିଛି ନୁହେଁ। ଧନ ହେଉଛି ଧନୀର ଶ୍ରେଷ୍ଠ ସମ୍ପଦ end in itself. ସମସ୍ତେ ଇଚ୍ଛାକଲେ ଧନୀ ହୋଇପାରିବେ ବୋଲି କହି ନୈତିକତାର ନୈରାଜ୍ୟକୁ ଆବାହନ କରୁଛନ୍ତି। କିନ୍ତୁ ଅଭିଜାତମାନେ ଏ କଥାରେ ବିଶ୍ୱାସ କରନ୍ତି ନାହିଁ। ଅଭିଜାତଙ୍କ ହାତରେ ଅର୍ଥ ପଡ଼ିଲେ ତାହା କଦାଚ ଅନର୍ଥ ସୃଷ୍ଟି କରିବ ନାହିଁ। ଧନ ତାଙ୍କ ହାତରେ ନିମିତ୍ତ ପରି କାର୍ଯ୍ୟ କରିବ। ତାହା ଭଲ ସମାଜ ଗଢ଼ିବାରେ ନିଯୁକ୍ତ ହେବ।

ଅଭିଜାତଙ୍କ ପରେ ଆଉ କାହାକୁ ଯଦି ନିତ୍‌ଶେ ପସନ୍ଦ କରନ୍ତି - ସେ ହେଉଛି 'ସୈନ୍ୟ'। ଗୌରବର ନିଶ୍ଚେତକ ସୈନିକମାନଙ୍କ ମାନସିକତାରେ ଏତେ କାମ କରେ ଯେ, ସେମାନେ ଯୁଦ୍ଧ ଭୂମିରେ ପ୍ରାଣ ଦେବାକୁ ପସନ୍ଦ କରନ୍ତି। ସୁଧଖୋର ଲାଭ ଖୋର ବେପାରୀ ଓ ଚୋରାକାରବାରୀଙ୍କଠାରୁ ଏହି ବୀରଗଣ ସତରେ କେତେ ମହାନ୍! ନେପୋଲିୟନ୍ ଜଣେ ହନ୍ତାରକ ନଥିଲେ। ସେ ଥିଲେ ବୀର। ତାଙ୍କ କାଳର ଫ୍ରାନ୍‌ସର ଗଣତନ୍ତ୍ରୀ, ବେପାରୀ ଓ ଫିଲିଷ୍ଟିନ୍‌ମାନଙ୍କ ପ୍ରତି ତାଙ୍କ ବୀରତ୍ୱ ଥିଲା ଏକ ଝଡ଼ ପରି। ଗଣତାନ୍ତ୍ରିକ ମାଇଚିଆପଣର ପ୍ରତିଷେଧକ ହେଉଛି ଯୁଦ୍ଧ ଓ ପୌରୁଷ। ମଣିଷ ମନରେ ଯୁଦ୍ଧ ତାହାର ନିଦ୍ରିତ ପ୍ରବୃତ୍ତିକୁ ଜାଗରିତ କରାଏ ଓ ସେ ଗଣତାନ୍ତ୍ରିକ ମାଇଚିଆପଣ ଆବୋରି ବସେନା। ଗଣତନ୍ତ୍ର ହେଉଛି ବ୍ରିଟିଶ ଦେଶରାତି ଦୋକାନଦାରଙ୍କ ଗୁଲିଖଟି ଗପ। ସେଥିରେ ନାଁ ଅଛି ପ୍ରବୃତ୍ତିର ଖେଳ, ନା ଅଛି ପୌରୁଷର ଦିଗ୍‌ବିଜୟ।

ଗୋଟିଏ ଆଦର୍ଶ ସମାଜର ଚିତ୍ର ଆଙ୍କିବାକୁ ଯାଇ ନିତ୍‌ଶେ ସେଥିରେ ତିନୋଟି ଶ୍ରେଣୀ ଥିବାର ବର୍ଣ୍ଣନା କରନ୍ତି। ଉତ୍ପାଦନକାରୀ, ଅଫିସର୍ ଓ ଶାସକ। ଚାଷୀ, ବେପାରୀ ଇତ୍ୟାଦି ଉତ୍ପାଦନକାରୀ। ସୈନ୍ୟ ସାମନ୍ତଗଣ ଅଫିସର ଓ ଅଭିଜାତଗଣ ହେଲେ ଶାସକ। ଦେଶରେ ଆଇନ୍ ଶୃଙ୍ଖଳା ରକ୍ଷା କରିବା, କର ଆଦାୟ କରିବା ପ୍ରକୃତରେ ଦେହ ମେହନତର କଥା- ତେଣୁ ସୈନ୍ୟ ସାମନ୍ତ ସେ କାର୍ଯ୍ୟ ବେଶ୍ କରି ପାରିବେ। ଅଭିଜାତଗଣ ପଲିସି ସ୍ଥିର କରିବେ, ଅର୍ଥର ଆତଯାତ ନିୟନ୍ତ୍ରଣ କରିବେ ଓ ଦେଶକୁ ଦିଗ୍‌ଦର୍ଶନ ଦେବେ। "They will be men of refinement as well as of courage and strength, scholars and general in one." (The story of Philosophy-P.437) ଦାର୍ଶନିକ ପ୍ଲାଟୋଙ୍କ ଦାର୍ଶନିକ ସମ୍ରାଟ (Philosopher King) କଥା ନିତ୍‌ଶସଙ୍କ ଅଭିଜାତ ପ୍ରସଙ୍ଗ ଆମକୁ ମନେ ପକେଇ ଦିଏ। ପ୍ଲାଟୋଙ୍କ

ଦାର୍ଶନିକ ସମ୍ରାଟ ନିମନ୍ତେ ୩୬ ବର୍ଷର ପାଠ୍ୟ ଖସଡ଼ା ମଧ୍ୟ ପ୍ରସ୍ତୁତ ହୋଇଥିଲା । ନିତ୍‌ଶେ କେଉଁଠି କାହିଁ ଏପରି ପାଠ୍ୟ ଖସଡ଼ା ଓ ଜୀବନ ଗଠନର କର୍ମସୂଚୀ ବିଷୟରେ ଅବତାରଣା କରି ନାହାନ୍ତି । ଦୁଇ ଜଣଙ୍କ ମଧ୍ୟରେ ଏତିକି ହିଁ ପାର୍ଥକ୍ୟ ।

ଅଭିଜାତ ଶ୍ରେଣୀର ଶାସନ ମୁଖ୍ୟତଃ ବଂଶଗତ ଶାସନ । ବଂଶ ବୁଡ଼ିଯିବା ବେଳେ ବା ଘୋଡ଼ାମୁହାଁ ପୁତ୍ର ଅଭିଜାତ ଶ୍ରେଣୀରେ ଜାତ ହେବା ପରିସ୍ଥିତିରେ ନୂତନ ରକ୍ତର ସନ୍ଧାନ କରି ଅଧ୍ୟବସାୟୀ, ଦିବ୍ୟଦର୍ଶୀ ସୈନ୍ୟ ଶ୍ରେଣୀରୁ ଅଭିଜାତ ଶ୍ରେଣୀ ପାଇଁ ସଦସ୍ୟ ସଂଗ୍ରହ କରାଯାଇପାରେ । କିନ୍ତୁ ନୂତନ ରକ୍ତ ଆମଦାନୀ ବେଳେ ଅଭିଜାତ ଶ୍ରେଣୀର ଉନ୍ନତ ମାନ ଓ ଉଚ୍ଚ କୋଟୀର ଚିନ୍ତନ ଯେମିତି ଖସି ନ ପଡ଼େ, ଏହା ସମାଜପତିମାନଙ୍କୁ ଦେଖିବାକୁ ପଡ଼େ । ୟୁରୋପରେ ଅଭିଜାତ ଶ୍ରେଣୀ ସମୃଦ୍ଧ ହୋଇ ପାରିଲେ ସମଗ୍ର ୟୁରୋପ ଗୋଟିଏ ଦେଶ ପରି ଶକ୍ତିଶାଳୀ ହେବ ଓ କାର୍ଯ୍ୟକ୍ଷମ ହୋଇପାରିବ । ସେତେଦିନ ଯାଏ ୟୁରୋପ ଆଗରେ ଦୋକାନଦାର୍‌ମାନେ ଜାତୀୟତାବାଦର ମୁଖା ପିନ୍ଧି ଭେଳିକି ନାଚ କରୁଥିବେ ।

ଆଜିକା ଯୁଗରେ ନିତ୍‌ଶେଙ୍କୁ ଖୁଣ୍ଟିନାଣ୍ଟି ଆଲୋଚନା କରିବାର କିଛି ପ୍ରାସଙ୍ଗିକତା ଅଛି କି ? Are they in any degree useful? ବୋଲି ପ୍ରସିଦ୍ଧ Western Philosophical Thought ପୁସ୍ତକରେ ଦାର୍ଶନିକ ବ୍ରଟରାଣ୍ଡ ରସେଲ ନିତ୍‌ଶେଙ୍କୁ ଆଲୋଚନା କରିବା ବେଳେ ପ୍ରଶ୍ନ ପଚାରିଅଛନ୍ତି । ଅନ୍ୟ ଏକ ପ୍ରସଙ୍ଗର ବାଖ୍ୟା କଲାବେଳେ ସେ ନିଜେ ହିଁ ଏ ପ୍ରଶ୍ନର ସମାଧାନ କରିଛନ୍ତି । ସେ ଲେଖିଛନ୍ତି – "It must be conceded that his prophecies as the future have so far proved more nearly right than those of liberals of socialists." (Pub-Rout ledge, London, 1996 Edn, P. 734)

ମଣିଷର ସଭାବ ଓ ଗତି ପ୍ରକୃତି ଉପରେ ଜରାଥ୍ରୁଷ୍ଟ୍ର କେତୋଟି ଟିପ୍ପଣୀ ମଧ୍ୟ କରିଥିଲେ । ଉନବିଂଶ ଶତାବ୍ଦୀରେ ମଣିଷର ବ୍ୟକ୍ତିତ୍ୱ ବହୁଧା ବିଭକ୍ତ ତଥା ମଣିଷର ମନ ବହୁ ସମବିଷମ ସଂଘାତ ଓ ଦୋଦୁଲ୍ୟମାନତାର ସନ୍ତାପିତ । ପ୍ରାଚୀନ ପୁରାଣକାରଗଣ ବ୍ୟକ୍ତିଗତ ମର୍ଯ୍ୟାଦା ଓ ଚରିତ୍ର ବୋଲି ଯେତେ ଗୁଣର ସଂକୀର୍ତ୍ତନ କରିଥିଲେ, ସେ ସବୁ ଅଳୀକ, ବା ଏକପ୍ରକାର ଭେଳିକି ମାତ୍ର । ବରଂ ସତ୍ ଚରିତ୍ର ବୋଲି ଦେଖାଇ ହେବା ପଣଟା ଏକ ପ୍ରକାର ମୁଖା- ଯାହା ପଛରେ ପ୍ରବଞ୍ଚନାଦି ଲୁଚି ରହିଥାଏ । 'Modern men are the children of fragmented, pluralistic sick and weird period.' ବୋଲି ସେ ବର୍ଣ୍ଣନା କରିଥିଲେ । ଗଢ଼ିଉଠୁଥିବା ନୂତନ ସଭ୍ୟତା ଓ ସଂସ୍କୃତିକୁ ସେ an old bitch gone in the teeth." ବୋଲି ଆଖ୍ୟାୟିତ କରି ତୀବ୍ର ଘୃଣା ପ୍ରକଟ କରିଥିଲେ । ତାଙ୍କର ଏ ଘୃଣା ଅଭିଜାତଙ୍କ ସପକ୍ଷରେ ଯୁକ୍ତି କଲାବେଳେ ହିଁ ପ୍ରକଟିତ ହୋଇଥିଲା । ଅଭିଜାତମାନଙ୍କୁ ଦେଶେ ଦେଶେ ଶାସନ ଭାର ସଂପି ନ ଦେଲେ ବିଶ୍ୱର ଏ ଯେଉଁ ଦୁର୍ଦ୍ଦଶା ଘଟୁଛି, ତାହା ପ୍ରବଳରୁ ପ୍ରବଳତର ହେବ ବୋଲି କହିବା ପ୍ରସଙ୍ଗରେ ନଷ୍ଟ ବିଶ୍ୱର ବ୍ୟାଖ୍ୟା କରିଥିଲେ । ରାଜନୀତିକ ତଥା ସମାଜତାନ୍ତ୍ରିକ ଦୃଷ୍ଟିକୋଣରୁ ନିତ୍‌ଶେଙ୍କ ତତ୍ତ୍ୱ ମରହଟ୍ଟିଆ

ପ୍ରତୀୟମାନ ହେଲେ ବି ନନ୍ଦନତାତ୍ତ୍ୱିକ ଦୃଷ୍ଟିରୁ ଉପରଲିଖିତ ଦୃଷ୍ଟଭଙ୍ଗୀ ଥିଲା ଏକ ଦୂରଦ୍ରଷ୍ଟାର ଦୃଷ୍ଟିଭଙ୍ଗୀ।

ଦାର୍ଶନିକ ନିତ୍‌ଶେଙ୍କୁ କେତେକ ସମାଲୋଚକ ଆଧୁନିକ ଯୁଗର "ମାକିଆଭେଲି" ବୋଲି ଆଖ୍ୟା ଦିଅନ୍ତି। ୟୁରୋପୀୟ ରେନେଁସାର ଉଦ୍‌ଗାତା ମାକିଆଭେଲିଙ୍କ ସହିତ ଦାର୍ଶନିକ ନିତ୍‌ଶେଙ୍କ ଚିନ୍ତାର ଅନେକ ମେଳ ଅଛି ଓ ଅନେକ ଅସାଦୃଶ୍ୟ ମଧ୍ୟ ଅଛି। ତ୍ରୟୋଦଶ ଶତାବ୍ଦୀର ୟୁରୋପକୁ ଗଭୀର ଭାବେ ଅନୁଧ୍ୟାନ କରି ମାକିଆଭେଲି ତତ୍‌କାଳୀନ ରାଜନ୍ୟବର୍ଗର ସ୍ୱଭାବ, ଅର୍ଥନୀତି ଓ ସଂସ୍କୃତିର ଗତି ପ୍ରକୃତି ଉପରେ ଟିପ୍ପଣୀ କରିଥିଲେ। ସେ ମହାପଣ୍ଡିତ ନଥିଲେ କି ଲେଖା ତାଙ୍କର ସାଙ୍ଗଠନିକ ସାମଞ୍ଜସ୍ୟ ଓ ପ୍ରାସଙ୍ଗିକତା ରକ୍ଷା କରୁନଥିଲା। ସେ କିନ୍ତୁ ଥିଲେ ଜଣେ କାମିକା ପ୍ରକୃତିର ଦାର୍ଶନିକ- ତାଙ୍କ ଦର୍ଶନ ସମାଜର ବ୍ୟାବହାରିକ ଦିଗରେ ବହୁ କାର୍ଯ୍ୟରେ ପ୍ରଯୁକ୍ତ ହୋଇପାରେ। କିନ୍ତୁ ନିତ୍‌ଶେ ଥିଲେ ଏକ ପ୍ରକାର ପୁସ୍ତକକୀଟ। ନିଜ କାଳର ୟୁରୋପ୍ ତାଙ୍କ ଚେତନା ଜଗତର ଏକ ଅନୁରଣନ ସୃଷ୍ଟି କରିପାରିଥିଲା ମାତ୍ର। ଦି'ଜଣଙ୍କ ମଧ୍ୟରେ ଏହି ବୈସାଦୃଶ୍ୟ ସତ୍ତ୍ୱେ ଅନେକ କ୍ଷେତ୍ରରେ ସାମ୍ୟ ଥିଲା। ନିତ୍‌ଶେଙ୍କ ଜରାଥୃଷ୍ଟ୍ରଙ୍କ ରାଜନୀତିକ ଦର୍ଶନ ସହ ମାକିଆଭେଲି 'ଦି ପ୍ରିନସ୍' ରାଜନୀତିକ ଦର୍ଶନ ମଧ୍ୟରେ ଯଥେଷ୍ଟ ସମାନତା ଅଛି। ଉଭୟ ଇଚ୍ଛାକୃତ ଭାବେ ଖ୍ରୀଷ୍ଟିୟାନ୍ ଧର୍ମ ବିରୋଧୀ ଥିଲେ - ବରଂ ନିତ୍‌ଶେ ପାଦେ ଆଗକୁ ବଢ଼ି ଏ ଧର୍ମ ମାଇବିଆମିର ପ୍ରତୀକ କହିଥିଲେ। ଉଭୟ ଦାର୍ଶନିକ ସମାଜର ଶାସନ କ୍ଷମତା କାଳ କାଳକୁ କିପରି ଅଭିଜାତ ବର୍ଗ କୁକ୍ଷୀଗତ କରି ରଖି ପାରିବେ, ତାହାର ବାଟ ବତାଇ ଅଛନ୍ତି। ମାକିଆଭେଲିଙ୍କ ଆଗରେ ତଦାନୀନ୍ତନ ୟୁରୋପର ବୀର ପୁରୁଷ ସମ୍ରାଟ କାଇଜର୍ ବରଗିଆ ରୋଲ ମଡ଼େଲ୍ ରୂପେ ବିରାଜିତ ଥିଲାବେଳେ ନିତ୍‌ଶେଙ୍କ ଆଗରେ ଥିଲେ ଫ୍ରାନ୍‌ସର ବୀର ପୁରୁଷ ନେପୋଲିୟନ୍।

ନିତ୍‌ଶେ ଥିଲେ ଜଣେ ବୀର ଉପାସକ (Hero worshipper) ଏବଂ ବ୍ୟକ୍ତିବାଦୀ (individualist). ତାଙ୍କର ପ୍ରତ୍ୟେକ ରାଜନୀତିକ ଭବିଷ୍ୟତ ବାଣୀ ଥିଲା ନୀତିବାଗୀଶତାରେ ପରିପୂର୍ଣ୍ଣ। ମାନବ ସମାଜର ପ୍ରତ୍ୟେକ ସଙ୍କଟ ପରିପକ୍ୱ ହୋଇ ଅବଶେଷରେ ମହାଯୁଦ୍ଧରେ ରୂପାନ୍ତରିତ ହୁଏ ବୋଲି ସେ ଦୃଢ଼ କଣ୍ଠରେ କହିଥିଲେ। ଆଜିଯାଏ ସେ ବଞ୍ଚିଥିଲେ, ଅନେକତ୍ର ତାଙ୍କ ଏ ବାଣୀ ଅପ୍ରମାଣିତ ହେଉଥିବାର ଅନୁଭବ କରୁଥାନ୍ତେ! ସେ ଗଣତନ୍ତ୍ର ଓ ସମାଜବାଦର ଘୋର ବିରୋଧୀ ଥିଲେ। ବ୍ରିଟିଶ ରାଜତନ୍ତ୍ରର ଗଣ୍ଡି ଭିତରେ କାଉ ବସାରେ କୋଇଲି ପରି ଆଜିର ଗଣତନ୍ତ୍ର ସେତେବେଳେ ଶୈଶବ ଅବସ୍ଥାରେ ଥିଲା। ବିବେକାନନ୍ଦଙ୍କ ଭାଷାରେ କହିଲେ ଏଇଆ ହେବ ଯେ, " ବିଶ୍ୱରେ ସେତେବେଳକୁ ବ୍ରାହ୍ମଣ ଓ କ୍ଷତ୍ରିୟଙ୍କ ରାଜତ୍ୱ କାଳ ଶେଷ ହୋଇ ଆସୁଥିଲା। ବଣିକ ଶାସନ ପହଞ୍ଚିଥିଲା ମାଧ୍ୟାହ୍ନରେ। ଶୂଦ୍ର ଶାସନର ଅଙ୍କୁରୋଦ୍‌ଗମ ହେଉଥିଲା।" ଏଇ ଶୂଦ୍ର ଶାସନର ରାଜନୀତିକ ରୂପ ହେଲା ଗଣତନ୍ତ୍ର ଶାସନ ଓ ସମାଜବାଦୀ ସମାଜ ପ୍ରତିଷ୍ଠା ଦିଗରେ ବିଭିନ୍ନ ଦେଶର ଶ୍ରମିକ - କୃଷକମାନଙ୍କର ନେତୃତ୍ୱର ପ୍ରସ୍ତୁତି। ବିଶ୍ୱ ଯେ ଆଗାମୀ ଯୁଗରେ ଏକ ସୁଗଠିତ ଅଭିଜାତ ଶ୍ରେଣୀର ନେତୃତ୍ୱରେ ଶାସିତ ହେବ - ନିତ୍‌ଶେଙ୍କ ଏଇ ଭବିଷ୍ୟବାଣୀ ତାହା

ମିଛରେ ପରିଣତ ହୋଇଛି । ରସେଲ୍ ତେଣୁ "Thus spake Zarathrustra" କୁ ଏକ Pseudoprophetic book" ବୋଲି ସମାଲୋଚନା କରି ରାଜନୀତିକ ଦୃଷ୍ଟିରୁ ସେ ଏକ ଦେବାଳିଆ ଚିନ୍ତାର ଧାରକ ଥିଲେ ବୋଲି କହିଛନ୍ତି ।

ଫରାସୀ ବିପ୍ଲବର ମଧ ଘୋର ସମାଲୋଚକ ଥିଲେ ନିତ୍‌ଶେ। ସେ ମଧ ବିରୋଧି ଥିଲେ ନାରୀ ସ୍ୱାଧୀନତାର । ତାଙ୍କ ନାରୀ ଜାତି ପ୍ରତି ବିଦ୍ୱେଷକୁ ରସେଲ ସମାଲୋଚନା କରି କହିଛନ୍ତି ଯେ କେତେକ ନିର୍ଦ୍ଦିଷ୍ଟ ନାରୀଙ୍କୁ ନିତ୍‌ଶେ ଆଖି ଆଗରେ ରଖି ସେ ସେପରି ଲେଖିଥିଲେ । ନାରୀଙ୍କୁ ବିଶ୍ଳେଷଣ କରିବାରେ ଏ ଦାର୍ଶନିକ ମନୋବୃତ୍ତି ସାର୍ବଜନୀନ ନୁହେଁ ବରଂ ବ୍ୟକ୍ତିଗତ । କେତେଜଣ ନାରୀଙ୍କୁ 'ବିଶ୍ୱନାରୀ'ର ପ୍ରତୀକ ରୂପେ ଧରି ସେ ଏକଦେଶଦର୍ଶୀ ମତାମତ ଉପସ୍ଥାପିତ କରିଛନ୍ତି ।

ନିତ୍‌ଶେ ଆଣ୍ଟି-ରୋମାଣ୍ଟିକ୍ ଥିଲେ । ୟୁରୋପୀୟ ରୋମାଣ୍ଟିକ୍ ସାହିତ୍ୟ ଆନ୍ଦୋଳନର ସେ ଘୋର ସମାଲୋଚକ ଥିଲେ । ବାଇରନ ଓ ସେଲି ରୋମାଣ୍ଟିକ୍ ସାହିତ୍ୟର ପ୍ରବକ୍ତା ହିସାବରେ ଫରାସୀ ବିପ୍ଲବ, ଜାତୀୟତାବାଦ ଓ ସେତେବେଳର ଶ୍ରମିକଙ୍କ ସଂଗଠିତ ଆନ୍ଦୋଳନକୁ ନୈତିକ ସମର୍ଥନ ଜ୍ଞାପନ କରିଥିଲେ। ରୋମାଣ୍ଟିକ୍ ମାନଙ୍କର ବିପ୍ଳବ ପ୍ରେମ ଓ ରାଜନୀତିକ ଉଦ୍ଦେଶ୍ୟ ନିତ୍‌ଶେଙ୍କ ସଙ୍କୁଚିତ ମନରେ ଘୋର ପ୍ରତିକ୍ରିୟା ସୃଷ୍ଟି କରିଥିଲା । ନିତ୍‌ଶେ ମନୋବିଶ୍ଳେଷକ ବା ମନୋବୈଜ୍ଞାନିକ ନଥିଲେ ବା ସମକାଳରେ ସିଗ୍‌ମଣ୍ଡ ଫ୍ରୟେଡ୍ କରୁଥିବା ମନୋବିଶ୍ଳେଷଣ ତଥା

ସ୍ୱପ୍ନ ବ୍ୟବଚ୍ଛେଦ ପ୍ରତି ଦୃକ୍‌ପାତ କରିନଥିଲେ । ଆଧୁନିକ ମଣିଷର ବ୍ୟକ୍ତିତ୍ୱର ବିଶ୍ଳେଷଣ ସେ (intuitively) କରିଥିଲେ । ଯଦିଓ ସେ ଏକ ନୂତନ ଦୃଷ୍ଟିଭଙ୍ଗୀର ପ୍ରଚାର ପାଇଁ (ସ୍ୱେଚ୍ଛା ପ୍ରଣୋଦିତ ହୋଇ) କଳାତ୍ମକ ପ୍ରଚେଷ୍ଟା ସୁରୁ କରିଥିଲେ, ତାହା କିନ୍ତୁ ତାଙ୍କ ଦର୍ଶନର ମୁଖ୍ୟ ବିଭାବ ନଥିଲା । ବରଂ ଅଭିଜାତ ବର୍ଗଙ୍କ ଶାସନ ଦଖଲ ସପକ୍ଷରେ ସେ ଅନେକ ପୁସ୍ତକରେ ଯୁକ୍ତି ଉପସ୍ଥାପିତ କରିଛନ୍ତି ଓ ତାହା ତାଙ୍କ ଲେଖାର ମୁଖ୍ୟ ଆଭିମୁଖ୍ୟ ବୋଲି ଦର୍ଶାଇଛନ୍ତି । ତାଙ୍କର ସମଗ୍ର ଜୀବନର ସାଧନା ସେମାନଙ୍କ ଶାସନ ଦଣ୍ଡ ପ୍ରାପ୍ତିରେ ଚରିତାର୍ଥ ହେବ ବୋଲି ସେ ମଧ ମନେ କରୁଥିଲେ । ତେଣୁ ଚିନ୍ତାଗତ ଦୃଷ୍ଟିରୁ ନିତ୍‌ଶେ ଲେନିନ୍‌ଙ୍କ ଭାଷାରେ କହିଲେ - One step forward, two step back ଅବସ୍ଥାରେ ଥିଲେ । ଆଧୁନିକ ଲେଖକଶ୍ରେଣୀ ଏପରି ପ୍ରଗତିର ପରିପନ୍ଥୀ ତଥା ଏକଦେଶଦର୍ଶୀ ଦାର୍ଶନିକ ଚେତନାକୁ ରୋଲ ମଡ଼େଲ୍ କରି ବା କଥା କଥାରେ ତାଙ୍କୁ ଆଦର୍ଶ ଭାବେ ଉଦ୍ଧାର କରି ଚେତନାର ଘୋଷଣାଯାତ୍ରାରେ ଯେ ଅନ୍ଧ ଧୂଳିଝଡ଼ ସୃଷ୍ଟି କରି ଚାଲିଛନ୍ତି, ଏଥିରେ ଲେଶ ମାତ୍ର ସନ୍ଦେହ ନାହିଁ ।



# 'କନକଲତା' ଉପନ୍ୟାସର ପ୍ରେକ୍ଷାପଟ୍ଟ

ଉପନ୍ୟାସକୁ କେତେକ ସମାଲୋଚକ ଗଦ୍ୟର ମହାକାଶ ବୋଲି କହଂତି । ମହାକାଶରେ ଯେପରି କାବ୍ୟକାର ମାନେ ଜୀବନର ବିଭିନ୍ନ ଦିଗ ଓ ଚାରିତ୍ରିକ ବିକାଶ ଦିଗ ଦିଗଂତ ଉଦ୍‌ଘାଟନ କରିଥାନ୍ତି ଓ ଜଗତର ଶାଶ୍ୱତ ମୂଲ୍ୟବୋଧର ସଂରକ୍ଷଣ ନିମନ୍ତେ ପାଠକର ଦୃଷ୍ଟିକୁ ଶାଣିତ କରିଥାନ୍ତି, ଉପନ୍ୟାସରେ ବିଭିନ୍ନ ଚରିତ୍ରର ବିକାଶ, କାଳର ଚରିତ୍ର ଚିତ୍ରଣ ମାଧମରେ ସେହିପରି ଔପନ୍ୟାସିକ ପାଠକଙ୍କୁ ସତ୍ୟର ସଂଧାନରେ ପ୍ରଧାବିତ କରିଥାନ୍ତି । ରାମାୟଣ, ମହାଭାରତ, ଇଲିଆଡ୍ ପ୍ରଭୃତି ମହାକାବ୍ୟ ଜଗତର ପରମ ସତ୍ୟ କ'ଣ, ମଣିଷ କେଉଁଠୁ ଆସିଛି ବା କୁଆଡେ ଯାଉଛି, ମୃତ୍ୟୁପରେ ଜୀବର କି ଦଶା ହୁଏ ଇତ୍ୟାଦି ଅସରଂତି ଦାର୍ଶନିକ ପ୍ରଶ୍ନ ଦୁନିଆ ଆଗରେ ଉତ୍‌ଥାପିତ କରିଛନ୍ତି । ଉପନ୍ୟାସ ସମୃତଲ୍ୟ ପ୍ରଶ୍ନ ପାଠକ ଆଗରେ ଛାଡି ଯାଇଛି । ପାଠନିକ ପ୍ରଣାଳୀରେ ଉପନ୍ୟାସକୁ ଲକ୍ଷ୍ୟକଲେ ତାହା ଇତିହାସର ବା ପ୍ରାଗୈତିହାସିକ କାଳର ଗୋଟାଏ ନିର୍ଦ୍ଦିଷ୍ଟ ଭୂଖଣ୍ଡର ନିର୍ଦ୍ଦିଷ୍ଟ ଜାତି ବା ଜନଜାତିର ଇତିବୃତ୍ତର କଥନ ବୋଲି ଜଣାଯାଏ । ଇଂରେଜ ଓ ୟୁରୋପୀୟ ଜାତି ସହିତ ଆମେରିକାର ଆଦିମ ବାସିନ୍ଦା ନିଗ୍ରୋ ମାନଙ୍କ ସହାବସ୍ଥାନ ନୀତିକୁ ଉର୍ଦ୍ଧ୍ୱକୁ ଟୋଳି ଧରିବା ପାଇଁ ଆମେରିକୀୟ ଔପନ୍ୟାସିକ ମାର୍କ ଟୁଏନ୍ ଲେଖିଥିଲେ "ଟମ୍ ସୋୟାର" ଓ "ଏଡ୍‌ଭେଂଚର ଅଫ୍ ହେକଲ୍ ବରୀ ଫିନ୍" ପରି ଚମତ୍କାର ଉପନ୍ୟାସ। ଦ୍ୱିତୀୟ ରାମଚନ୍ଦ୍ର ଦେବଙ୍କ ଦୃଷ୍ଟିରେ ଓଡିଶାରେ ହିନ୍ଦୁ ଓ ପଠାଣ ସଂସ୍କୃତିର ସହାବସ୍ଥାନ ଜଗନ୍ନାଥ ସଂସ୍କୃତି ମାଧମରେ ସଂଭବ ବୋଲି ଔପନ୍ୟାସିକ ସୁରେନ୍ଦ୍ର ମହାନ୍ତି କହିଲେ। "ନୀଳଶୈଳ" ବା "ଅମୃତର ସଂତାନ" ପରି ଉପନ୍ୟାସର ଗାଠନିକ ରୀତିକୁ ଲକ୍ଷ୍ୟ କଲେ ସେଗୁଡିକ ଏକ ନିର୍ଦ୍ଦିଷ୍ଟ ଜାତିର ନିର୍ଦ୍ଦିଷ୍ଟ ସମୟର ଚଳଣି ସଂସ୍କୃତି, ଆଚାର ବ୍ୟବହାର, ବିଶ୍ୱାସକୁ ଟୋଳି ଧରିଛନ୍ତି ବୋଲି କହିବାକୁ ପଡିବ।

ଓଡ଼ିଶାର କଥା ପରଂପରାରୁ ଓଡ଼ିଆ ଗଳ୍ପ ଓ ଉପନ୍ୟାସର ଉଦ୍‌ଭବ ହୋଇଛି। And Quite flows the Don ବା Virgin soil upturned ଉପନ୍ୟାସରେ ନିର୍ଦ୍ଦିଷ୍ଟ ଶକ୍ତିଶାଳୀ ଗଳ୍ପ ଛପି ନଥିବା ପରି କ୍ୱଚିତ ଓଡ଼ିଆ ଉପନ୍ୟାସ ନିର୍ଗଳ୍ପ ହୋଇଯାଏ। କିନ୍ତୁ ଆମ ଉପନ୍ୟାସ ଭିତରେ ଗୋଟିଏ ଖାଣ୍ଟି ଗଳ୍ପ ଶୁଣିବା ପାଇଁ ଓଡ଼ିଆ ପାଠକ ଅପେକ୍ଷା ରଖେ। ତେଣୁ ଓଡ଼ିଆ ଉପନ୍ୟାସରେ ଚରିତ୍ର ଚିତ୍ରଣ ଖୁବ୍ କମ୍। କୌଣସି ଆଦର୍ଶ ଓ ଦୃଷ୍ଟିକୋଣର ବିଶ୍ଳେଷଣ କମ୍ ଦେଖାଯାଏ, ମାତ୍ର ଗାଳ୍ପିକତା ବେଶି ଦେଖାଯାଏ। ତେଣୁ ମନୋଜ ଦାସ ତାଙ୍କ ଉପନ୍ୟାସ 'ଅମୃତ ଫଳ'କୁ ଉପନ୍ୟାସୋପମ ବୋଲି ଉଲ୍ଲେଖ କରିଛନ୍ତି। ଗଳ୍ପରେ ଶବ୍ଦର ବ୍ୟବହାରରେ ସାଂକେତିକତା, ଆଭ୍ୟାସଧର୍ମିତା ଥାଏ। ଅତି ଅଳ୍ପ କଥାରେ ଅନେକ ଭାବରେ ଇଙ୍ଗିତ ଦେବା କଳା ଗାଳ୍ପିକଙ୍କୁ ଜଣା। ଗୋଷ୍ପଦ ପାଣିରେ ମହାକାଶ ଦର୍ଶନ ପରି ଗଳ୍ପର ସାନ୍ଦ୍ରଭାଷା ମଧ୍ୟରେ

ଥାଏ ଅନେକ ଭାବ ଓ କଥାର ସମାବେଶ। ଯେଉଁ ଗାଳ୍ପିକ ଶବ୍ଦର ସଂକୋଚନ ଓ ମିତବ୍ୟୟିତାରେ ସଦାକାଳ ଅଭ୍ୟସ୍ତ, ସେ ଶବ୍ଦକୁ ପ୍ରସାରିତ କରି, ବର୍ଣ୍ଣନାକୁ ସରଳ ତରଳ ଓ ତନ୍ନ ତନ୍ନ କରି ଭାବର ଚିତ୍ର ବିସ୍ତାର କରିବାର ଦକ୍ଷତା ଶିଘ୍ର ଅର୍ଜି ପାରେନା। ତେଣୁ ସେ ଯଦି କେବେ ଉପନ୍ୟାସ ଲେଖାରେ ପ୍ରବୃତ୍ତ ହୁଏ, ତେବେ ସେ ବଡ଼ ଗଳ୍ପଟିଏ ଲେଖେ - ମାତ୍ର ତାହା ଯଥାର୍ଥ ଅର୍ଥରେ ଉପନ୍ୟାସ ହୁଏନା। ଏଇ ଦୃଷ୍ଟିରୁ ବିଚାର କଲେ ନନ୍ଦକିଶୋର ବଳଙ୍କ ଉପନ୍ୟାସ "କନକଲତା" ଏକ ବଡ଼ ଗଳ୍ପ, ମାତ୍ର ଉପନ୍ୟାସ ନୁହେଁ।

'କନକଲତା' ଉପନ୍ୟାସରେ ଔପନ୍ୟାସିକତାର ଅଭିବୃଦ୍ଧି ନହେବା ପାଇଁ ତତ୍‌କାଳୀନ ସମୟ, ପରିବେଶ ହିଁ ଦାୟୀ। ନନ୍ଦକିଶୋର ବଳଙ୍କ ପରି ଜଣେ ଶିକ୍ଷାବିତ୍ ଓ କବି ବାସ୍ତବରେ ଥିଲେ ଭାବ ଓ ଭାବନା ରାଜ୍ୟର ମଣିଷ। ଉପନ୍ୟାସ ରଚନାର ମାନସିକତା ତାଙ୍କୁ କ୍ୱଚିତ ଆସିଥିବ। କବିତା, ବିଶେଷତଃ ଗୀତି କବିତା ଯିଏ ରଚନା କରନ୍ତି ତାଙ୍କ ମାନସ ରାଜ୍ୟରେ ଗାଳ୍ପିକତାର ସଂଚାର ହୋଇଥାଏ, କାରଣ ଗୀତିକବିତା ଓ ଆଧୁନିକ ଗଳ୍ପର ସାଂଗଠନିକ ତଥା ଆବେଦନରେ ଅନେକ ସାମ୍ୟଥାଏ।

'କନକଲତା' ରଚନା କାଳ ହେଲା ୧୯୧୩-୧୪ ମସିହା। ସେତେବେଳର ଉତ୍କଳ ତଥା ଭାରତ ଯଥାର୍ଥରେ ଏକ ଚେତନାଗତ ପରିବର୍ତ୍ତନର ଦ୍ୱାର ଦେଶରେ ପାଦ ଦେଇଥିଲା। ସେଇ ସମୟରେ ଉଭୟ ବଂଗ ଓ ଓଡ଼ିଶାରେ ଏକ ଜାତୀୟତାବାଦୀ ଜମିମାଲିକ ଶ୍ରେଣୀ (National Bourgeoise) ଗଠିତ ହୋଇ ସାରିଥାଏ। ବିପୁଳ ଜମିମାଲିକ ବା ସାମନ୍ତବାଦୀ ଜମିଦାର ବା ଭୂସାମୀ ହୋଇ ଏଇ ଶ୍ରେଣୀ ଗାଁ ଗହଳିରେ ପଡ଼ି ରହିବାକୁ ପସନ୍ଦ କରୁନଥିଲା। ସମୟର ପ୍ରଭାବରେ ହରିଚନ୍ଦନ ପରିବାରର ଓକିଲାତି ପଢ଼ିଥିବା ପୁତ୍ର ଧନଞ୍ଜୟ ସହରାଭିମୁଖୀ ହୋଇଛି। ବଙ୍ଗଳା ଥିଲା ଏ କ୍ଷେତ୍ରରେ ଓଡ଼ିଶା ଠାରୁ ଢ଼େର୍ ଆଗରେ। ଔପନ୍ୟାସିକ ସୁନୀଲ ଗଙ୍ଗୋପାଧ୍ୟାୟଙ୍କ ଉପନ୍ୟାସ "ସେଇ ସମୟରେ" ପ୍ରଦତ୍ତ ଚିତ୍ରାନୁସାରେ ସେତେବେଳେ ରବୀନ୍ଦ୍ରନାଥଙ୍କ ମଝିଆଭାଇ ଜ୍ୟୋତିରିନ୍ଦ୍ର ନାଥ ବଙ୍ଗ ଦେଶରେ ଜମିଦାରୀ ସବୁ ବିକ୍ରି କରି ବ୍ରିଟିଶ୍ ନୌବାଣିଜ୍ୟିକ କମ୍ପାନୀ ଦ୍ୱାରାରେ ଏକ ସିପିଙ୍ଗ୍ କମ୍ପାନୀ ଗଠନ କରିଥିଲେ ଓ ବ୍ରିଟିଶ୍ କମ୍ପାନୀଗୁଡ଼ିକୁ ଜଳପଥରେ ଜିନିଷପତ୍ର ଯୋଗାଣ, ଗମନାଗମନ କ୍ଷେତ୍ରରେ ଚ୍ୟାଲେଞ୍ଜ୍ ଦେଇଥିଲେ। ସେମିତି ଔପନ୍ୟାସିକ ବିମଲ ମିତ୍ରଙ୍କ "ସାହେବ ବିବି ଗୋଲାମ" ରେ ଚିତ୍ରିତ ପ୍ରସଂଗାନୁସାରେ କଲିକତା ବୌବଜାରର ବଡ଼ବାଡ଼ିର ପ୍ରଖ୍ୟାତ ଜମିଦାରଙ୍କ ତୃତୀୟ ପୁତ୍ର ଛୁଟୁକ୍ ବାବୁ ନିଜ ଜମିଦାରୀ ବିକ୍ରି କରି ସୁଦୂର ଧାନ୍‌ବାଦରେ ଗୋଟାଏ କୋଇଲାଖଣିର ମାଲିକାନାକୁ ନିଜ ବ୍ୟବସାୟ ରୂପେ ଗ୍ରହଣ କରିବାକୁ ଆଗେଇ ଯାଇଛନ୍ତି। ଓଡ଼ିଶାରେ ବି ଉଚ୍ଚ ମଧବିତ୍ତ ଭୂସାମୀଙ୍କ ମଧରେ ଶିଳ୍ପ ପ୍ରତିଷ୍ଠାନ ଗଠନ କରି କୃଷି ଅର୍ଥନୀତିରୁ ରାଜ୍ୟକୁ ପୁଞ୍ଜିର ଅର୍ଥନୀତି ଆଡ଼କୁ ଘେନି ଯିବାର ମନୋଭାବ ଜାଗି ଉଠିଥାଏ। ସତନ୍ତ୍ର ଉତ୍କଳ ଗଠନ ଆନ୍ଦୋଳନର ପୁରୋଧା ସ୍ୱୟଂ ମଧୁବାବୁ କଟକରେ ଏହି ପରିପ୍ରେକ୍ଷୀରେ ପ୍ରତିଷ୍ଠା କରନ୍ତି ଏକ ଜୋତା କାରଖାନା— 'ଉତ୍କଳ ଟ୍ୟାନେରୀ'। କଟକର ପ୍ରସିଦ୍ଧ ରୂପାର ତାରକସି ଅଳଙ୍କାରକୁ ବିଦେଶରେ ବିପଣନ କରି ଓଡ଼ିଶାକୁ ବୈଦେଶିକ ଧନର ଆଗମନକୁ

ସୁନିଶ୍ଚିତ କରିବା ପାଇଁ ମଧୁବାବୁ ମଧ ତାରକସି ଶିଳ୍ପର ଆଧୁନିକୀକରଣ କରିଥାନ୍ତି।

ବିଂଶ ଶତକର ପ୍ରଥମ ତିନୋଟି ଦଶକର ଓଡ଼ିଶାର ଇତିହାସ ହେଉଛି 'ଉତ୍କଳ ସମ୍ମିଳନୀ' ନେତୃତ୍ୱରେ ଜାତୀୟତାବାଦୀ ସଂଗ୍ରାମର ଇତିହାସ। ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ନେଇ ଏକ ସ୍ୱତନ୍ତ୍ର ରାଜ୍ୟ ଗଠନ କରିବାର ଦାବୀରେ ଉତ୍କଳ ସମ୍ମିଳନୀ ଆନ୍ଦୋଳନ ମୁଖର ହୋଇ ଉଠିଥାଏ।

ପୁନଶ୍ଚ ସେଇ ଦଶକରେ କଂଗ୍ରେସ୍ କେତେକ ନରମପନ୍ଥୀ ନେତାଙ୍କ ହାତବାରିସି ହୋଇ ବ୍ରିଟିଶ ସାମ୍ରାଜ୍ୟବାଦର ପଦଲେହନରେ ବ୍ୟସ୍ତ ଥାଏ। କେତେକ ଅନୁନୟ ବିନୟ ଓ କାକୁତି ମିନତିରେ ଏହାର ଆନ୍ଦୋଳନ କାର୍ଯ୍ୟକ୍ରମ ସୀମିତ ଥାଏ। କଂଗ୍ରେସ ଦଳ ଭିତରେ ଏହାର ପ୍ରତିବାଦ୍‌ରେ ଏକ ବିପ୍ଳବୀ ଗୋଷ୍ଠୀ (ଯଥା: ଲାଲ୍ ବାଲ୍ ପାଲ୍) ଗଢ଼ିଉଠେ। ଜନସାଧାରଣଙ୍କ ମଧ୍ୟରେ ବ୍ୟାପକ ପ୍ରଚାରାଭିଯାନ ଚଳାଇବା କ୍ଷେତ୍ରରେ ଏମାନଙ୍କ ଅପୂର୍ବ ସାଫଲ୍ୟ ହେତୁ ଜାତୀୟ ଆନ୍ଦୋଳନର ନେତୃତ୍ୱ ବାଳଗଙ୍ଗାଧର ତିଳକଙ୍କ ହାତକୁ ଆସିଯାଏ। ନରମପନ୍ଥୀଙ୍କ ବିଦାୟ ଓ ତିଳକଙ୍କ ଅଭ୍ୟୁଦୟ ପଟ୍ଟଭୂମିରେ ନାଗପୁର କଂଗ୍ରେସ ଅଧିବେଶନ ଅନୁଷ୍ଠିତ ହୁଏ– ଯେଉଁଥିରେ ଓଡ଼ିଶାର ପ୍ରତିନିଧି ରୂପେ ଯୋଗଦିଅନ୍ତି ଫକୀରମୋହନ। ଫକୀରମୋହନ ଯେ ଜୀବନବ୍ୟାପୀ ଭାରତୀୟ ସ୍ୱାଧୀନତା ସଂଗ୍ରାମର ଗତିବିଧିକୁ ଲକ୍ଷ୍ୟ କରି ତାହାର ଦିଗ୍‌ଦର୍ଶନକୁ ନିଜ ମଧ୍ୟରେ ଅଭିକର୍ଷଣ କରୁଥିଲେ। ତାଙ୍କର ନାଗପୁର ସମ୍ମିଳନୀରେ ଯୋଗଦାନରୁ ଏହା ପ୍ରମାଣିତ ହୁଏ। ନନ୍ଦକିଶୋର ବାଲେଶ୍ୱରରେ ଅବସ୍ଥାନ କାଳରେ ବ୍ୟାସକବିଙ୍କ ସଖ୍ୟ ଲାଭ କରିଥିଲେ ଓ ଫକୀର ମୋହନଙ୍କ ଦୃଷ୍ଟିର ଦିଗବଳୟକୁ ଅନୁଧ୍ୟାନ କରିଥିଲେ। ୧୯୧୫ ମସିହାରେ ଗାନ୍ଧିଙ୍କର ଆବିର୍ଭାବ ଘଟେ ଭାରତୀୟ ରାଜନୀତିରେ। ସେତେବେଳେ ହିଂସ୍ର ଆନ୍ଦୋଳନକାରୀଙ୍କ ଆଡୁ ମୁହଁ ଫେରାଇ ଭାରତର ଜନମାନସ ଖୋଜୁଥାଏ ସଂଗ୍ରାମର ଅନ୍ୟ କୌଣସି ବିକଳ୍ପ ରାସ୍ତା। ଗାନ୍ଧି ତାଙ୍କ ସାମ୍ୟ ଆଚାର ବିଚାର ମାଧ୍ୟମରେ ଅହିଂସ୍ର ଆନ୍ଦୋଳନ ଓ ରଚନାତ୍ମକ ରାସ୍ତାରେ ଜାତୀୟ ପୁର୍ନଗଠନର କଥା କହନ୍ତି – ଯାହା ତତ୍‌କ୍ଷଣାତ୍ ଧରେ ଉତ୍‌କଣ୍ଠିତ ଜନମାନସକୁ। ରଚନାତ୍ମକ ଆନ୍ଦୋଳନରୁ ପ୍ରେରଣା ସଂଗ୍ରହ କରି ସାମାଜିକ ସମସ୍ୟା ଯୌତୁକପ୍ରଥା ଓ କନ୍ୟାସୁନା ବିଷୟରେ ଗଳ୍ପ ଲେଖନ୍ତି ଫକୀରମୋହନ (ଉଦାହରଣ- ମାଧ ମହାନ୍ତିଙ୍କ କନ୍ୟାସୁନା)। ସେହିପରି ନନ୍ଦକିଶୋରଙ୍କ 'କନକଲତା'ର ନାୟକ ଧନଞ୍ଜୟ ଗର୍ଜି ଉଠେ ଯୌତୁକ ପ୍ରଥା ବିରୁଦ୍ଧରେ।

ଓଡ଼ିଶାର ରାଜନୀତିରେ ବିଭିନ୍ନ ଗଣସାମ୍ମୁଖ୍ୟ ଗଢ଼ି ସାମ୍ରାଜ୍ୟବାଦୀଙ୍କ ବିରୋଧରେ ମୋର୍ଚ୍ଚାଗଢ଼ି ସଂଗ୍ରାମ ଚଳାନ୍ତି ପଣ୍ଡିତ ଗୋପବନ୍ଧୁ ଓ ତାଙ୍କ ପଞ୍ଚସଖା। ଗୋପବନ୍ଧୁ ସାଧନାର ମାର୍ଗ ଥିଲା ଗାନ୍ଧିବାଦୀ ସାଧନାର ମାର୍ଗ। ନିଜ ଜୀବନକୁ ତ୍ୟାଗ ଓ ଉତ୍ସର୍ଗର ମାର୍ଗରେ ଗଢ଼ି ଦେଶର ବୃହତ୍ତମ ଜନତାର ମୁକ୍ତି ବିଧାନ କରିବା ଥିଲା ଗୋପବନ୍ଧୁଙ୍କ ମହାଜୀବନର ନୀତି--ଯାହା ଆର୍ଯ୍ୟ ପରମ୍ପରା ଦ୍ୱାରା ଥିଲା ପରିଦୃଷ୍ଟ। 'କନକଲତା'ରେ ନନ୍ଦକିଶୋର ଯେଉଁ ରାଜେନ୍ଦ୍ରର ଚରିତ୍ରଟି ସୃଷ୍ଟି କଲେ, ତାହାର ପ୍ରେରଣା ସେ ପାଇଥିଲେ ଗୋପବନ୍ଧୁଙ୍କ ଯତିସୁଲଭ ସାଧନା ଓ ସିଦ୍ଧିରୁ। ଏ ଉପନ୍ୟାସରେ ଅନ୍ୟାନ୍ୟ ଚରିତ୍ରର ବର୍ଣ୍ଣନରେ ନନ୍ଦକିଶୋର ଚରିତ୍ର ଚିତ୍ରଣ ଅପେକ୍ଷା ଗାଳ୍ପିକତାକୁ ପ୍ରାଧାନ୍ୟ ଦେଇଛନ୍ତି। ମାତ୍ର ରାଜେନ୍ଦ୍ର ଚରିତ୍ରଟିକୁ ସେ ଭାରତୀୟ ଋଷି ପରମ୍ପରାନୁସରଣରେ ବିକଶିତ କରିଛନ୍ତି।

ପାଠକେ ଜାଣନ୍ତି, ଫକୀରମୋହନଙ୍କ ବିଶିଷ୍ଟ ଉପନ୍ୟାସ "ଛ'ମାଣ ଆଠଗୁଣ୍ଠ" ୧୯୦୦ ମସିହାରେ ରଚିତ ହୋଇଥିଲା। ଉତ୍ତର ବାଲେଶ୍ୱରର ଔପନ୍ୟାସିକ ଅବଦୁଲ୍ ରହିମ୍‌ଙ୍କ ସାମାଜିକ ଉପନ୍ୟାସ 'ସ୍ନେହଲତା' ୧୯୧୨ ମସିହାରେ ରଚିତ ହୋଇଥିଲା। ନନ୍ଦକିଶୋରଙ୍କ 'କନକଲତା' ୧୯୧୩ ମସିହାରେ ରଚିତ ହୋଇଥିଲା। ଅବଦୁଲ୍ ରହିମ୍‌ଙ୍କ 'ସ୍ନେହଲତା'ରେ ନରେନ୍ଦ୍ରର ବିଧବା ଭଉଣୀ ନଳିନୀ ନିଜର ପରିବାରର ହୃତଗୌରବ ଫେରି ପାଇବାକୁ ଜୀବନ ତମାମ୍ କୃଚ୍ଛ୍ର ସାଧନା କରିଛନ୍ତି ଓ ଶେଷରେ ଏ କ୍ଷେତ୍ରରେ ସଫଳ ହୋଇଛନ୍ତି। 'ସ୍ନେହଲତା' ଉପନ୍ୟାସର ମୁଖ୍ୟନାୟିକା ବିଧବା ନନ୍ଦିନୀକୁ ପୁନଃବିବାହ କରାଇ ଦେବା ପାଇଁ ଉପନ୍ୟାସକାର ରହିମ୍ ଉଦ୍ୟମ କରି ନାହାନ୍ତି, ଯଦିଓ ନଳିନୀର ଦୁଃଖ ଓ ଅଶ୍ରୁପୂର୍ଣ୍ଣ ଜୀବନଯାପନକୁ ସହଜ ଭାଷାରେ ଚିତ୍ରଣ କରି ସେ ପାଠକର ମନକୁ ସଂବେଦନଶୀଳ କରି ଦେଇଛନ୍ତି। ମାତ୍ର 'କନକଲତା'ର ନାୟକ ରାଜେନ୍ଦ୍ର ବିଧବା ସପକ୍ଷରେ ଯୁକ୍ତି କରି ଧନଞ୍ଜୟର ବିଧବା ଭଉଣୀ ଉମାଙ୍କୁ ବିବାହ କରିବାକୁ ଇଚ୍ଛା ପ୍ରକାଶ କରିଛନ୍ତି। ସେ ବିଧବା ବିବାହ ବିରୁଦ୍ଧରେ ଯୁକ୍ତି କରୁଥିବା ଧନଞ୍ଜୟକୁ ଧିକ୍କାର କରି କହିଛନ୍ତି- " ଛିଃ ଧନଞ୍ଜୟ, ତୁମେ ବୟସରେ ବଡ଼ ହୋଇ ସଂସାରର ସୁଖ ଉପଭୋଗ କରିବ, ଅଥଚ ତୁମର କନିଷ୍ଠା ଭଗିନୀ ଯେ କି ଅକ୍ଷତ ଯୌବନା, ବିବାହ କ'ଣ ଜାଣେ ନାହିଁ, ତାହାକୁ ଚିରବୈଧବ୍ୟ ଯନ୍ତ୍ରଣାରେ ଦୀକ୍ଷିତ କରାଇବ। ତୁମେ ତୁମର ପିତାମାତାଙ୍କ ଭୟ ଦେଖାଉଅଛ। ସେମାନେ ଯୌବନର ପ୍ରାନ୍ତରେ ଉପନୀତ ହୋଇ ବିଷୟ ସୁଖରୁ ନିଜକୁ ନିବୃତ୍ତ କରି ପାରୁ ନାହାନ୍ତି। ଅଥଚ ଅପରିଚିତ ମୃତ ପୁରୁଷ ନିମିତ୍ତ ଚିରବୈଧବ୍ୟ ଯନ୍ତ୍ରଣାରେ ସରଳା ଯୁବତୀକୁ ନିୟନ୍ତ୍ରିତ କରିବାକୁ ଦୃଢ଼ ପ୍ରତିଜ୍ଞ ହୋଇଅଛନ୍ତି। ଧିକ୍ ଏପରି ଭ୍ରାତାକୁ, ଶତ ସହସ୍ର ଧିକ୍ ସେହି ପିତାମାତାଙ୍କୁ। ସେମାନେ ପିତାମାତା ରୂପରେ ରାକ୍ଷସ ରାକ୍ଷସୀ।" (ନନ୍ଦକିଶୋର ଗ୍ରନ୍ଥାବଳୀ-ପୃ. ୧୭)

ନନ୍ଦକିଶୋର ଉପନ୍ୟାସରେ ରାଜେନ୍ଦ୍ରକୁ ସାମାଜିକ କୁସଂସ୍କାର ବିରୁଦ୍ଧରେ ଗର୍ଜି ଉଠୁଥିବା ଜଣେ ବିପ୍ଳବୀ ସଂସ୍କାରକ ରୂପେ ଗଢ଼ି ତୋଳିଛନ୍ତି। ରାଜେନ୍ଦ୍ର ନିଜ ଭାଷଣ ଓ ପ୍ରବନ୍ଧ ମାଧ୍ୟମରେ ମତ ଦେଇଛନ୍ତି- "ସ୍ୱାମୀ-ସ୍ତ୍ରୀ ମିଳନ କାର୍ଯ୍ୟରେ ମଧ ସାମାଜିକ କୁପ୍ରଥା ବାଧା ଦେଉଅଛି। ଶିକ୍ଷା ଓ ସଂସ୍କାର ଦ୍ୱାରା ଏ କୁପ୍ରଥାଗୁଡ଼ିକ ସମାଜରୁ ବିଦୂରିତ ହେବା ବିହିତ। XXX ଏପରି କୁପ୍ରଥାମାନଙ୍କ ଦ୍ୱାରା ହିନ୍ଦୁ ସମାଜର ଜନସଂଖ୍ୟାର ହ୍ରାସ ହୋଇ କାଳେ ତାହା ଧରାପୃଷ୍ଠରୁ ବିଲୁପ୍ତ ହେବ। କାରଣ, ସାମାଜିକ କୁପ୍ରଥାମାନ ବଂଶବୃଦ୍ଧିକ୍ଷମ ପୁରୁଷ ଓ ସ୍ତ୍ରୀମାନଙ୍କୁ ବିଚ୍ଛିନ୍ନ ରଖି ହିନ୍ଦୁ ସମାଜର ଜନସଂଖ୍ୟାର ହ୍ରାସ କରୁଅଛି। ଚିରବୈଧବ୍ୟ ଦ୍ୱାରା ବଂଶ ବୃଦ୍ଧିକ୍ଷମ ଯୁବତୀଗଣ ସଂତାନ ଉତ୍ପାଦନରେ ଅକ୍ଷମ। ସ୍ତ୍ରୀ ମାନଙ୍କର ସ୍ୱାମୀ ସହ ବିଦେଶ ଗମନ ନିଷେଧ ବିଧି, ଜ୍ୟୋତିଷ ଶାସ୍ତ୍ରର ନାନା କଠିନ ନିୟମ ଯୋଗୁଁ ନବବଧୂ ଯାତ୍ରାଦି ନିଷେଧ ପ୍ରଭୃତି ହିନ୍ଦୁ ସମାଜର କ୍ଷତି କରୁଅଛି"। (ନଂଗ୍ରପୃ୭୮୫-୮୬) ବିଧବା ବିବାହ ସପକ୍ଷରେ ଯୁକ୍ତି କରିବାକୁ ଯାଇ ଈଶ୍ୱରଚନ୍ଦ୍ର ବିଦ୍ୟାସାଗର ବେଦ ବେଦାନ୍ତ ଶାସ୍ତ୍ର ପୁରାଣରେ ଥିବା ବିଧି ବିଧାନର ସାହାରା ଗ୍ରହଣ କରିଛନ୍ତି। ମାତ୍ର ନନ୍ଦକିଶୋର ତତ୍‌କାଳୀନ ସମାଜରେ ବ୍ୟବହୃତ ରୀତିନୀତିର କଳାଦିଗକୁ ବିଶ୍ଳେଷଣ କରି ହେତୁବାଦୀ ମାର୍ଗରେ ନିଜ ଯୁକ୍ତିକୁ ରାଜେନ୍ଦ୍ରର ଚରିତ୍ର ମାଧ୍ୟମରେ ଉପସ୍ଥାପନ କରିଛନ୍ତି। ରୂଢ଼ିବାଦୀ ହିନ୍ଦୁ ପଣ୍ଡିତଙ୍କ ବିରୁଦ୍ଧରେ ଯୁକ୍ତି

ଉପସ୍ଥାପନ କରିବାକୁ ଯାଇ ବିଦ୍ୟାସାଗର ମହାଭାରତରେ ଏକ ଶ୍ଳୋକକୁ ପ୍ରାମାଣିକତା ରୂପେ ଗ୍ରହଣ କରି ଦର୍ଶାଇଛନ୍ତି ଯେ, ସତ୍ୟ ଯୁଗରେ ମନୁଙ୍କ ବିରଚିତ ମନୁସ୍ମୃତି, ତ୍ରେତୟା ଯୁଗରେ ବଶିଷ୍ଠଙ୍କ ସ୍ମୃତି, ଦ୍ୱାପରରେ ଭରଦ୍ୱାଜଙ୍କ ସଂହିତା ଓ କଳିଯୁଗରେ ପରାଶର ସଂହିତା ମାନେ ସମାଜର ଅନୁକରଣଯୋଗ୍ୟ ବୋଲି ବ୍ୟାସଙ୍କ ମତ। ମାତ୍ର ଆଜିର କଳିଯୁଗରେ ମନୁସ୍ମୃତିକୁ ଆଣି ଆମ ଉପରେ ଚାପି ଦେବା ନ୍ୟାୟ ସଙ୍ଗତ ନୁହେଁ। ପରାଶର ନିଜେ ଜଣେ ଧୀବର କନ୍ୟାର ସଙ୍ଗସୁଖ ଲାଭ କରି ଅନ୍ୟାନ୍ୟ ଜୀବନଧାରାର ଲୋକଙ୍କ ସାମାଜିକ ଚଳଣିକୁ ନିକଟରୁ ଚିହ୍ନିଥିଲେ। ସେ ଥିଲେ ବିଭିନ୍ନବର୍ଗର, ଜାତିଧର୍ମର ଲୋକଙ୍କ ମଧ୍ୟରେ ଜଣେ ମହାନ ସମନ୍ୱୟକାରୀ। ତାହାରି ପ୍ରଭାବରେ ତାଙ୍କ ସଂହିତାରେ ବିଧବାଙ୍କ ପ୍ରତି ଅସ୍ପୃଶ୍ୟ ପ୍ରତି ସଂବେଦନା ପ୍ରକଟ ହୋଇଛି। ପରାଶର ସଂହିତାକୁ ଚଳଣିର ନିୟାମକ ଗ୍ରହଣ କଲେ, ଆମେ ତାହା ସାହାଯ୍ୟରେ ପାଇବୁ ଏକ ସଂସ୍କାରିତ ହିନ୍ଦୁ ସମାଜ, ଯହିଁରେ ବିଧବା ବିବାହ ସ୍ୱାଭାବିକତା ଲାଭ କରିବ, ବାଲ୍ୟ ବିବାହ ଘୃଣ୍ୟ ହେବ। ଏ ଯୁକ୍ତି ବିଦ୍ୟାସାଗର ଶାସ୍ତ୍ର ପୁରାଣରୁ ଉଦ୍ଧୃତ ଦେଇ ଦୃଢ଼ତାର ସହ କହିଲେ। ନନ୍ଦକିଶୋରଙ୍କ ରାଜେନ୍ଦ୍ର କିନ୍ତୁ ଅତି ବାସ୍ତବବାଦୀ ମଣିଷ। ସେ ସମାଜର ପ୍ରଚଳିତ ରୀତିନୀତିକୁ ଗୋଟା ଗୋଟା କରି ତୋଳିଆଣି ନିଜ ହେତୁବାଦୀ ବିଶ୍ଳେଷଣର ଟେବୁଲରେ ପର୍ଯ୍ୟବେକ୍ଷଣ କଲେ ଓ ଦୃଢ଼ କଣ୍ଠରେ ତାହାର ବିରୋଧ କଲେ। ନନ୍ଦକିଶୋରଙ୍କ ପରପୀଢ଼ିରେ ବହୁ ପ୍ରବନ୍ଧ ରଚନା ବିବାହ ଓ ବିବାହର ସଂସ୍କାର ବିଷୟରେ ମୋହିନୀମୋହନ ସେନାପତି ଓ ଭଗବତୀ ଚରଣ ପାଣିଗ୍ରାହୀ କଲେ ଓ ନାରୀ - ପୁରୁଷ ମଧ୍ୟରେ ସମାନତାର କଥା କହିଲେ। ନାରୀ ପ୍ରଥମତଃ ଭାବାବେଗ ଛାଡ଼ି ଆର୍ଥନୀତିକ ଭାବେ ସ୍ୱାବଲମ୍ବିନୀ ହେଉ ସେଥିଯୋଗୁଁ ବିବାହ ଅନୁଷ୍ଠାନଟି ସମାଜରେ ଭାଙ୍ଗିଯାଏ ଯଦି ଯାଉ ବୋଲି ଭଗବତୀ ପାଣିଗ୍ରାହୀ ଦୃଢ଼ କଣ୍ଠରେ ଘୋଷଣା କଲେ। ନାରୀ ସଶକ୍ତିକରଣ ନିମନ୍ତେ ଆଜି ଯେଉଁ ଅଭିଯାନ ଚାଲିଛି, ତାହାର ଉତ୍ପତ୍ତି ବା ପ୍ରେରଣା କେନ୍ଦ୍ର କେଉଁଠି ବୋଲି ଯଦି ଆମେ ଖୋଜୁଁ ତେବେ 'କନକଲତା'ର ରାଜେନ୍ଦ୍ର ଠାରେ ତାହା ଠାବ କରିବୁ।

ରାଜେନ୍ଦ୍ରକୁ ଔପନ୍ୟାସିକ ନନ୍ଦକିଶୋର ସତେ କ'ଣ ପ୍ଲାଟୋନିକ୍ ଫିଲୋସଫର୍-କିଙ୍ଗ୍ ପରି ଗଢ଼ିବାକୁ ଚାହୁଁଥିଲେ, ନଚେତ୍ ତାକୁ ଉପନ୍ୟାସର ଉପସଂହାରରେ ବାମପନ୍ଥୀ କରି ଛାଡ଼ିଥାନ୍ତେ କାହିଁକି ? ନନ୍ଦକିଶୋର ନିଜ କାଳରେ ଜାତୀୟ ସଂଗ୍ରାମରେ ଲିପ୍ତ କଂଗ୍ରେସ ମଧ୍ୟରେ ଦୁଇ ଶିବିର ମଧ୍ୟରେ ଲଢ଼େଇ ଦେଖିଥିଲେ ଏବଂ ପରେ ପରେ ଦେଖିଲେ ମହାତ୍ମା ଗାନ୍ଧିଙ୍କ ଅଭ୍ୟୁଦୟ ଓ ଓଡ଼ିଶାରେ ଗୋପବନ୍ଧୁଙ୍କ ସତ୍ୟାଗ୍ରହ। ରାଜେନ୍ଦ୍ର ଉପନ୍ୟାସର ଗଡ୍ଡାଳିକା ପ୍ରବାହରୁ ବାହାରି ଆସି ସନ୍ନ୍ୟାସ ରାସ୍ତାରେ ପାଦ ଥାପି ଠିଆ ହେବା ପରି ଗାନ୍ଧି ନିଜ ଅଭ୍ୟୁଦୟ ବେଳର ନୀତିହୀନ ରାଜନୀତିକ ରାସ୍ତା ଉପରେ ସତ୍ୟାଗ୍ରହୀ ସାଜି 'ଏକ୍‌ଲା ଚଲୋ' ର ଧ୍ୱନି ଦେଇ ଆସି ଠିଆ ହେଲେ। ଭାରତପରି ପୂତପବିତ୍ର ଦେବଭୂମିକୁ ଏହିପରି ବାମପନ୍ଥୀ ନିସ୍ପୃହ ସନ୍ନ୍ୟାସୀଗଣ ଦାସତ୍ୱରୁ ମୁକୁଳାଇବେ ବୋଲି ନନ୍ଦକିଶୋର ଭାବୁଥିଲେ। ତେଣୁ ସେ ରାଜେନ୍ଦ୍ରର ଯାତ୍ରାର ଶୁଭ କାମନା କରି ଉପନ୍ୟାସର ଉପସଂହାରରେ ଆର୍ଶୀବାଣୀ ଶୁଣାଇଛନ୍ତି- " ଯାଅ ସନ୍ୟାସୀ! ଯାଅ! ତୁମ୍ଭର ପରି ପରହିତରତ ସାଧୁଜନଙ୍କ ଦ୍ୱାରା ଦେଶ ପବିତ୍ର ଓ ଧନ୍ୟହେଉ ଏବଂ ପୃଥିବୀ ସର୍ଗରେ ପରିଣତ ହେଉ।"

●



* ଲେଖକ ଶ୍ରୀ ବାଞ୍ଛାନିଧି ଦାସଙ୍କର ଆଲୋଚନା ଯେତିକି ମାନବବାଦୀ ସେତିକି ଆଧୁନିକ।

(ପ୍ରଜାତନ୍ତ୍ର ସାପ୍ତାହିକୀ ୨୦୦୪,
ଅଗଷ୍ଟ ମାସ ପ୍ରଥମ ସାପ୍ତାହିକ ସଂଖ୍ୟା)

* ସମାଲୋଚନା ଲେଖିବାରେ ଆପଣଙ୍କ ଶ୍ରମ, ପାଣ୍ଡିତ୍ୟ ଓ ଅର୍ନ୍ତଦୃଷ୍ଟି ଲକ୍ଷ୍ୟ କରି ମୁଗ୍ଧ ଓ ଅଭିଭୂତ ହେଲି।

(ପ୍ରତିଷ୍ଠିତ ସମାଲୋଚକ ଡଃ ଦାଶରଥି ପ୍ରସାଦ ଦାସଙ୍କ ପତ୍ରରୁ ଗୃହୀତ)

* ଆମ ସାହିତ୍ୟରେ ସାହିତ୍ୟକୃତିର ଆକଳନ ବିରଳ। ଆକଳନ ନଥିବାରୁ ଜଣେ ଲେଖକକୁ ଚିହ୍ନିବା ପାଇଁ, ତା'ର କୃତି ସହିତ ପରିଚିତ ହେବା ପାଇଁ ଅନାଗ୍ରହ ବ୍ୟାପକ ହୋଇ ପଡ଼ିଲାଣି। ଏ ଅନାଗ୍ରହ ସାହିତ୍ୟ ପ୍ରତି ବିପଜ୍ଜନକ। ପରିସ୍ଥିତି ବଦଳାଇବା ପାଇଁ ଆପଣ ଯେଉଁ ଉଦ୍ୟମ କରିଛନ୍ତି, ସେଥିପାଇଁ ମୋର ଅଭିନନ୍ଦନ ଜାଣିବେ।

(ଲେଖକ ନିକଟକୁ ସୁପ୍ରସିଦ୍ଧ
କବି ରମାକାନ୍ତ ରଥଙ୍କ ୧୪/୭/୨୦୦୪ ପତ୍ରରୁ ଗୃହୀତ)